# ଅଧିକାର

ଲେଖକ :

ରସବିହାରୀ ବେହେରା

ପ୍ରକାଶକ ;

ନୀଳକଣ୍ଠ ବେହେରା

ନୂତନ ସଂସ୍କରଣ ୧୯୯୪

ମୁଦ୍ରଣ :

ଅଖିଳ ପ୍ରେସ୍,
ଭବାନୀପାଟଣା
କଳାହାଣ୍ଡି, ଓଡ଼ିଶା

ମୂଲ୍ୟ : ବୋର୍ଡ ବନ୍ଧାଇ : ଟ ୩୦ ଙ୍କା
ସାଦା ବନ୍ଧେଇ : ଟ ୨୫ ଙ୍କା

# ADHIKAR

*Written by :*

Rasabehari Behera

*Publisher :*

Nilakantha Behera

*New Edition 1994*

*Printer :*

Akhila Press,
*Bhawanipatna*
*Kalahandi, Orissa*

*Price : Paper book Rs. 25*
*Deluxe Rs. 30*

ସନ୍ଧ୍ୟା ପ୍ରାୟ !!

ଗାଁର ଉତ୍ତର ଦିଗକୁ ଏକ ଗଭୀର ପୋଖରୀ, ପୋଖରୀ କହିଲେ ତ ଠିକ୍ ହେବ ନାହିଁ । ତାହା ଏକ ବିରାଟ ସାଗର ଭଳି ମନେ ହେଉଥାଏ । କେଉଁ ଦିନରୁ ଲୋକଙ୍କ ମୁହଁରେ ତାହା 'ଶିବ ସାଗର' ନାଁରେ ଖ୍ୟାତ ହୋଇଛି । ପାହାଡ଼, ପର୍ବତର ନିଛାଟିଆ ସ୍ଥାନରେ ଶିବଙ୍କ ଲୀଳାଖେଳା । ପାହାଡ଼ର ଉପର ମୁଣ୍ଡରେ ଶିବ ଚତୁର୍ଦ୍ଦଶୀ ଦିନ ପାଖ ଆଖ ଗାଁର ବହୁ ଲୋକଙ୍କ ସମାବେଶ ହୋଇ ସ୍ଥାନଟି ମୁଖରିତ ହୋଇଉଠେ । ମନକୈଳ୍ପ ଫଳମଧ୍ୟ ମିଳେବୋଲି ଲୋକଙ୍କ ଦୃଢ଼ ବିଶ୍ୱାସ ରହିଛି ।

ଦଳଦଳ ହଂସଗଳୀ ଚଢ଼େଇ ଟେଁ ଟେଁ ଶବ୍ଦକରି କେତେବେଳେ ସାଗର ପାଣି-ରେ ଏକ ମଧୁର ଗୁଞ୍ଜନ ସୃଷ୍ଟିକରି ଲେଟି ପଡ଼ୁଥାନ୍ତି ତ କେତେବେଳେ ଏକ ବିକଟାଳ ଶବ୍ଦକରି ଆକାଶକୁ ଉଡ଼ିଯାଉଥାନ୍ତି । ସେଇ ଶବ୍ଦରେ କାନ ମଧ୍ୟ ଅତଡ଼ା ପଡ଼ିଯାଉଥାଏ ସାଗରର ଅନ୍ୟ ତଟରେ ଟେଁ ଟେଇଆ ଚଢ଼େଇର ବିଳାପ ମନରେ ଭାବାନ୍ତର ସୃଷ୍ଟି କରୁଥାଏ । କେତେବେଳେ ତାର କ୍ଳାନ୍ତ ଡେଣା ଝାଡ଼ି ଉଡ଼ି ଉଡ଼ି ପୁଣି ଫେରି ଆସୁଥାଏ ପାଣି ତଟକୁ ତାର ଖାଦ୍ୟ ଅନ୍ୱେଷଣ ପାଇଁ, ପାଣିରେ ଛୋଟ ଛୋଟ ଢେଉ କୂଳରେ ବାଜି ଫେରି ଯାଉଛି । କାଚ କେନ୍ଦୁପରି ପାଣି ।

ତାର ଅତି ନିକଟରେ ବିରାଟ ପାହାଡ ମୁଣ୍ଡଟେକି ଠିଆ ହୋଇଛି । କେତେ ପ୍ରକାର ଗଛଲତାରେ ପାହାଡ଼ ପରିପୂର୍ଣ୍ଣ ହୋଇ ଗହଳିଆ ହୋଇଛି । କଣ୍ଟା ବାଉଁଶର ବଣ । ଘଞ୍ଚ ହୋଇ ବଢ଼ି ଗହଳିଆ ହୋଇ ଦିଶୁଛି । ଜଙ୍ଗଲର ଉପର ମୁଣ୍ଡରେ ଶାଳ, ପିଆଶାଳ ଅଁଳା, କେନ୍ଦୁଗଛ ଆଉ ସେତେ ଗହଳିଆ ହୋଇ ରହିନାହିଁ । ଦିନକୁଦିନ ପତଳା ହୋଇ ଆସୁଛି । ଆଉ କିଛି ବର୍ଷପରେ ତା ମଧ୍ୟ ସାତ ସପନ ଭଳି ମନେ ହେବ । ଲୋକଙ୍କ ଦୈନନ୍ଦନ ଚାହିଦା ମେଣ୍ଟାଇବା ସହ ଅସାଧୁ କାଠ ବ୍ୟବସାୟୀଙ୍କ ଦୌରାତ୍ମ୍ୟରେ ଜଙ୍ଗଲ ଶେଷ ହେବାକୁ ବସିଲାଣି । ପାହାଡ଼ର ଅନ୍ୟ ଏକ ପାର୍ଶ୍ୱରେ ଆମ୍ବ, କରଞ୍ଜ, ବାହାଡ଼ା, ହରିଡ଼ା, ଗଛରେ ଭରି ରହିଛି । ଦୂର ପାହାଡ଼ର ଗହଳି ଭିତରୁ କେତେ ଅଜଣା ଫୁଲର ସୁଗନ୍ଧ ମହକ ଭାସିଆସି ମନକୁ ଚହଲାଇ ଦେଉଥାଏ । ପ୍ରାକୃତିକ ଦୃଶ୍ୟ ମନରେ ସୃଷ୍ଟି କରେ ନୂତନ ପୁଲକ, ନୂତନ ଭାବନାର ସ୍ରୋତ । ପଶ୍ଚିମ ଆକାଶରୁ ସୂର୍ଯ୍ୟଦେବ କେତେ ବେଳୁ ଲୁଚି ଗଲେଣି । ଏଥର ଅନ୍ଧାର ମାଡ଼ ଆସିବ । ଗହଳିଆ ପତର ଫାଙ୍କରୁ ଚଢ଼େଇ ମାନଙ୍କ କିଚିରି ମିଚିରି ଶବ୍ଦରେ କାନ ଅତଡ଼ା ପଡ଼ ଯାଉଥାଏ । ଅନ୍ଧାର ଯେତିକି ଅଧିକ ହୋଇ ଆସୁଥାଏ । ଧୀରେ ଧୀରେ କାକଳୀ ସ୍ୱର ତାହା ମଧ୍ୟ ଶାନ୍ତ ହୋଇ ଆସୁଥାଏ । ଅନ୍ଧାର ଧୀରେ ଧୀରେ ପତ୍ର ଗହଳି ମଧ୍ୟ ଦେଇ ଘୋଟି ଆସୁଥାଏ ।

ଗୋଟିଏ ବିରାଟ ବରଗଛତଳେ ତପନ ବସି କେତେ କଣଭାବି ଚାଲିଥାଏ । ତେଇଶି ଚବିଶି ବର୍ଷର ଜଣେ ହୃଷ୍ଟପୁଷ୍ଟ ଯୁବକ । ମୁହଁରେ ଉଦାସ ଚେହେରା । ଏମିତି ଏକୁଟିଆ ବସି ଭାବିବାକୁ ତାକୁ ଭଲଲାଗେ । ହଜିଲା ଖିଅକୁ ଯୋଡିବା ପାଇଁ କେତେ ଚେଷ୍ଟାକରେ । ତାର ବୁଢ଼ାବାପା ଯାଉଙ୍ଗ ମଲା ଦିନରୁ ଅନ୍ୟମନସ୍କ ହୋଇ ପଡ଼ଥାଏ । ଘର ସଂସାର କଣ ସେ ଜାଣି ନଥିଲା । ଦାୟିତ୍ୱ କଣ ସେ ବୁଝି ନଥିଲା । ବାପା,ମାଙ୍କ ଗୋଟିଏ ବୋଲି ପୁଅ । ଖାଇବାକୁ ପିଇବାକୁ ଅନ୍ତତଃ ଅଭାବ ନଥିଲା । ବାପାର ମେହେନତରେ ତିନି ଚାରି ଏକର ଜମିରୁ ଯାହା ଉପାର୍ଜନ ହେଉଥିଲା ଛୋଟ ସଂସାର ଚଳି ଯାଉଥିଲା । ଘରେ ତାର ବୁଢ଼ୀମା' ଏବଂ ଛୋଟ ଭଉଣୀ ମାଳତୀ । ଏ ବର୍ଷ ଚଉଦ ପୁରି ପନ୍ଦର ଚାଲିବ । ଗେହ୍ଲା ବେସର ଝିଅ । ଦେଖିବାକୁ ସୁନାଖଡ଼କା ଭଳି ।

ତପନ ବସିବା ସ୍ଥାନରୁ ଚାରିଆଡ଼କୁ ଅନାଇଲା । ନିଛାଟିଆ, ନିଛାଟିଆ ଲାଗୁଛି । ଜନମାନସର ଆତଯାତ ଆଉନାହିଁ । ଅନ୍ଧାର ଘୋଟି ଆସିଲାଣି । ଅନ୍ଧକାରରେ ଝାପସା ଝାପସା ଦେଖା ଯାଉଛି । ପାଖ ପାହାଡ଼ର କେଉଁ ଗଛମୂଳେ ଠିଆହୋଇ ବିଲୁଆ ରଡ଼ ଛାଡ଼ୁଛି ହୁକେହୋ, ହୁକେହୋ । ତପନ ଚମକି ପଡ଼ିଲା । ଏତେବେଳ ହେଲା ସେ ଏକୁଟିଆ ବସିଛି ତାର ଖିଆଲ ନାହିଁ । ପକ୍ଷୀର କାକଳୀ ସ୍ୱର ଆଉ ଶୁଭୁନାହିଁ । ସବୁ ନିସ୍ତବ୍ଧ ହୋଇ ଯାଇଛି । ଏକ କମ୍ର କମନୀୟ ନୀରବତା । ସେ ନୀରବତା ମଧ୍ୟେ ପବନର ସୁ ସୁ ଶବ୍ଦ ନିର୍ଜନତାର ଏକ ମଧୁର କଂଠସ୍ୱର ଭଳି ମନେ ହେଉଥାଏ । ତପନ ଚକିତ ହୋଇ ନିସ୍ତବ୍ଧତାର ଏ ମଧୁର ସ୍ୱର ତନ୍ମୟ ହୋଇ କିଛିକ୍ଷଣ ଶୁଣିଲା । ସାଗରର

ଶୀତଳ ପବନରେ ତପନର ରକ୍ଷ ମୁଣ୍ଡର ବାଳ ତାର କପାଳରୁ ଆଖି ଉପରକୁ ଖସିଆସି ଆଖିକୁ ଘୋଡ଼ାଇ ଦେଉଥିଲା । କ୍ଷୌରକର୍ମ ବହୁଦିନ ଧରି ହୋଇ ନଥିବା ଯୋଗୁଁ ଶ୍ମଶ୍ରୁ ରୁକ୍ଷଭାବରେ ବଢ଼ି ତାର ସୁନ୍ଦର ଚେହେରାକୁ ବିଷର୍ଣ୍ଣ ଓ ମଳିନ କରି ଦେଇଥିଲା ।

ପାଖ ବୁଦା ମୂଳରୁ ବିଲୁଆଟିଏ ଭୟରେ ତପନର ପାଖଦେଇ ଦୌଡ଼ି ପଳାଇଲା । ହଠାତ୍ ଅନ୍ଧାର ମଧ୍ୟରେ ବିଲୁଆର ପଳାୟନରେ ତପନ ଚମକି ଉଠିଲା । ଏତେବେଳ ହେଲା ସେ ଏକୁଟିଆ ବସି ଯାଇଛି ତାର ଖିଆଲ ନାହିଁ । ଧୀରେ ଧୀରେ ବସିବା ସ୍ଥାନରୁ ଉଠି ଆଗକୁ ପାଦ ବଢ଼ାଇଲା । ହଠାତ୍ ମଣିଷର ଶବ୍ଦ ଶୁଣିପାରି କେତୋଟି ବେଙ୍ଗ ପାଣି ଭିତରକୁ ଖପ୍‌ଖାପ ଡେଇଁ ପଡ଼ିଲେ । ସେହି ଶବ୍ଦରେ ତପନ ଚମକି ପଡ଼ିଲା । ତାକୁ ମନେହେଲା ଏକ ବିଷଧର ସର୍ପ ତା ପାଦଦେଇ ଦ୍ରୁତଗତିରେ ଚାଲିଗଲା । ହଠାତ୍ ଛିଡ଼ା ହୋଇ ପଡ଼ିଲା । ଅକାରଣରେ ଭୟ ପାଇ ଯାଇଥିବା ଯୋଗୁଁ ମନେ ମନେ ହସିଲା । ପୁଣି ଧୀରେ ଧୀରେ ପାଦ ବଢ଼ାଇଲା ।

ପାହାରେ ଝଙ୍କାଳିଆ ଗଛରୁ ଗଡ଼ିର ଶୀତଳ ପବନ ବହି ତା ଦେହରେ ସ୍ପର୍ଶକରି ଦେଇଗଲା ।

ଦେହ ଶୀତେଇ ଉଠିଲା ।

କଣ କରିବ ?

ଘରକୁ ଯାଇ କଣ କରିବ ?

ମାଁର ମୁହଁରୁ ସଦା ଅଶ୍ରୁ ଝରୁଥିବ । ଭଉଣୀ ପାଖରେ ଛିଡାହୋଇ ତାକୁ ଚୁନି କରୁଥିବ । ଯେତେ ମାଲତୀ ତାକୁ ଚୁନି ରହିବାକୁ କହୁଥିବ ସେତେ ସେ ଧକେଇ ଧକେଇ କାନ୍ଦୁଥିବ । ଆଖି ଆଗରେ ଝଲସି ଉଠିଲା ତାର ମାଁର ଅଶ୍ରୁଭିଜା ଚକ୍ଷୁଯୁଗଳ । ଶାଠିଏ ବର୍ଷର ବୁଢ଼ୀ । କେତେ କଷ୍ଟ ସହ୍ୟ ନକରିଛି ? ଘରୁ ଉପାର୍ଜିତ ଧନରୁ ବଳେଇ ପୁଅକୁ ପାଠ ପଢ଼େଇବା ପାଇଁ ସବୁ ଅଜାଡ଼ ଦେଇଛି । ପୁଅ ତାର ବଡ଼ହେବ । ବହୁତ ପାଠ ପଢ଼ିବ । ଚାକିରୀ କରିବ । ସାହେବ ହେବ । ସୁଖରେ ବାପ, ମାଁକୁ ପୋଷିବ । ଭଉଣୀକୁ ଭଲ ଘରଦେଖି ବାହାଦେବ । ସେ ବାହା ହେବ । ଘରକୁ ସୁନ୍ଦର ବୋହୂ ଆସିବ । ଘରକୁ ଲକ୍ଷ୍ମୀ ଆସିବ । ଘର ତାର ହସି ଉଠିବ ।

ମାତ୍ର ସବୁ ଆଶା ଆଶାରେହିଁ ମଉଳି ଯାଇଛି । ବାପା ମରି ଯାଇଛି । ତାକୁ ଭଲରେ ସେବା ଶୁଶ୍ରୁଷା ମଧ୍ୟ କରାଯାଇ ପାରିଲା ନାହିଁ । ମଫସଲ ଗାଁକୁ ଡାକ୍ତର ଆସି ରୋଗ ଦେଖି ଔଷଧ ଦେଲା ବେଳକୁ ସବୁ ଶେଷ । ଗାଁ ମଶାଣିରେ ପୋଡ଼ି ଶୁଦ୍ଧକ୍ରିୟା କରି ଆଜକୁ ମାସେ ହେଲାଣି । ତଥାପି ମନରେ ଶାନ୍ତିନାହିଁ । ସେହିକଥା ତୁହାକୁ ତୁହା ମନେ

ପଡ଼ ଯାଉଛି ବାପାଙ୍କ ସେହି ହୃଷ୍ଟପୁଷ୍ଟ ଚେହେରା । ବଳିଷ୍ଠ ବଳିଷ୍ଠ ବାହୁ ଯୁଗଳ । ବୁଢ଼ା ବୟସରେ ମଧ୍ୟ ଦୁଇଟି ପୁରୁଷର ବଳ ଦେହରେ ଖୁନ୍ଦ ହୋଇଥାଏ । ଏତେବଡ଼ ମଣିଷ ସାମାନ୍ୟ ଜ୍ୱରରେ ଟଳି ପଡ଼ବ କିଏ ଭାବିଥିଲା ? ସେ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରି ପାରି ନଥିଲା । ତା ମନରେ ଧାରଣା ହୋଇଛି, ବାପାଙ୍କ ପ୍ରତି ସେ ଅବହେଳା କରିଛି । ପୁଅ ହିସାବରେ ସେ ତାର କର୍ତ୍ତବ୍ୟ କରିନାହିଁ । ଏହି ଚିନ୍ତାରେ ହିଁ ସେ ଘାରି ହେଉଛି । ତା ମନର ବେଦନା ଲାଘବ କରିବା ପାଇଁ ନିରୋଳାରେ ସମୟ ଅତିବାହିତ କରି ଚାଲିଛି । ତେବେ ବି ତାକୁ ଶାନ୍ତି ନାହିଁ । ମନକୁ ହାଲୁକା କରିବା ପାଇଁ ସତେଜ ରଖିବା ପାଇଁ ଚାଲିଆସେ । ଗାଁ ମୁଣ୍ଡରେ ଥିବା ପାହାଡ଼ ତଳକୁ । ପାହାଡ଼ର କଳାରଙ୍ଗ, ଜଙ୍ଗଲର ସବୁଜିମା, ନିଛାଟିଆ ପରିବେଶ, ମୁକ୍ତ ଆକାଶ ମୁକ୍ତ ପରିବେଶ ପାହାଡ଼ ତଳର ଫୁଲୁ ଫୁଲିଆ ଶୀତଳ ପବନ ତାକୁ ବେଶ ଶାନ୍ତିଲାଗେ । ପ୍ରକୃତିରେ ଭରି ରହିଛି ଏକ ସମ୍ମୋହନ ଶକ୍ତି । ବଂଚି ରହିବା ପାଇଁ ପରିବେଶ ମନରେ ଆଣିଦିଏ ଶାନ୍ତି !! ଅନ୍ଧାର ଘୋଟି ଆସିଲାଣି । ଆକାଶରେ ଅଗଣିତ ତାରା ଫୁଟି ଉଠିଲାଣି । ରାତି ବଢ଼ିବା ସଙ୍ଗେ ସଙ୍ଗେ ପବନର ଗତି ମଧ୍ୟ ବଢ଼ି ଚାଲିଥାଏ । ମାଳତୀ ଦାଣ୍ଡ ଚାଳ ପାଖରେ ଛିଡ଼ାହୋଇ ଅନ୍ଧାରକୁ ଅନାଇ ତାର ଭାଇର ଫେରିବା ବାଟକୁ ଚାହିଁ ରହିଥାଏ । ପନ୍ଦର ବର୍ଷର ଅନୂଢ଼ା କେଶରୀ । ଚଳ ଚଞ୍ଚଳ କଳା ଆଖି ଯୋଡ଼ିକ ଆଗକୁ ଅନାଇ ରହିଥାଏ । କଳା କଳା ଚକ୍ ଚକ୍ ଲମ୍ବା ବେଣୀ ପିଠି ପଟକୁ ଓହଳି ପଡ଼ିଥାଏ । ତା ମନରେ କେତେ ପ୍ରଶ୍ନ ?

ଏତେବେଳ ହେଲାଣି ଭାଇ କାହିଁକି ଫେରିଲା ନାହିଁ ?

କୁଆଡେ ସେ ଗଲା ?

ଅନ୍ଧାରରେ ଗୋଟିଏ ଛାୟାମୂର୍ତ୍ତି ଦୂରରୁ ଧୀରେ ଧୀରେ ଆଗକୁ ଆସୁଥିବା ଦେଖି ପାରିଲା । ଦେଖି ଅନୁମାନ କରି ଅପେକ୍ଷା କଲା । ନିର୍ଦ୍ଦିଷ୍ଟ ଚିତ୍ତରେ ସେଇ ଆଡ଼କୁ ଅନାଇ ରହିଲା । ଯେତେ ପାଖକୁ ପାଖକୁ ଆସୁଥାଏ ତପନ ସ୍ପଷ୍ଟ ଦେଖା ଯାଉଥାଏ । ଅତି ନିକଟକୁ ଆସିଲା ପରେ ମାଳତୀ ଦୌଡ଼ଯାଇ ପାଚିକଲା ।

କୁଆଡ଼େ ଯାଇଥିଲୁ ଏତେବେଳ ଯାଏ ?

ମାଁ ତେଣେ ଚାହିଁ ଚାହିଁ କେତେବେଳୁ ଖୋଜିଲାଣି ।

ଖାଲି ମୋତେ କହୁଛି, କୁଆଡ଼େ ଗଲା ସେ ପାଗଲା । ତାକୁ ଖୋଜିଆଣ ।

ତା ହାତଧରି କହିଲା, ତୁ କହିଲୁ ଭାଇ, କୁଆଡ଼େ ମୁଁ ତୋତେ ଖୋଜି ଯାଇଥାନ୍ତି ପୁଣି ଏ ରାତିଟାରେ ? ମାଁକୁ ଯେତେ କହିଲେ ସେ କଣ ମୋ କଥା ଶୁଣୁଛି ?

ତା ଦେହକୁ ହଲାଇ ଦେଇ ପ୍ରଶ୍ନ କଲା, ସତେ ଭାଇ ତୁ କୁଆଡ଼େ ଥିଲୁ ଏତେ ବେଳଯାଏ ? ରାତି ଆସି କେତେ ହେଲାଣି ତୋତେ କଣ କିଛି ଜଣାନାହିଁ ?

ତପନ ମନରେ କେତେ ବିଷାଦ ଭରି ରହିଥିଲା । ତାର ଭଉଣୀର ଏହି କଅଁଳିଆ କେହ୍ଲା କଥା କେଇପଦ ଶୁଣି ତା ମନ ହାଲ୍‌କା ହୋଇଗଲା । ତାର ଅତି ନିକଟକୁ ଚାଲି ଆସି ମୁଣ୍ଡରେ ହାତମାରି କହିଲା । ସତେ ତ କେତେ ଡେରି ହୋଇ ଗଲାଣି । ମୁଁ ଟିକିଏ ଏଇ ଗାଁ । ଶିବ ସାଗର ଆଡ଼କୁ ଚାଲି ଯାଇଥିଲି ।

ମାଳତୀ ଚମକି ପଡ଼ିଲା, ତା ଭାଇର କଥାଶୁଣି ।

ଭାଇ !!

ତୋତେ କଣ ସେଠିକି ରାତ୍ର ସମୟରେ ଯିବାକୁ ଭୟ ଲାଗେନାହିଁ ?

ଭୟ ?

କାହିଁକିରେ ?

ତପନ ତାର ଛୋଟ ଭଉଣୀକୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା । ମାଳତୀ ଭୟରେ ତାର ମୁହଁକୁ ଅନାଇ କହିଲା । ସେଠି ପରା, ସେହି ବରଗଛମୂଳେ ରାତ୍ରିରେ କେତେ ଦେବତା ଚିରିଗୁଣି, ପିଚାଶୁଣୀ ଆସି ନୃତ୍ୟ କରନ୍ତି । ଠାକୁରାଣୀ ଘାଘରା ପିନ୍ଧି ବେକରେ ମହାରମାଳ ଲଗାଇ ଜିଭ ଲହଲହ ଲମ୍ବାଇ, ଭୟଙ୍କର ରାବ କରନ୍ତି । ତାଙ୍କରି ଭିତରେ କେତେ କଥା ବାର୍ତ୍ତା ହୁଏ । ଆମ ଗାଁ । ଲୋକ ଦେଖିଛନ୍ତି ??

ସତେ ??

ତପନ ତା ଭଉଣୀର କଥାଶୁଣି, ତା ମୁହଁକୁ ଅନାଇ ପ୍ରଶ୍ନକଲା ?

ହଁ ଭାଇ ??

ନିଆଁ ହୁଳା ପାହାଡ଼ ମୁଣ୍ଡରୁ ଆସି ସେହି ବରଗଛ ମୂଳେ ମିଳାଇ ଯାଏ । ଗାଁ । ଠାକୁରାଣୀ ରାତି ଘଡ଼ିଏ ହେଲେ ହୁଳହୁଳି ଦେଇ ଗାଁ । ପରିକ୍ରମା କରି ଯାଆନ୍ତି । ଭୂତ ପ୍ରେତଙ୍କ ଲୀଳାଖେଳା ଅପନ୍ତରା ଜାଗାରେ କେମିତି ଏତେ ସମୟ ବସି ରହିଲ ।

ଆଶ୍ଚର୍ଯ୍ୟ ହୋଇ ସେ ତାର ଭାଇର ମୁହଁକୁ ଏକ ରହସ୍ୟମୟ ଚାହାଣୀରେ ଅନାଇ ରହିଲା

ତପନ ତାର ଛୋଟ ଭଉଣୀର ସରଳ ବିଶ୍ୱାସରେ ଆଶ୍ଚର୍ଯ୍ୟ ହୋଇ ପିଠିରେ ହାତମାରି ହସିହସି କହିଲା । ଆରେ ଯେ ଡ଼ରେ, ଭୂତପ୍ରେତ ତାକୁ ଡରାଏ । ଯେ ଡରେ ନାହିଁ, ଭୂତ ତାଠୁ ଡ଼ରି ପଳାଏ । ବୁଝିଲୁ ଭୂତ ପ୍ରେତ ଏସବୁ ମନର ବିକାର ମାତ୍ର ॥

ଏତକ ଯିନା ପାହାପତ୍ର ସହିତ କହିଦେଲା । ମାତ୍ର ରାତ୍ରୀ ନିରେଳା ସମୟରେ ଶ୍ମଶାନରେ ଏକାକୀ ବୁଲିବା କେତେ ଭୟଙ୍କର ତାର ମନେ ପଡ଼ିବା କ୍ଷଣି ଭୟରେ ତାର ରକ୍ତ ବରଫ ପାଲଟିଲା ଭଳି ମନେହେଲା । ତଥାପି ତା ଛାତିକୁ ଦମ୍ଭରଖି ତାର ଛୋଟ

ଭଉଣୀ ମନରୁ ଅନ୍ଧ ବିଶ୍ୱାସକୁ ଦୂର କରିବା ପାଇଁ ସାହାସର ସହିତ ଏତକ କହିଦେଲା । ମାତ୍ର ସେ ତା ନିଜ ମନକୁ ଫାଂକିଦେଇ ପାରିଲା ନାହିଁ ।

ମାଳତୀ ତା କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ଅବିଶ୍ୱାସ ସ୍ୱରରେ କହିଲା ।

ହଁ, ହଁ, ଥାଉ ଥାଉ । ଜଣାଅଛି ତୁମକଥା । ସେଦିନ ରାତିରେ ତୁ କେମିତି ବିଳି-ବିଳଉ ଥାଉ ମା'କୁ ପଚାରୁନୁ । ତୋର ସାହାସ ପଣିଆ ଆମେ ଜାଣିଛୁ ?

ଘରୁ ବୁଢ଼ୀ ପାଟିକରି ଉଠିଲା,

ମାଳତୀ !!

ତପନ ଆସିଲାକିରେ ?

ହଁ ମା, ଭଇପର ଆସିଲାଣି । ମାଳତୀ ପାଟିକରି ଉଠିଲା । ବୁଢ଼ୀ, ବାହାରକୁ ଆସି ତପନକୁ ଦେଖି, କୁଆଡ଼େ ଥିଲୁ ବାପ ଏତେବେଳଯାଏ । ରାତି ଆସି କେତେ ହେଲାଣି । ବାୟାଙ୍କ ପରି ଖାଲି ବୁଲୁଛୁ । କେତେଦିନ ଏମିତି ମନମାରି ବୁଲୁଥିବୁ ଯୁଆଡ଼େ ଗଲେ ସେଇଆଡେ ଗଲୁ । ଯେଉଁଠି ବସିଲେ ସେଇଠି ବସି ରହିଲୁ । ଏମିତି ହେଲେ ତୁ ଘର ଚଳାଇବୁ କେମିତି ? ଦରଦଭରା କଂଠରେ ବୁଢ଼ୀ କହିଲା, ବାପା ମରି ମାସେ ହେଲାଣି ମୁଁ ବୁଢ଼ୀ ଆଉ କେତେ ପାଇଟି କରୁଥିବି । ମୁଁ ଆଜି ଅଛି କାଲିକି ନଥିବି, ପାଚିଲା ପତର କେତେବେଳେ ଝଡ଼ ପଡ଼ିବ !

ମାଆ !

ଥରିଲା କଂଠରେ ତପନ ପାଟିକରି ଉଠିଲା ।

ତୁ ଏଭଳି କଥା କହିବୁ ତେବେ ମୁଁ ଘରେ ରହିବି ନାହିଁ । ଘରଛାଡ଼ି ଚାଲିଯିବି ?

ବୁଢ଼ୀ ତପନ ପାଖକୁ ଆସି ତାର ଶୁଖିଲା ମୁହଁକୁ ଅନାଇ କହିଲା, ପାଗଳା କିରେ ?

ତୁ ପରା ଏ ଘରର ସବୁ । ବାପା ମଲାପରେ ଏ ଘରର ଦାୟିତ୍ୱ ତୋର, ତୁ କେମିତି ଭଲରେ ରହିବୁ । ଜମି ଚାଷକରି ଘର ଚଳାଇବୁ । ହାତକୁ ଦୁଇହାତ ହେବୁ । ଭଉଣୀକୁ ଶାଶୁ ଘରକୁ ବିଦା କରିବୁ । ବୁଝିଲୁ ବାପ ।

କେତେ କାମ ଆସି ତୋ ଉପରେ ପଡ଼ିଛି । ତୁ ଯଦି ଏମିତି ବାୟାଭୂତଙ୍କ ଭଳି ବୁଲୁଥିବୁ ତେବେ ଏସବୁ କରିବ କିଏ ?

ବୁଢ଼ୀ ତା ମୁଣ୍ଡରେ ହାତ ବୁଲାଇ ଶାନ୍ତ୍ୱନା ଦେଇ କହିଲା । ମା'ର, ଦରଦଭରା ହାତ ସ୍ପର୍ଶରେ ତାର ଦେହରେ ଶିହରଣ ଖେଳିଗଲା । ତା ମନରେ ଭାବନା ସୃଷ୍ଟି ହେଲା ସତେ ତ ତାର କେତେକାମ କରିବାକୁ ବାକିଅଛି ।

ମା'କୁ ଆଶ୍ୱାସନା ଦେବାଭଳି କହିଲା ।

ମା' କାଲିଠୁ ମୁଁ ଘର କାମରେ ମନଦେବି । ଘରେ ରହି ସବୁ ବୁଝିବି । ତପନ ତାର ମାର ଦରଦଭରା ମୁଖମଣ୍ଡଳକୁ ଚାହିଁ କହିଲା । ହଁ ରେ ବାପ, କାମରେ ଲାଗିଲେ ମନ ଆପେ ଆପେ ବୁଝିଯିବ । ତୋ ବାପା ତ ସରଗପୁରୀ ଚାଲିଗଲେ । ସେତ ନିଶ୍ଚିନ୍ତ । ମୋର ଏ ପୋଡ଼ା କପାଳରେ ଏତକ ଥିଲା । ମୁଁ କିଆଁ ନମରି ବଂଚିଗଲି । ମୋ ମରଣ ଆଗ ନହେଲା କିଆଁ ?

ଦୁଃଖ ଏ ଦୁନିଆରେ କାହାର ନାହିଁ ?

ଏ ଭଳି ଜଣେ ଲୋକ ଅଛି ଯେକି ସଦାବେଳେ ସୁଖରେ ଚଳି ଯାଉଛି ?

ସବୁ ହରିଗଲେ ମଣିଷ ମରିଯାଏ ନା ମୃତ୍ୟୁପରେ ସବୁ ଶେଷ ହୋଇଯାଏ !!

ଏ ଏକ ଜଟିଳପ୍ରଶ୍ନ । ଏ ପ୍ରଶ୍ନର ଉତ୍ତର କିଏଦେବ ? ମାଳତୀ ପାଖରେ ଛିଡ଼ା ହୋଇଥିଲା । ତା ମା'ର ପଣତକାନି ଧରି ପାଟି କରିଉଠିଲା ।

ତୋର ସେଇ ଗୋଟିଏ ଘୋଷା ଧରିଛୁ ।

ମୁଁ କିଆଁ ଆଗ ନମଲି, ମୁଁ କିଆଁ ଆଗ ନ ମଲି । ତା ମାକୁ ଟିକିଏ ହଲେଇ ଦେଇ କହିଲା ମା' ତୁ ପର କହୁ ଯମରାଜ ଯାହାକୁ ଆଗ ଡ଼ାକିବ ସେ ଯିବ !!!

ହ ଲେ ଝିଅ !

ଭୁଲରେ ମୋତେ ନ ଡ଼ାକି ତୋ ବାପାକୁ ଯମ ଡ଼ାକି ନେଇଗଲା କୋହ ଉଠି ଆସିଲା । ବୁଢ଼ୀ ସକେଇ ସକେଇ କାନ୍ଦ ଉଠିଲା । ତାର ଦୁଇ ଆଖିରୁ ଦୁଇଧାର ଲୁହଗଡ଼ି ପଡ଼ିଲା । ନାକପୁଡ଼ା ଫୁଲି ଉଠୁଥାଏ । ଛାତି ଥରଇ କୋହ ଉଠୁଥାଏ । ତପନ ପାଖରେ ଛିଡ଼ାହୋଇ ତା ମା ମନର ଗଭୀର ଦାଗ କେତେ କଳନା କରିପାରୁ ନଥାଏ । ମନ ଗହଳର ତଳ ନିଆଁକୁ କିଏ ବା ସହଜରେ ବୁଝିପାରି ? ତାର ମା'ର ମନ କେତେ କଲବଲ ନ ହେଉଛି । ତା ମା ମନର ଗଭୀର ଦାଗ ଗୋଟି ଗୋଟି ଆଜି ଚେଙ୍ଗ ହେଲା ପରି ବୁଢ଼ୀ ମନରେ ଆଘାତ ସୃଷ୍ଟି କରୁଛି । ତପନ ପକ୍ଷରେ ତା ମାର ସ୍ୱାମୀହରା କଷ୍ଟ ବିଧବା ସ୍ୱରୂପ କେତେ ଯନ୍ତ୍ରଣା ଦାୟକ ଆଜି ସେ ମର୍ମେ ମର୍ମେ ଉପଲବ୍ଧି କରିପାରୁଛି ।

କାନ୍ଦଲେ କୁଟିଲେ, ଆଉ କଣ ଗଲାଧନ ଫେରି ଆସି ପାରିବ ? ଛାତିକୁ ପଥର କରି ଦୁଃଖକୁ ସହି ଏ ସଂସାରରେ ବଂଚିରହି ଆଗକୁ ବଢ଼ିବାକୁ ପଡ଼ିବ । ବୁଢ଼ୀର ଛଟପଟ ମନ କେତେ କଣ ଭାବି ଚାଲିଥାଏ । ନିଜକୁ ନିଜେ ସମ୍ଭାଳି ଆଖିର ଲୁହ ପଣତରେ ପୋଛି ମନକୁ ମନ କହି ହେଉଥାଏ ।

ସତେ, ଏ ପୋଡା ମନରେ କେତେ କଣ ଭାବନା ଖେଳୁଛି ।

ଛି !!

ମନକୁ ସ୍ଥିର କରିବାକୁ ହେବ ।

ମୁଁ ଆଉ ଅବୁଝା ହେବି କିଆଁ ।

ମୋର ଦୁଇଟି ନୟନ ପିତୁଳା । ସେମାନେ ମୋର ସର୍ବସ୍ୱ । ସେମାନଙ୍କ ମଙ୍ଗଳ ଆମ ସଭିଙ୍କ ମଙ୍ଗଳ । ଆଖିର ଲୁହ ପଣତକାନୀରେ ପୋଛି ବୁଢୀ ତା ପୁଅ ଝିଅଙ୍କୁ ଅନାଇଲା ।

ଆ ପୁଅ ପାଖକୁ ଆ ।

ତପନ ମା ପାଖକୁ ଚାଲି ଆସିଲା ।

ବୁଢୀ ଆବେଗରେ ତପନକୁ କୁଣ୍ଢାଇ ପକାଇଲା । ମାଳତୀ ମା'ର ପଣତକାନିରେ ଯାକିହୋଇ ରହିଯାଇଥାଏ । ବୁଢୀ ପୁଅଝିଅଙ୍କୁ କୁଣ୍ଢାଇ ମନରେ ଅପାର ତୃପ୍ତି ଅନୁଭବ କଲା । ଓଠ ତାର ବାତ୍ସଲ୍ୟ ମମତାରେ ଥରି ଉଠିଲା । ଦେହରେ ଅପାର ପୁଲକ ସୃଷ୍ଟି ହେଲା । ଆଖି ତାର ଆନନ୍ଦରେ ବିସ୍ଫୋରିତ ହୋଇ ଉଠିଲା । ମନରେ କାଳିମା ଟିକକ ଯାହାଥିଲା ଲିଭିଗଲା । ମୁହଁ ଆନନ୍ଦରେ ଝଳସି ଉଠିଲା ।

ମୋହନ ବାବୁ ଗାଁର ଜଣେ ଜଣାଶୁଣା ଧନୀ ବ୍ୟକ୍ତି । ବୟସ ଅନ୍ଦାଜ ପଚାଶବର୍ଷ ଟପି ଗଲାଣି । ହୃଷ୍ଟପୃଷ୍ଟ ବ୍ୟକ୍ତି । ବେଶୀ ଉଚ୍ଚା କିମ୍ବା ଗେଡା ନୁହନ୍ତି । ଦେଖିବାକୁ ବେଶୀ ଗୋରା କିମ୍ବା କଳା ନୁହନ୍ତି । ମୁହଁ ଗମ୍ଭୀର ସ୍ୱଭାବ ଲୋକ । ଆଖି ଦୁଇଟି ସଦାବେଳେ ଚାରିଆଡ଼େ ଘୂରି ବୁଲୁଥାଏ । ସଦା ସତର୍କ ଚାହାଁଣୀ । ପ୍ରଶସ୍ତ ଅଗଣା । ଅଗଣା ଦୁଇପଟେ ବଡ଼ବଡ଼ ଧାନ ଅମାର । ପିଣ୍ଡାରେ ଖଣ୍ଡିଏ ମସିଣା ପକାଇ, ଧଳା ଧୋତି ଏବଂ ଖଣ୍ଡିଏ ଗେଞ୍ଜି ପିନ୍ଧି ଚକା ପକାଇ ବସିଥାନ୍ତି । ପାଖରେ ଥୁଆ ହୋଇ ଥାଏ ପାନ ବଟୁଆ । ଗୁଆ କାଟୁକାଟୁ ପାଖରେ ବସିଥିବା ଗାଁର ଜଣେ ମୁଖିଆ ମାମଲତକାର୍ ଶଙ୍କର ସହିତ ଗପ ଯୋଡ଼ିଦେଇଥାନ୍ତି । କେତେଆଡ଼ୁ କେତେକଥା ପଡ଼ୁଥାଏ ଗାଁ କଥା, ପାଖପଡ଼ଶା କଥା । କା'ଘର ଛେଳିକୁ କିଏ ମାରି ଖାଇଗଲା । କା ଘରର ଛେଳିକୁ ନେଇ କଂସେଇ ପାଖରେ ବିକ୍ରି କରୁଥିଲା ବେଳକୁ ଛେଳି ମାଲିକ ଧରିଦେବା ଫଳରେ କଂସେଇଠୁ କେମିତି ମାଡ଼ଖାଇ ପୋଲିସି ହାତରେ ଧରା ପଡ଼ିଲା । କା କ୍ଷେତରେ ଗାଈ ପଶି ଚାଷ ନଷ୍ଟକଲା । ଏମିତି କେତେକଥା ଚାଲିଥାଏ । ଅଳ୍ପ ଦୂରରେ ମଦନା ବାବୁଙ୍କ ଚାକର ଗାଈଗୋରୁଙ୍କୁ ପାଳ ଖାଇବାକୁ ଦେଉଥାଏ । ବଡ଼ଚାଷୀ । ଜମି ଅନେକ । ତେଣୁ ଜମିକୁ ଦେଖି ହଳମଧ୍ୟ ସେମିତି । ଗାଈ ମଇଁଷିରେ ଗୁହାଳ ଭର୍ତ୍ତି ହୋଇଥାଏ ।

ସମୟ ପ୍ରାୟ ଏଗାରଟା ହେବ । ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିବାକୁ ଆରମ୍ଭ କଲେଣି ଗାଁର ଚଷୀମାନେ ହଳ ନଙ୍ଗଳ, ବଳଦ ଯୁଆଡ଼ରେ ଲଦି କ୍ଷେତରୁ ଫେରୁଥାନ୍ତି । କିଏ ଗାଁକୁ ଆସି ଯାଇଥାନ୍ତି । କିଏ ହଳ ବଳଦ ପୋଖରୀରେ ଧୋଇ ଗାଧୋଇ ଫେରୁଥାନ୍ତି ଦିନ ତମାମ ଚଷ କରି ହାଲିଆ ହୋଇ ଫେରୁଥାନ୍ତି । ଘରେ ଆସି ପଖାଳ ଗଣ୍ଡିଏ ଖାଇ ଭୋକର ଦାଉ ନିବାରଣ କରିବେ ବୋଲି ତରତର ହୋଇ ହଳଆଡ଼େଇ ଫେରୁଥାନ୍ତି । ଭୋକରେ ହଂସା ଉଡଗଲା ପରି ମନେ ହେଉଥାଏ । ଖରାବାଜି ମୁହଁ କଳା ପଡ଼ଯାଉଥାଏ

ସାହୁକାରଙ୍କ ଘର ଭିତରେ କନକ ଘର ଝାଡ଼ୁ କରୁଥାଏ । ବୟସ ପ୍ରାୟ ଏକୋଇଶି ବାଇଶି ପାଖାପାଖି ହେବ । ସୁସ୍ଥ ସବଳ ରମଣୀ । ଦେଖିବାକୁ ସୁନ୍ଦର, ଗୋରାଦେହ । ଫୁଲିଲା ଫୁଲିଲା ଗାଲ । ବେଶ ଉଜ୍ଜ୍ୱଳ ଢ଼ାଉଳ ଚେହେରା । ଦେଖିଲେ ମନ ଖୁସିଲାଗେ । ମୁହଁଟି ଗମ୍ଭୀର ଦେଖା ଯାଉଥାଏ । ସତେ ଯେପରି ଚନ୍ଦ୍ରମାକୁ କଳା ବଉଦ ଢ଼ାଂକି ରଖିଲା ପରି ମନେ ହେଉଥାଏ । ତା ମନର ବିଷାଦ ସହଜରେ ଜଣାପଡ଼ ଯାଉଥାଏ । ଘର ଝାଡ଼ବାରେ ଲାଗିଥିଲେ ମଧ୍ୟ ମନ ତାର ଅସ୍ଥିର ।

ସାହୁକାର ଲୋଭିଲା ଆଖିରେ ତା ଆଡ଼କୁ ଅନାଇ ଦେଉଥାଏ । ବଟୁଆକୁ ବହୁତ୍ତି କଣ ଖୋଜି ନ ପାଇବାରୁ ସାହୁକାର ପାଟିକରି ଉଠିଲେ ' ଆଲୋ କନକ, ମୋର ସେ ଚୁଣ୍ଡିଡବା ପାଖଘରୁ ଆଣିଲୁ !

କନକ ଅନ୍ୟମନସ୍କ ଥିଲା, ହଠାତ ବାବାଙ୍କ ଡ଼ାକ. ଏବଂ କଣ କହିଲେ ଜାଣି ପାରିଲା ନାହିଁ ।

ଧୀରେ ଧୀରେ ପାଖକୁ ଆସି କନକ କହିଲା, ବାବୁ ଡ଼ାକିଲେ ? ମୋହନ ବାବୁ ତା ମୁହଁକୁ ଥରେ ସତୃଷ୍ଣ ନୟନରେ ଚାହିଁଦେଇ କହିଲେ, ଆଲୋ ତୋତେ କଣ ଶୁଭୁନାହିଁ, ମୋ ଚୁଣ୍ଡିଡ଼ବା ଆଣିବା ପାଇଁ କହିଲି ପରା !!!

ଶଙ୍କର ଲୋଭିଲା ଆଖିରେ କନକର ରୂପ, ଯୌବନକୁ ଅନାଇ ରହିଲା ।

କନକ ତରତର ହୋଇ ଘରକୁ ଚାଲିଗଲା । କିଛିକ୍ଷଣ ପରେ ଚୁଣ୍ଡିଡବା ଆଣି ବାବୁଙ୍କ ପାନପେଟି ପାଖରେ ରଖିଦେଇ ଚାଲିଗଲା ।

ମୋହନ ବାବୁଙ୍କ ପାନରେ ବଡ଼ ସଉକ । ଦିନକୁ ପନ୍ଦର କୋଡ଼ିଏ ଖଣ୍ଡ ପାନ ନ ହେଲେ ନ ଚଳେ । ପାନଖାଇ ତାଙ୍କ ଓଠ,ପାଟି ନାଲି ପଡ଼ ଯାଇଥାଏ । ପିକ ପକାଇବା ପାଇଁ ପାଖରେ ପିକଦାନୀ ସଦାବେଳେ ରହିଥାଏ । ଲମ୍ବ ପିତ୍ତଳ ପିକଦାନୀ । ଘସି ମାଜି ସାଫ୍ କରୁଥିବା ଯୋଗୁଁ ଚକଚକ୍ କରୁଥାଏ । ସଉଖିନିଆ ଲୋକ । ପାନକୁ ସୁସ୍ୱାଦୁ କରିବା ପାଇଁ ଏବଂ ସୁଗନ୍ଧଯୁକ୍ତ କରି ତାକୁ ଖାଇବାରେ ବେଶ ସଉକ । ତେଣୁ ନିଜେ

ବସି ପ୍ରତିଦିନ ଯତ୍ନ ସହକାରେ ପାନ ଭଙ୍ଗିବାରେ ମନ ଦେଇଥାନ୍ତି । ପାନରେ କେତକୀ ଝଇର ବାସନା ଗୁଆ, ଡାଫ୍ନା, ଟିକିଏ ଜର୍ଦ୍ଦା ପଡଥିବ । ତା ସଙ୍ଗେ ଅଳ୍ପ ଏଚି । ସେହି-ପାନ ଖାଇଲେ ତୁଣ୍ଡରୁ ଏକ ସ୍ୱାଦଯୁକ୍ତ ମହମହ ବାସନା ବାହାରି, ମନକୁ ସତେଜ ରଖି ଥାଏ । ପାନର ଏଭଳି ମହିମା ଏଭଳି ସ୍ୱାଦ ଯିଏ ଜାଣିଛି ସହଜରେ ଛାଡ଼ ପାରିବ ନାହିଁ । ପ୍ରବାଦ ଅଛି, ପାନର ଏଭଳି ମହିମାରେ ଆକୃଷ୍ଟ ହୋଇ ସ୍ୱର୍ଗର ଦେବତାମାନେ ପାନ ପ୍ରତି ଆଶକ୍ତ ହୋଇ ସ୍ୱର୍ଗରୁ ମର୍ତ୍ତ୍ୟଧାମକୁ ପାନର ସ୍ୱାଦ ଚାଖିବା ପାଇଁ ଓହ୍ଲାଇ ଆସନ୍ତି । ସେ ପୁରାଣ କଥା ଅବା ଲୋକ ପ୍ରଚଳିତ କଥା ହେଲେ ମଧ୍ୟ ପାନର ମହିମାରେ ଏକ ବିଶେଷତ୍ୱ । ମୋହନ ବାବୁ ଯେତେବେଳେ ପାନ ଖଣ୍ଡିଏ ପାଟିରେ ପୁରାଇ ତାଙ୍କ ଆଖିକୁ ଥରେ ରବିଅଡ଼କୁ ବୁଲାଇ ନେଇ, ପାଟି ପାକୁଳି ପାନ ଚୋବାଉଥାନ୍ତି, ସେତେବେଳେ ଜର୍ଦ୍ଦା ମିଶା ପାନର ମହମହ ବାସ ସେ ଖଣ୍ଡମଣ୍ଡଳକୁ ଚହଟି ଯାଉଥାଏ । ପାଟିରେ ଖଣ୍ଡିଏ କଡ଼ାପାନ ପକାଇ ପାଟି ପାକୁଳେଇ ଆଉ ଖଣ୍ଡିଏ ପାନରେ ଗୁଣ୍ଡି ପକାଇ ଶଙ୍କର ହାତକୁ ବଢ଼ାଇ ଦେଇ ବାବୁ କହିଲେ, ବୁଝିଲୁ ଶଙ୍କରା ଟୁଣ୍ଡିପାନ ଖଣ୍ଡିଏ ପାଟିରେ ପକାଇଥା ।

ଶଙ୍କରା ଲୋଭିଲା ଆଖିରେ ବାବୁଙ୍କ ପାନଭଙ୍ଗା ଦେଖୁଥିଲା । ବାବୁଙ୍କ ପାନ ବଢାଇ । ଦେଖି କୃତ କୃତ୍ୟ ହୋଇ ତାଙ୍କଠୁ ପାନନେଇ ବଡ଼ ସଉକରେ ପାଟିରେ ପକାଇଲା । ଶଙ୍କରା ଗାଁର ଜଣେ ବଡ଼ ମାମଲତକାର । ବାବୁଙ୍କ ପାଖରେ ବସି ଗପସପ କରି ଦିନ କଟାଇଦିଏ । ବଡ଼ ଲୋକଙ୍କ ପାଖରେ ବସିଲେ କେତେକଥା ଜାଣିବ । କେତେକଥା ଶୁଣିବ । ତାର କେତେ ଜ୍ଞାନ ବଢ଼ିବ । ଗାଁରେ କେତେ ଲୋକ ତାକୁ କେତେକଥା ପଚାରିବେ । ସେସବୁ ଜାଣିଲା ଭଳି ସେମାନଙ୍କୁ ସେ ତାର ବୁଦ୍ଧିରେ ଉତ୍ତର ଦେଇ ସମସ୍ତଙ୍କୁ ତାଟକା କରିଦେଇ ପାରୁଥାଏ । ଗାଁ ଲୋକ ତାକୁ ବାହା ବାହା କରୁଥାନ୍ତି । ତାର ବୁଦ୍ଧିକୁ ତାରିଫ କରୁଥାନ୍ତି । ସେମାନଙ୍କ ତାରିଫ୍ ଶୁଣି ତାର ଛାତି କୁଣ୍ଢେ-ମୋଟହୋଇ ଯାଉଥାଏ । ତା ଆଗରେ ଗାଁ ଲୋକ କେତେ ନିର୍ବୁଦ୍ଧିଆ । ତାହା ସେ ସ୍ପଷ୍ଟ ଜାଣିପାରୁ ଥାଏ । ତାଠୁ ବଳି ଜ୍ଞାନୀ ଆଉ ଗାଁରେ କେହି ନାହାନ୍ତି ଏହା ତାର ଦୃଢ଼ ବିଶ୍ୱାସହୋଇ ଯାଇଥାଏ । ସବୁ ଗୁଣରେ ସେ ଧୁରନ୍ଧର । ଶଠତା, କ୍ରୂରତା, ଷଡ଼ଯନ୍ତ୍ର, ସବୁ ବିଦ୍ୟାରେ ସେ ପାରଙ୍ଗମ । ତେଣୁ ଗାଁ ଲୋକ ମଧ୍ୟ ତାର ଏହି ଖଳ ପ୍ରକୃତି ପାଇଁ ଭୟ କରନ୍ତି ।

ବେଳକାଳଉଣ୍ଡି, ଶଙ୍କର ତା ମନର କଥା, ମନ ଭିତରେ ସଂଚି ରଖିଥିବା କଥା ଖୋଲିବା ପାଇଁ ପାଟି ତାର ଖଦଖଦ ହେଲା । ସେ ବୁଝି ପାରିଲା ବାବୁଙ୍କ ମନ ଆଜି ବଡ଼ ଖୁସୀ ଅଛି । କେତେ ସରଧାରେ ତା ସହିତ କେତେ କଥା ହେଉଛନ୍ତି । ଏଇଟାହିଁ ଠିକ୍ ମଉକା । ଏତେ ବେଳରେ ପଚାରି ଦେଲେ ସବୁକଥା ଖୋଲା ହୋଇଯିବ ।

ଶଙ୍କର ରବିଆଡ଼କୁ ଥରେ ଭଲକରି ଅନାଇ ନେଇ ପାଖକୁ ଟିକିଏ ଘୁଂଚି ଆସି ଥଙ୍ଗ ଥଙ୍ଗ ହୋଇ କହିଲା !

ବାବୁ !

ଗୋଟିଏ କଥା ପଚାରିବି ପଚାରିବି ବୋଲି ଭାବୁଛି । ମୋହନ ବାବୁ ପାଟିରେ ପାନ ଚୋବାଉ ଚୋବାଉ ତାର ଏଭଳି ଢଙ୍ଗ ଢାଙ୍ଗ ଦେଖି କହିଲେ ।

ଆରେ ପଚାରୁନୁ, କଣ ପଚାରିବୁ ?

ଆରେ ଏମିତି କାହିଁକି ହେଉଛୁ ?

କଥା କଣକି ବାବୁ, ଏଇ ଯେ ତମ ଘରେ କାମ କରୁଛି ...... ହଁ ହଁ କଣହେଲା କାହା କଥା କହୁଛୁ । ମୋହନ ବାବୁ ତାକୁ ତୀକ୍ଷଣ ଦୃଷ୍ଟିରେ ଦେଖିନେଇ କହିଲେ ।

ଶଙ୍କରା ମୋହନ ବାବୁଙ୍କ ମୁହଁ ଦେଖି ଶଙ୍କିଗଲା । ତେବେ ବି ସାହାସ କରି କହିଲା । ନାହିଁ ଯେ ବାବୁ, ଗାଁ ଲୋକେ କହୁଥିଲେ ବୋଲି ପଚାରିଦେଲି ।

ହଁ ହଁ କଣ କହୁନୁ । ମୋହନ ବାବୁ ମୁହଁ ଗମ୍ଭୀର କରି କହିଲେ ।

ଏଇ ଯେ କନକ ତା ବାହାପାଇଁ ସମସ୍ତ ବ୍ୟବସ୍ଥା ହୋଇ ସାରିଥିଲା । ଖାଲି ବର ଆସିବା ବାକିଥିଲା । ଶାଶୁଘର ଯିବାକଥା ତା' ନହୋଇ ଏଇଠି ରହିଥିବା ଯୋଗୁଁ, ଗାଁ ଲୋକ କେତେ କଥା କହୁଛନ୍ତି ।

ମୋହନ ବାବୁ, କଥାର ମର୍ମ ବୁଝିଲେ । ସମଝ୍‌ଦାର ଆଦ୍‌ମିକୁ ଇସାରା କାଫି । ମୋହନ ବାବୁ ବେଶ ଜଣେ ପୋଖତ ଲୋକ । ବୁଡ଼ ପାଣି ପିଇବା ଲୋକ । ମନର ରାଗକୁ ମନରେ ରଖି କହିଲେ, ଆରେ ଶଙ୍କରା, ତୁ ତ ଜାଣୁ । କନକକୁ ବାହା କରାଇ ଦେବାପାଇଁ ମୁଁ ତ ସବୁ ବ୍ୟବସ୍ଥା କରି ଦେଇଥିଲି । ସମସ୍ତ ଖର୍ଚ୍ଚ ମୁଁ ବହନ କରୁଥିଲି । ତା' ମା ପାଖରେ କ'ଣ ଅଛି ? ଶଙ୍କରା ଟିକିଏ ସାହାସ ପାଇ କହିଲା, ସେ କଥା କିଏ ନ ଜାଣେ ? ତମେ ନ ଥିଲେ ତା'ର ଆଉ କିଏ ଥିଲା । ତା'ର ବୁଢ଼ୀ ମା ମରିବ କି ବଂଚିବ ତା'ର ଠିକ ଠିକଣା ନାହିଁ ? ସେଇଥି ପାଇଁ ପରା ତାକୁ ବାହା କରାଇ ଦେବି ବୋଲି ସ୍ଥିର କରିଥିଲି । ତା'ର ମା ବଂଚି ଥାଉଁ ଥାଉଁ ତା' ଝିଅ ବାହାଘର ଦେଖିଥାନ୍ତା ।

ସୁଖରେ ଘରସଂସାର କରି ରହିବ । ତେଣୁ ଗାଁର ଜଣକ ସହ ବାହା କରିଦେବି ବୋଲି ଯୋଗାଡ଼ କରିଥିଲି । ହଁ, କ'ଣ ହେଲା, ସେ ଟିକିଏ ରୋଗୀ, ବୟସ ଟିକିଏ ଅଧିକା । ସେଥିରେ କ'ଣ ହେଲା ?

ଏ ଟୋକୀତ ବ ନାରାଜ । ମାନିବାକୁ ନାହିଁ । ମୋହନ ବାବୁ ଏତକ କହି ଶଙ୍କରାକୁ ଅନାଇଲେ ।

ଶଙ୍କର ଥରେ ଘର ଭିତରକୁ ଲୋଭିଲା ଆଖିରେ ଅନାଇଲା । ଦେଖିଲା କନକ ପାଖରେ ନାହିଁ । ନିରଶ ହୋଇ ଆଖି ଫେରାଇ ଆଣି କହିଲା, ବାବୁ ତାହେଲେ ସେ ଆଉ ବାହା ହେବ ନାହିଁ ? ଠିକ୍ ଅଛି, ଆଉ ଯୋଗାଡ କରି କେଉଁଠି ବାହା କରାଇ ଦେଲେ ଆପଣଙ୍କ ମୁଣ୍ଡରୁ ବୋଝ ଖସିଯିବ । ମୋହନ ବାବୁ ଟିକିଏ ହସି, ଶଙ୍କର ମୁହଁକୁ ଚାହିଁ କହିଲେ । ହଁ ତା ନୁହେଁ ତ ଆଉ କଣ ?

ଆପଣ ଧର୍ମବନ୍ତ ପୁରୁଷ । ଆପଣ ନଥିଲେ ତାକୁ ଆଶ୍ରା ଦେଇଥାନ୍ତା କିଏ ?

ଶଙ୍କର ଦୁଇହାତ ପାପୁଲିକୁ ଘସି ଏତକ କହିଲା ।

ସେତକ ଯଦି ଲୋକଙ୍କର ବୁଝିବାର ନାହିଁ ତାହା ହେଲେ ମୁଁ କଣ ଜାଣି ଜାଣି ଏଭଳି ଯୁବ ଟୋକୀକୁ ବାର ଦ୍ୱାର ବୁଲିବାକୁ ଛାଡ ଦେଇଥାନ୍ତି ।

ଶଙ୍କର ପାଟିର ପାନକୁ ଗୋଟିଏ କଳରେ ଚାପି କହିଲା ।

ଖାଲି ଗାଁର ଛତରା ଟୋକାମାନଙ୍କ ପାଟି ଖଲବଲ ହୋଉଛି ନାଁ । ସେମାନେ କୁଆଡ଼େ ବୁଝିବେ ତମଭଳି ଧର୍ମବନ୍ତ ପୁରୁଷର ମହିମା । ବୁଝିଲ ଶଙ୍କର, ଗାଁ ଲୋକଙ୍କୁ ବୁଝାଇ ଦେ ଯେ ଅବୁଝା ହେଉଛି ତାକୁ ତାଗିଦ୍ କରିଦେ । ମୁଁ ଯାହା କରିଛି ଗାଁର ମଙ୍ଗଳ ପାଇଁ, କନକର ମଙ୍ଗଳ ପାଇଁ ତାକୁ ଆଶ୍ରା ଦେଇଛି । ଶଙ୍କର ମୁଣ୍ଡ ହଲାଇ, ସମ୍ମତି ଜଣାଇ କହିଲା,ତାନୁହେଁ ତ ଆଉ କଣ ?

ଏତିକି ବେଳେ ଘର ଭିତରୁ ମୋହନ ବାବୁଙ୍କ ସ୍ତ୍ରୀ ଉର୍ମିଳା ଦେବୀ ପାଟି କରି କହିଲେ, ବେଳ ଆସି କେତେ ହେଲାଣି, କ'ଣ ଜଣା ପଡୁନାହିଁ । ଏଭଳି ବସି ଦିନ ରାତି ଗପିଲେ ଗପ କଣ ସରିବ ?

ଘରୁ ଡ଼ାକ ଶୁଣି ଶଙ୍କର ବସିବା ସ୍ଥାନରୁ ଉଠିପଡ କହିଲା, ଆଇ ତେଣେ ଡାକିଲେଣି । ଖାଇବା ବେଳ ହୋଇ ଗଲାଣି । ସତରେ ବେଳ ଆସି କେତେ ହେଲାଣି । ଆମକୁ ଆଉ ଜଣା ନାହିଁ । ମୋହନ ବାବୁ ପାନ ପେଟି ସଜାଡୁ ସଜାଡୁ କହିଲେ, ହଉ ଶଙ୍କର ତୁ ଯା । ସମୟ ଦେଖି କେତେବେଳେ ଚାଲି ଆସିବୁ । ଶଙ୍କର ଥରେ ଲୋଭିଲା ଆଖିରେ କନକକୁ ଚାହିଁ ଦେଇ ଯିବ ବୋଲି ରଵିଆଡ଼କୁ ଆଖି ଘୁରାଇ ଆଣିଲା ମାତ୍ର କେଉଁଠି ତାକୁ ଦେଖିବାକୁ ନପାଇ ହତାସ ହୋଇ, କାନ୍ଧରେ ଗାମୁଛା ପକାଇ, ଗାଧେଇବା ପାଇଁ ବାବୁଙ୍କଠୁଁ ବିଦାୟ ନେଇ ପୋଖରୀ ତୁଠ ଆଡ଼କୁ ବାହାରି ପଡ଼ିଲା ।

ଗାଁ ପୋଖରୀ । ବିରାଟ ପୋଖରୀ ପୁରୁଣା ପୋଖରୀ, ତେଣୁ ଦଳରେ ଭରପୁର ହୋଇ ଯାଇଥାଏ । ଦଳ ଭର୍ତ୍ତି ହୋଇଥିବା ଯୋଗୁଁ ପାଣି ଥଣ୍ଡା ଲାଗେ ପଡ଼ୁଥାଏ । ଛୋଟ ଛୋଟ ମାଛ ଦଳ ଘୁମର ଘୁମର ପାଣିରେ ଫକ୍ ଫାକ୍ ଡେଉଁଥାନ୍ତି । ପୋଖରୀ ମଧ୍ୟଭାଗରେ ମାଛରଙ୍କା ଚଢ଼େଇ ମାନେ ପାଣିରେ ଡ଼କ୍ କିନା ପଡ଼ି, ପାଣି ଭିତରୁ ମାଛ ଟେକି ନେଇ ଆକାଶକୁ ଉଡ଼ ଯାଉଥାନ୍ତି । ପୋଖରୀ ହୁଡ଼ାରେ ଲମ୍ବା ଲମ୍ବା ଖଜୁରୀ ଗଛ ମାନଙ୍କରେ ଧଳା ବଗମାନେ ବସି ରହି ଚାରିଆଡକୁ ଅନାଇ ରହିଥାନ୍ତି । ମାଇକିନା ମାନଙ୍କ ତୁଠରେ ଛୋଟ, ଛୋଟ ପୁଅ ଝିଅ, କିଶୋରୀ ଯୁବତୀ, ବୁଢ଼ୀ ମାନେ ଗାଧୋଇବାରେ ବ୍ୟସ୍ତ । ସ୍ତ୍ରୀ ଲୋକମାନେ ଗୁଡ଼ାଖୁ ମେଞ୍ଚାଏ ଲେଖା ପାଟିରେ ପୁରାଇ ଚପର ଚପର ଛେପ ପକାଇ ଦାନ୍ତ ଘସୁଥାନ୍ତି । କିଏ ଦାନ୍ତ କାଠି ଘସି ପାଣି ଭିତରେ ଜିଭ ଛେଲି ପୋଖରୀ ଭିତରେ ଚିର ଦାନ୍ତକାଠି ଫିଙ୍ଗି ଦେଉଥାଏ । ପାଖତୁଠରେ କିଏ ଘରୁ ଆଣିଥିବା କ୍ଷାରରେ ସିଝା ଲୁଗାକୁ ମୁଖରୁ ଏକ ପ୍ରକାର ସ୍ୱର ଲହରୀ ସୃଷ୍ଟି କରି ହୁ, ହୁ କରି ପଥରରେ ପିଟି ଲୁଗା ଧୋଉଥାଏ । ତୁଠରେ କେତେ ମାଇକିଣା ଗାଧୋଇ ବାରେ ବ୍ୟସ୍ତ । କିଏ ହଳଦୀ ମାଖି ତାର କଳା ଚିକଣ ଦେହରୁ ଗୋରା ସୁନ୍ଦର ରଙ୍ଗ ହେବ ବୋଲି ଘସି ମାଜି ହେଉଛି । କିଏ ତାର ଶେରସ୍ତ କମ ଦାମର ସାବୁନ ଆଣି ଦେଇଛି, ତାକୁ ଯତ୍ନ ସହକାରେ ଦେହରେ ଲଗାଇ, ମନ ଫୁଲାଇ ସାବୁନର ବାସନା ଅନ୍ୟକୁ ଆକୃଷ୍ଟ କଲାଭଳି ଦେଖାଇ ହସି ହସି ଗାଧୋଇବାରେ ଲାଗିଛି । କିଏ ଗାଧୋଇ ଓଦା ଲୁଗା ଅଧା ପିନ୍ଧି ଅଧାକୁ ଚିପୁଡ଼ ଦେହରେ ଘୋଡ଼ାଇ ଆଉ ଅଧାକୁ ଚିପୁଡବା ପାଇଁ ସଜ କରୁଛି । କିଏ ଗାଧୋଇ ତୁଠରେ ଛିଡ଼ାହୋଇ, ମୁଣ୍ଡର ବାଳକୁ ହାତରେ ଛାଞ୍ଚୁଡ଼, ବାଳରୁ ପାଣି ନିଗଡ଼ାଇ, ତାର ବଉଳକୁ ଡାକୁଛି, ଶିଘ୍ର ଗାଧୋଇ ଘରକୁ ଯିବାପାଇଁ । କେଉଁ କିଶୋରୀ ତାର ମକର ସହ ପାଣିରେ ପହଁରି, ପାଣିକୁ ଢ଼ବ ଢ଼ାବ ଗୋଡ଼ରେ ପିଟି ପାଣିକୁ ଚହଲାଇ ଦେଉଥାନ୍ତି । ପାଣିର ଛିଟକା ପଡ଼ କେଉଁ ମାଇକିଣା ପାଟିକରି ଗାଳି ବର୍ଷଣ କରୁଥାଏ । ମାଇପି ମାନଙ୍କ ହସ ଗୋଳରେ, ପାଟି ତୁଣ୍ଡରେ ଫାଟି ପଡ଼ୁଥାଏ । କେତେ ଆଡ଼୍ କେତେ କଥା ପଡ଼ଥାଏ । ଗାଁ କଥା, ପାଖ ପଡଶା ଗାଁ କଥା । ସବୁ ଆଲୋଚନାର କେନ୍ଦ୍ରବିନ୍ଦୁ ମାଇପିମାନଙ୍କ ପୋଖରୀ ତୁଠ । ନ ଜାଣିବା ଲୋକ ସବୁକଥା ଜାଣିଯିବ । କାହାରେ ସ୍ୱାମୀ ସ୍ତ୍ରୀ ଝଗଡ଼ା, କାହାରେ ପୁଅ ଅଭିମାନ କରି ଘରଛାଡ଼ ଚାଲି ଯାଇଛି । କେଉଁଦିନ ମହାଜନ ଟଙ୍କା ଋଣ ନଦେବା ପାଇଁ ଗୋବର ମାକୁ ମନକଲା ବୁଢ଼ୀ ଶେଷକୁ

ଜମି ବନ୍ଧାକରି ଟଙ୍କା ଆଣି ପୁଅର ବେମାର ପାଇଁ ଔଷଧ ଡାକ୍ତର ଆଣି ପୁଅର ବେମାର ଛଡାଇଲା । କେଉଁ ମରଦ ତାର ନୂଆ ବାହା ହୋଇଥିବା ସ୍ତ୍ରୀକୁ ମଦ ପିଇ ବାଡେଇଲା । କାହାର ସ୍ତ୍ରୀ, ତାର ସ୍ୱାମୀକୁ ଛାଡି ଡାମା ଘରକୁ ପଳାଇଲା ଏମିତି କେତେ ସୁଖ ଦୁଃଖ କଥା ପଡଯାଏ । କିଏ ହୁଙ୍କାରୁ ଥାଏ, କିଏ ମହାଜନକୁ ଗାଳି କରୁଥାଏ । କିଏ ତାର ସପ୍ତପୁରୁଷକୁ ଉଦ୍ଧାର କରି ଅଶ୍ଳୀଳ ଭଷାରେ ଲୋଭି ମହାଜନକୁ ଗାଳି ବର୍ଷଣ କରୁଥାଏ । କେଉଁ ରମଣୀ ଆହା ‘ ଗୋବରୀ ମା ’ ଆହା ବିଚ୍ଛରୀ କହି ଆଶ୍ୱାସନା ଭଗ୍ନ କଂଠରେ ତାର ଦରଦ ପ୍ରକାଶ କରୁଥାଏ । କେଉଁ ରମଣୀ ଗାଧୋଇ ପାଧୋଇ ଓଦାଲୁଗା ପିନ୍ଧି ଅଣ୍ଟା ଦୋହଲାଇ ଦୋହଲାଇ କାଖରେ ମାଠିଆ ଧରି ଗାଁ ତୁଠ କଥାରେ କାନ ନଦେଇ ଘରକୁ ଫେରିଯିବା ପାଇଁ ଉଚ୍ଛନ୍ନ ହେଉଥାଏ । ଘରେ ତେଣେ ତାର ଛୋଟ ପୁଅ କାନ୍ଦୁଥିବ । ବୁଢା, ଶାଶୁ, ଶ୍ୱଶୁର ଖାଇବା ପାଇଁ ଅପେକ୍ଷା କରିଥିବେ ।

ଦୂରରୁ କନକ ମୁଣ୍ଡ ତଳକୁ କରି ଆସୁଥିବା ଦେଖିପାରି ହେମକୁ ଚୁପେଲି ଠାରି ଦେଲା । ହେମ କଣେଇ କଣେଇ ତାକୁ ଦୂରୁଦେଖି କହିଲା,ମଲା ମୋର, ବାହାହେବା ପାଇଁ ସବୁ ସଜ ହେଲା ବେଳକୁ, ଟୋକୀ ବାହା ନହେବା ପାଇଁ ମନା କରିଦେଲା । କେତେ କଥା କଲା ?? ଗାଁ ମହତ ସାରିଲା ? ଏ ଟୋକୀ ଆଉ କେଉଁଠି ମନ ରଖି ଥିବନା । ନହେଲେ......... ତା କଥା ଶୁଣି ପୋଖରୀ ତୁଠରେ ହସର ଲହରୀ ଖେଳି ଗଲା । ମରଦ ଟୋକା ଟିକିଏ ଯେଗା । ସେଥିରେ କଣହେଲା । ମରଦ ପିଲାରେ କି ବାଛ ବିଚାର । ମାଇପି ଜନମ ଚୁଲି ମୁଣ୍ଡକୁ । କନକ ପାଖକୁ ଆସି ଦେଖିଲା, ତାକୁ ଦେଖି କେତେ ଚୁପୁର ଚାପୁର ହେଉଛନ୍ତି । କେତେ ମୁହଁ ବୁଲାଇ ନେଉଛନ୍ତି । କିଏ ତାକୁ ଅନାଇ, ପାଣିରେ ଭଡ଼ାସ କିନା ଡେ଼ଇଁପଡ଼ ଗାଧୋଉଛନ୍ତି । ସେମାନଙ୍କ ପାଣି ଛିଟକାରେ ତାର ଲୁଗା ଓଦା ହୋଇ ଯାଉଛି । ସତେ ଯେପରି ଗାଁରେ ସେ ଆଜି ଅଲୋଡ଼ା ଅଖୋଜା ମଣିଷ ଭଳି ଆସି ଯାଇଛି । କେତେ ସମବୟସୀ, କେତେ ବୁଢ଼ୀ, ଅର୍ଦ୍ଧବୁଢ଼ୀ, ତାକୁ ଅନେଇ ରହିଥାନ୍ତି । ସେ ଏକ ନୂଆକଥା । ନ ଶୁଣିବା କଥା, ବାହା ହେବାପାଇଁ ମନା କରି ଦେଇଛି? କେତେକଥା ନକଲ୍ ସିଏ ? ଗାଁରେ ଏକ ଚର୍ଚ୍ଚାର ବିଷୟ ହୋଇ ଯାଇଛି ଲଜ୍ୟାରେ ତାର ମୁହଁ ରଙ୍ଗ ପଡ଼ଯାଇଥାଏ । ଏତେ ମାଇପି ତାକୁ ଅନାଇ ଥିବା ଦେଖି ଲଜ୍ୟାରେ ସରମି ଗଲା । ତା ବଉଳ ବନ୍ଧ ହୁଡ଼ାରେ ଠିଆହୋଇ ତାକୁ କଣେଇ କଣେଇ ଅନାଉ ଥାଏ । ମାଠିଆକୁ ତଳେ ଥୋଇ ଦେଇ କନକ ଡାକିଲା,ବଉଳ ଗାଧୋଇ ସାରିଲଣି ?

ପ୍ରଭତୀ ଏକ କୋଡ଼ିଏ ଏକୋଇଶି ବୟସର ଯୁବତୀ । ଗାଧୋଇ ପାଧୋଇ ପୋଖରୀ ହୁଡ଼ାରେ ଛିଡ଼ାହୋଇଥିଲା । ତା ବଉଳ କନକ ଡାକରେ ତା ମନରେ ଯାହା ଭବନା ଥାଉନା କାହିଁକି ସେ ଉତ୍ତର ଦେଲା । ବଉଳ ଲୋ, ମୁ ତ ଗାଧୋଇ ସାରିଲିଣି ।

ତୁମେ ଶିଘ୍ର ଗାଧୁଅ । ସାଥୀ ହୋଇ ଘରକୁ ଫେରିବା । ତା ବଉଳର ଦରଦଭରା କଥା ପଦକ ଶୁଣି ତା ମନରେ ଶାନ୍ତ୍ୱନା ଆସିଲା । ଅନ୍ୟ ମାନଙ୍କ ଟାହି ଟାପରା କଥା ପ୍ରତି କାନ ନଦେଇ ଗାଧୋଇବାରେ ଲାଗିଗଲା । ସେ ସିନା ଲୋକଙ୍କ କଥାରେ କାନ ନ ଦେବ ଲୋକେ କଣ ତାକୁ ଛାଡିବେ ? ସେମାନେ କେବେ ନୀରବ ରହି ପାରିବେ ? ସେମାନେ କେବେ ତା ଦୁଃଖରେ ଦୁଃଖୀ ହୋଇ ପାରିବେ ? ତାକୁ କେବେ ସମବେଦନା ଜଣାଇ ପାରିବେ ?

ନା !

ଖାଲି କେବଳ ତା ମନରେ କଷ୍ଟଦେଇ, ନିଜେ ଆତ୍ମସନ୍ତୋଷ ଲାଭ କରିବେ । ଅନ୍ୟ ମନର ଦୁଃଖଦେଇ କେତେକ ଆନନ୍ଦ ଲାଭ କରିଥାନ୍ତି ।

ହେମର ବୟସ ପଚାଶ ପାଖାପାଖି ହେବଣି । ମୁଣ୍ଡର ବାଳ ଗୋଟି ଗୋଟି ଧଳା ହେବାକୁ ଆରମ୍ଭ କଲାଣି । ମାତ୍ର ସେ ଯେତେବେଳେ ଦର୍ପଣରେ ତା ମୁଣ୍ଡର ଧଳାବାଳ ଦେଖିଲେ ଉପାଡ଼ି ଦିଏ । ମାତ୍ର ଆଉ କିଛିଦିନ ପରେ ଦର୍ପଣରେ ତା ମୁହଁକୁ ଦେଖିଲେ ନୁଆ ଧଳାବାଳ ତାକୁ ଝଟେଇ ହୁଏ । ପରଗୋଇ ଖୋଲିବାରେ ତାର ନିତିଦିନିଆ ସଉକ ଏ ଘର ମାଉସୀ ସେ ଘର ପିଉସୀ ଭଳି ଗାଁରେ ସମସ୍ତଙ୍କ ଘରକୁ ତାର ଅବାଧ ପ୍ରବେଶ ସେ ଯେତେବେଳେ ବନ୍ଧ ତୁଠରେ କନକକୁ ଏତେ ଦିନପରେ ପାଇଛି, ତାକୁ କଣ ସହଜରେ ଛାଡିଦେଇ ପାରିବ ? କନକ ତାକୁ ଆଡ଼େଇ ଦେଇ ଗାଧୋଇବା ପାଇଁ ଚାଲିଯାଇ ପାରେ । ମାତ୍ର ସେ ତାକୁ ଛାଡିବାକୁ ନାରାଜ ।

ହେମ, ତାର ଅତି ପାଖକୁ ଚାଲିଆସି କହିଲା,ଆଲୋ କନକ ତୋଭଳି ମାଇକିନାକୁ ବୁଢ଼ାବର ? ଏ କି କଥା ? ଯେ ତୋ ପାଇଁ ଯୋଗାଡ଼ କରି ଦେଉଥିଲା, ତାରି ଭିତରି କିଛି ମତଲବ୍ ଥିବ ନାଁ ?

କନକ ହୃଦୟରେ କ୍ରୋଧ ଉଠି ଆସିଲା । ଆଖି ପାଣିରେ ଥମ୍ ଥମ୍ ହେଲା । ମନର କ୍ରୋଧ ଆଖିର ଲୁହକୁ ଚାପି କନକ କହିଲା । ଥାଉ ମାଉସୀ,କାହାକୁ ଦୋଷ ଦେଇ କଣ ମିଳିବ ? ଗରୀବ ସମସ୍ତଙ୍କ ହାତ ପୁତଳୀ ବୋଲି ତାକୁ ଭାବନ୍ତି । ମୋର କପାଳକୁ ସେତକ ଥିଲା ମନ ସହିତ ମନର ମେଳ ନହେଲେ ସେ କି ବିବାହ । କନକର ମନର ବେଦନା ଅନ୍ୟ ମାଇପୀ ମାନଙ୍କ ହୃଦୟକୁ ତରଳାଇ ଦେଲା ।

ହେମକୁ ଆଉ ଜଣେ ସ୍ତ୍ରୀ କହିଲା, ଥାଉ ମାଉସୀ ଆଉ ସେ କଥା ପକାଅନା ।ଯାହା ଛିଣ୍ଡିଛି ତାକୁ ଆଉ ଯୋଡ଼ି ହୁଏନା । ମନ ଯାକୁ ଛି କରି ଦେଇଛି ତାକୁ ଘାଣ୍ଟି ଆଉ ଲାଭନାହିଁ । ପ୍ରଭାତୀ ଟିକିଏ ଦୂରରେ ଥାଇ ସବୁ ଶୁଣୁଥିଲା । ଦୂରରୁ ସେ ପାଟିକଲା ବଉଳ ତୁମେ ଶିଘ୍ର ଗାଧୁଅ, ଘରକୁ ଯିବପରା ? କନକ ତା ବଉଳର ଡ଼ାକଶୁଣି ତୁଠରେ ଥିବା

ମାଇପି ମାନଙ୍କୁ ଥରେ ଅନାଇ ଦେଇ ପାଣିରେ ପଶି ଶିଘ୍ର ଗାଧୋଇ ପଡ଼ିଲା । ତର ତର ହୋଇ ତାର ଅନାବୃତ୍ତ ଛାତିକୁ ଓଦା ଲୁଗାକାନିରେ ଘୋଡ଼ାଇ ଦେଲା । ସଦ୍ୟସ୍ନାତ ମୁଣ୍ଡବାଳରୁ ପାଣି ଥପଥପ, ଝରି ପଡ଼ୁଛି । ଓଦା ଲୁଗାରୁ ଯୌବନ ଫୁଟି ଉଠୁଛି । ତାର ସ୍ନିଗ୍ଧ କରୁଣ ଆଖି ଦୁଇଟି ବିସ୍ଫୋରିତ ହୋଇ ଯାଇଛି । ସଦ୍ୟ ସ୍ନାତ ମୁହଁର ରଙ୍ଗ ଅଧୁରି ଉଜ୍ଜ୍ୱଳ ଦେଖା ଯାଉଛି । ସ୍ନାନପରେ କନକର କମନୀୟ ରୂପର ମହକ ଚହଟି ଉଠୁଛି । ଓଦା ଲୁଗାକୁ ଚିପୁଡ଼ି ତାକୁ ସଜାଡ଼ି ନେଇ କାଖରେ ପାଣି ମାଠିଆ ଧରି ବଉଳ ପାଖକୁ ଚାଲିଗଲା ସାଙ୍ଗରେ ଯିବାପାଇଁ । ଗାଁ ମାଇପୀ ତାକୁ କେବଳ ଅନାଇ ରହି କହୁଥାନ୍ତି, ଆହା ବିଚାରୀ......... ।

ଆଉ କେତେକ ତାକୁ ଡ଼ବ୍ ଡ଼ବ୍, କରି ଅନାଇ ରହିଥାନ୍ତି । ହେମ ତାକୁ ଟେରେଇ ଟେରେଇ, ତାର ମନର ରାଗ ଝାଡ଼ି ପାରିଲା ନାହିଁ ବୋଲି, ଅମୁଖ ହୋଇ କହିଲା ହଁ ଲୋ ମା, ଯାହା ଘଟେ ତାହା ରଟେ । ଖାଲି ଖାଲି କିଏ ସୃଷ୍ଟି କରି କଥା ରଟେ ଏଥିରେ କିଛି ଗୁମର ଅଛି ନା ? ବଡ଼ ଲୋକଙ୍କୁ ଉତ୍ତର ନାହିଁ ଲୋ ମା । ଏ ମାଇପ ଆଉ କେଉଁଠି ରସିଥିବ ନା । ଫୁଲ ଫୁଟିଲେ ବାସ ଚହଟିବ ଲୋ ? ତା କଥାଶୁଣି ମାଇପି ମାନେ ଖିଲି ଖିଲି ହୋଇ ହସି ଉଠିଲେ । ହସର ତରଙ୍ଗ ପୋଖରୀର ତରଙ୍ଗ ସଙ୍ଗେ ମିଶାଇଗଲା ।

ଦେଙ୍ଗସାପାଲି ।

ଛୋଟ ଗାଁଟି । ଗାଁର ଅଳ୍ପ ଦୂରରେ ଛୋଟ,ବଡ଼ ବିଭିନ୍ନ ପର୍ବତମାଳାର ସମାବେଶ ରେ ଏକ ଲମ୍ବ ପ୍ରାଚୀର ଭଳି ନିଶ୍ଚଳ ହୋଇ ଠିଆ ହୋଇ ରହିଛି ଯୁଗଯୁଗ ଧରି । ଦୂରରୁ ଦେଖିଲେ ମନେହୁଏ ଏକ ମସ୍ତବଡ ହସ୍ତି ଲମ୍ବ ଶୁଣ୍ଢକୁ ଲମ୍ବାଇ ମହାସୁଖ ନିଦ୍ରାରେ ଶୋଇ ରହିଛି । ପର୍ବତ ମଧ୍ୟରୁ ଅନେକ ଜଳ ପ୍ରପାତ ବାହାରି କଳକଳ ନାଦରେ ଚତୁର୍ପାର୍ଶ୍ଵକୁ ମୁଖରିତ କରି ବୋହି ଯାଉଥାଏ । ପ୍ରାକୃତିକ ଶୋଭାରେ ଭରପୁର ଦେଙ୍ଗସାପାଲି ଗାଁଟି ଆଜି ଆନନ୍ଦ ମୁଖରିତ ।

ସମୟ ବଦଳୁଛି ।

ଲୋକଙ୍କ ଭାବନା, କାମ୍ପି ମଧ୍ୟ ବଦଳୁଛି । ଏ ଭିତରେ ଗାଁଟିର ରୂପରେଖ ବହୁ ପରିବର୍ତ୍ତନ ହୋଇ ଯାଇଛି । ଗାଁ ରାସ୍ତା ସବୁ ଓସାରିଆ ହୋଇଛି । ଗାଁ ଦାଣ୍ଡରେ ଘର ଅଳିଆ ଆଉ ଜମା ହେଉନାହିଁ । ଗାଁଠୁ ଦୂରରେ ଅଳିଆଗଦା । କମ୍ପୋଷ୍ଟ ଗାତସବୁ ଖୋଳା ଯାଇଅଛି । ପ୍ରତ୍ୟେକ ଘର ବାଡ଼ ବଗିଚାରେ କିଛି ଫଳମୂଳ ଗଛ ଲାଗିଛି । ସଜନାଗଛ ଲେମ୍ବୁଗଛ, ଅମୃତଭଣ୍ଡା ଗଛ ଗୋଟିଏ ଯୋଡ଼ାଏ ଆମ୍ବଗଛ ଲାଗିଛି । ଗାଁର ଗାଈ ଗୋରୁ ଆବଦ୍ଧ ହୋଇଛନ୍ତି । ଗାଁର କଳି, ଗୋଳ ମାମଲା ଗାଁ କୋଠ ଘରେ ବସି ଫଇସଲା ହେଉଅଛି । ବୁଝା ସମଝା ଭିତରେ ସବୁ ସମାଧାନ ହୋଇ ଯାଉଅଛି ।

ସତେ ଆଜି ମନେ ହେଉଛି ଗାଁଟି ଗୋଟିଏ କୁଟୁମ୍ବ ଭଳି ଚଳୁଛି । ସମସ୍ତେ ସମସ୍ତଙ୍କ ପାଇଁ ଚିନ୍ତା କରୁଛନ୍ତି । ତେଣୁ ଆଜି ସମସ୍ତଙ୍କ ମଙ୍ଗଳ ହେଉଛି । ଛୋଟ ପରିବାର ର ଜଣକୁ ବିପଦ ଦେଖାଦେଲେ ଗାଁଟି ଯାକର ଲୋକ ଆସି ସାହାଯ୍ୟ କରି ଯାଉଅଛନ୍ତି । ଅନ୍ୟ ଜଣେ ଆସି ତାର ବିପଦରେ ଭାଗିଦାର ହେଉଛି । ତେଣୁ ଆଜି ଗାଁର ସମସ୍ତେ ସମସ୍ତଙ୍କ ପାଇଁ ମନ ଲଗାଇ ଦେଇଛନ୍ତି । ଗାଁରେ ଆଉ ଭେଦଭାବ ପର, ଆପଣାର କଥା ଉଠୁନାହିଁ । ପରସ୍ପର ପରସ୍ପର ମଧ୍ୟରେ ଭାବ ବିନିମୟ ହୋଇ ସୁଖରେ ଚଳୁଛନ୍ତି । ଏ ସମସ୍ତ ମୂଳରେ ତପନର ହାତ ରହିଛି । ଗାଁଟି ଯାକର ଲୋକଙ୍କୁ ଏକ ସୂତ୍ରରେ ବାନ୍ଧରଖି ପାରିଛି । ଭଦ୍ର ମାର୍ଜିତ ଶାନ୍ତ ଏବଂ ଶିକ୍ଷିତ ତପନ । ସମସ୍ତଙ୍କୁ ସେ ଆପଣାର କରିପାରିଛି

ଯେଉଁଦିନ ତାର ମା' ତାକୁ କହିଲା । 'ଧୋବୁ କାମରେ ମନଦେଲେ ମନକୁ ପାପ ଛୁଇଁବ ନାହିଁ ।'

ସେହି ଦିନଠୁ ତପନ ଗାଁ ଯୁବକମାନଙ୍କୁ ଏକଯୁଟ କରି ଦିନରାତି କାମରେ ଲାଗିଛି । ତା ନିଜ ଜମିବାଡରେ ମଧ୍ୟ ମନ ଲଗାଇ ଅନେକ ଚାଷ ହାତକୁ ନେଇଛି ।

ଏବର୍ଷ ଖରିଫ ଧାନଚାଷ ପରେ, ଗାଁ ଲୋକଙ୍କୁ ଏକାଠି କରି ରବିଚାଷ, ପନିପରିବା ଚାଷ ହାତକୁ ନେଇଛନ୍ତି । ଗାଁ ସାରା ଲୋକ ଚାଷରେ ଲାଗିଯାଇଛନ୍ତି । ସତେ ଯେପରି ସେମାନେ ଅନେକ ଦିନ ହେବ ଶୋଇ ରହିଥିଲେ । ଆଜି ସେମାନେ ଚେଇଁ କାମରେ ଲାଗିଯାଇଛନ୍ତି । ଯେତେ କାମରେ ଲାଗିଲେ ମଧ୍ୟ କାମ ସରୁନାହିଁ । କାହା ଜମିରେ ସୋରିଷ ଚାଷ ହୋଇଛି ତ କାହା ଜମିରେ ଗହମ ଚାଷ ହୋଇଛି । କିଏ ମୁଗ ବୁଣିଛି ତ କିଏ ଆଳୁଚାଷ କରିଛି । କା ବାଡରେ ଭେଣ୍ଡି, ବାଇଗଣ, ପାତଳଘଣ୍ଟା ଲଗା ଯାଇଛି ତ କାହା ବାଡ଼ରେ କେତେ ପ୍ରକାର ଶାଗ, ଖଡ଼ା ଭର୍ତ୍ତି ହୋଇଛି । କାହା ବାଡ଼ରେ କୋବି ଲାଗିଛି ତ, କାହା ବାଡ଼ରେ ପୋଟଳ ଫୁଲ ଫଳ ଧରିଛି । ଏବେ ଆରେକେ ବଳି ଉପାର୍ଜନ କରିବା ପାଇଁ ଦିନରାତି ପରିଶ୍ରମ କରି ଚାଲିଛନ୍ତି ।

ହାତକୁ ଦୁଇ ପଇସା ମଧ୍ୟ ଆସିଛି । ପୁଅ ଝିଅପାଇଁ ନୂଆ ଜାମା ଖର୍ଦ୍ଦି ହୋଇଛି । ଘରେ ଘରଣୀ ତାର ଗେରସ୍ତକୁ ସୋହାଗରେ କହୁଛି, ମୋତେ ଏଥର ନୂଆ ଶାୟାଏ ଓ ଖଣ୍ଡିଏ ଶାଢ଼ୀ ଆଣିଦେବ । ସ୍ୱାମୀ ହସିଦେଇ ତାର ଗାଲରେ ସରୁ ଚପୁଡାଟିଏ ମାରି ଦେଉଛି । ଆଖିରେ ଆଖି ମିଳାଇ ସମ୍ମତି ଜଣାଉଛି ।

ଧାନଚାଷ ପରେ ଗାଁରେ ଲୋକ ଅଳସୁଆମିରେ ତାସଖେଳ, ଯୁଆଖେଳରେ ମାତି' ଦିନ କଟାଉଥିଲେ । ଆଜି ସବୁ ବଦଳି ଯାଇଛି । ଯେତେ କାମ କଲେ ମଧ୍ୟ ଲୋକେ ହାଲିଆ ହେଉନାହାନ୍ତି । ଆହୁରି କାମ କରି ।କୁ ମନ ଉଚ୍ଛନ୍ନ ହେଉଛି ।

ଗାଁରେ ଯୁବକ ସଂଘ ଗଠନ ହୋଇଛି । ଗାଁ ପାଠାଗାରକୁ ଖବର କାଗଜ ଆସୁଛି । ପାଠାଗାରରେ ପିଲା ବୁଢ଼ା ବସି ପାଠ ପଢ଼ୁଛନ୍ତି । ରାତ୍ରରେ ପ୍ରୌଢ଼ ଶିକ୍ଷାକେନ୍ଦ୍ର ଖୋଲା ଯାଇ ଗାଁ ବୁଢ଼ାମାନେ ଅକ୍ଷର ଶିଖୁଛନ୍ତି । ଗାଁରେ ସମସ୍ତ ଶିକ୍ଷିତ ହେବେ । ଜଣେ ବି ଅପାଠୁଆ ରହିବେ ନାହିଁ । ଗାଁର ଉପାର୍ଜନ ବଢ଼ିଲା ପରେ ଗାଁ ଡାକଘରେ ସମସ୍ତଙ୍କ ନାଁରେ ସଂଚୟ ପାସ୍ ବହି ଖୋଲା ଯାଇଛି । ଲୋକେ ପ୍ରତି ମାସରେ ନିଜ ନିଜ ପାସ୍ ବହିରେ ଟଙ୍କା ଜମା କରୁଛନ୍ତି ।.

କୁହୁକ ବିଦ୍ୟା ବଳରେ ସବୁ ବଦଳି ଗଲାଭଳି ଗାଁଟି ସାରା ବଦଳି ଯାଇଛି ।

ଲକ୍ଷ୍ୟ ଯଦି ମହତ୍ କର୍ମପନ୍ଥା ମଧ୍ୟ ମହତ୍ ହେବା ଉଚିତ । ନିଷ୍ଠା ଆନ୍ତରିକତା ବଳରେ ଅସାଧ୍ୟ କାର୍ଯ୍ୟ ମଧ୍ୟ ସାଧ୍ୟ ହୋଇଥାଏ । ତପନର ଏକାଗ୍ରତା ଏବଂ ଆନ୍ତରିକତା ଫଳରେ ଆଜି ଅସମ୍ଭବ ମଧ୍ୟ ସମ୍ଭବ ହୋଇ ପାରିଛି । ଗାଁ ଲୋକଙ୍କୁ ଏକଜୁଟ କରି କାମରେ ଲଗାଇ ପାରିବା, ମନକୁ ମନ ମିଳାଇ ପାରିବା ଏ ଏକ ସହଜ କଥାନୁହେଁ ମାତ୍ର ଆଜି ରେଙ୍ଗଲାପାଲି ଗ୍ରାମରେ ସମ୍ଭବପର ହୋଇ ପାରିଛି ।

ଗାଁର କେତେ ସାଙ୍ଗମାନଙ୍କ ଗହଣରେ ତପନ ବସି ଗାଁର କିପରି ଉନ୍ନତି ହେବ । ଆଉ ନୂଆନୂଆ କାମ କ'ଣ ହାତକୁ ନିଆଯାଇପାରିବ ସେହି ଚିନ୍ତାରେ ସମସ୍ତେ ବସିଥାନ୍ତି । ଆଲୋଚନା ଚାଲିଥାଏ । କେତେ କଥା କାହା ମନକୁ ଆସୁଥାଏ ତ କେତେକଥା କାହା ମନକୁ ପାଉନଥାଏ ।

ମଧୁ, କଲେଜ ପଢ଼ା ଶେଷକରି ଗାଁକୁ ଫେରିଛି । ଗାଁକୁ ଆସି ଗାଁର ରୂପରେଖ ଦେଖି ତା ମନ ଲାଖି ଯାଇଛି । ତପନର ପରିଶ୍ରମ, ଲୋକଙ୍କୁ ବୁଝାଇବାର ଶକ୍ତି ଏବଂ ତା ପ୍ରତି ଲୋକଙ୍କ ଅତୁଟ ବିଶ୍ୱାସ ଦେଖି ସେ ମନମୁଗ୍ଧ ହୋଇ ପଡ଼ିଛି । ତା ମନରେ ମଧ୍ୟ ଉତ୍ସାହ ଖେଳି ଯାଇଛି । ଆପେ ଆପେ ସେ ନିଜକୁ ଏହି ମହାନ ଜଜ୍ଞରେ ସାମିଲ କରି ଦେଇଛି । ତପନକୁ ସବୁ କ୍ଷେତ୍ରରେ ସାହାଯ୍ୟ ଦେଇ ଆସୁଛି । ସେ ଟିକିଏ ଚିନ୍ତିତ ହୋଇ କହିଲା, ତପନ ଭାଇ ସବୁ ଠିକ୍ ଚାଲିଛି । ଗାଁର ଆମେ ଅଧେ ଲୋକଙ୍କ ପାଇଁ ସବୁ କରୁଛୁ । ତା କଥା ଶେଷ ନହେଉଣୁ ଆଉ ଜଣେ ଯୁବକ ନବ ପାଟିକଲା, ମଧୁଭାଇ, ଏ କେମିତି କଥା କହିଲ । ତା ମୁହଁରେ ଆଶ୍ଚର୍ଯ୍ୟଭାବ ଫୁଟି ଉଠିଲା । ଆମେ ଯେତେବେଳେ ଗାଁଟା ସାରା ସମସ୍ତଙ୍କ କଥା ଚିନ୍ତାକରି କରୁଛୁ, ତୁମେ କେମିତି କହିଲ ଅଧେ ଲୋକଙ୍କ ପାଇଁ କାମ ହେଉଛି ବୋଲି ?

ତପନ ତାର ବନ୍ଧୁ ନବକଥା ଶୁଣି, ଟିକିଏ ହସି କହିଲା, ସେଥିପାଇଁ ମଧୁକଥା ପୂରା କହିବାକୁ ଦିଅ ।

ମଧୁ କହିଲା, ମୁଁ କଣ କହୁଥିଲି କି, ଆମ କାମ ଠିକ୍, ଚାଲିଛି ।ଠିକ ଚାଲିଛି ବୋଲି ଆମ ପାଖ ପାଖ ଗାଁରେ ମଧ୍ୟ ଲୋକେ କାମରେ ମାତି ଗଲେଣି । ଅଧିକ ଉପାର୍ଜନ କରିବା ପାଇଁ ସେମାନଙ୍କ ଆଖି ଖୋଲି ଯାଇଛି । ଦିନରାତି ପରିଶ୍ରମ କରିବାରେ ଲାଗିଛନ୍ତି । ଏ ତ ଠିକ ଚାଲିଛି । ଏତେ ହେଲେ ମଧ୍ୟ ଗାଁର ଅଧେ ଲୋକ ଆମର ମା, ଭଉଣୀ ସେମାନଙ୍କୁ ଆମେ କାମରେ ଲଗାଇ ପାରୁନାହୁଁ ସେମାନଙ୍କୁ ଯଦି ଆମ ସହିତ କାମରେ ସାମିଲ ନ କରି ପାରିବା ତେବେ ଆମ ସମସ୍ତଙ୍କ କଳ୍ପନା ଫସର ଫାଟିଯିବ ।

ମଧୁର କଥା ଏଥର ନବ ବେଶ ବୁଝି ପାରିଲା । ବିସ୍ମିତ ହୋଇ କହିଲା, ମଧୁଭାଇ

ଶେଷରେ ତମେ କଣ, ମା ଭଉଣୀଙ୍କୁ ଅନ୍ୟମାନଙ୍କ ସହିତ କାମରେ ଲଗାଇବ । ଏ ଠିକ ହେବନାହି ?

ମଧୁ ବ୍ୟଗ୍ର ହୋଇ ପ୍ରଶ୍ନକଲା, କାହିଁକି ଠିକ୍ ହେବନାହିଁ ? ନବ ଗମ୍ଭୀର ହୋଇ କହିଲା, ସେମାନଙ୍କ କାମ ଘର ଭିତରେ ବାହାରେ ନୁହେଁ !!

ତପନ ଦୁଇବନ୍ଧୁଙ୍କ କଥା ଶୁଣି କହିଲା, ମା ଭଉଣୀ ମାନଙ୍କୁ ଶିକ୍ଷିତ କରିବାକୁ ପଡ଼ିବ । ସମାଜର ଅର୍ଦ୍ଧେକ ଲୋକ ଯଦି ଶିକ୍ଷିତ ନହୋଇ ଅନ୍ଧକାର ମଧ୍ୟରେ ବୁଡ଼ିଥିବେ ସମାଜର ଉନ୍ନତି ହେବା ସମ୍ଭବପର ନୁହେଁ । ସେମାନଙ୍କ ମନରୁ ଅନ୍ଧ ବିଶ୍ୱାସ, କୁସଂସ୍କାରକୁ ଦୂର କରିବାକୁ ପଡ଼ିବ । ଏଥିପାଇଁ ଉପଯୁକ୍ତ ଶିକ୍ଷା ଏବଂ ପରିବେଶର ଆବଶ୍ୟକତା ଆଜି ଅତି ଜରୁରୀ ହୋଇ ପଡ଼ିଛି । ଅନ୍ଧ ବିଶ୍ୱାସ, ଅଶିକ୍ଷା, ଆଜି ଆମକୁ ଆଗକୁ ବଢ଼ିବା ପାଇଁ ବାଟ ଛାଡ଼ ଦେଉନାହିଁ । ତାକୁ ଅତିକ୍ରମ କରି ଶିକ୍ଷାର ପ୍ରସାର ଘଟାଇଲେ ଆପେ ଆପେ ସବୁ ପରିଷ୍କାର ହୋଇଯିବ । ତେଣୁ ଗାଁରେ ମହିଳା ସମିତି ଗଠନ କରି ସେମାନଙ୍କୁ ଏକାଠି କରି ସଚେତନ କରାଇବାକୁ ପଡ଼ିବ । ସେମାନଙ୍କୁ ଯଦି ଆମ ସହିତ ସାମିଲ କରି ପାରିବା ନାହିଁ, ତେବେ ଆମେ ଆଗକୁ ବଢ଼ି ପାରିବା ନାହିଁ । ତପନର କଥା ଏବଂ ଯୁକ୍ତି ଅନେକଙ୍କ ମନକୁ ପାଇଲା ।

କିନ୍ତୁ ନବ ମନରେ ସଂଶୟ ଦେଖାଗଲା । ନାରୀକୁ ପରଦା ଅନ୍ତରାଳରୁ ବାହାରକୁ ଆଣିବାରେ ତା ମନରେ ଦ୍ୱନ୍ଦ୍ୱ ସ୍ପଷ୍ଟ ପରିଲକ୍ଷିତ ହୋଇଛି ।

ସମୟର ଗତି ସହିତ ଆମକୁ ତାଳ ଦେଇ ଗତି କରିବାକୁ ପଡ଼ିବ ।

ମଧୁ, ନବକୁ ବୁଝାଇବା ପାଇଁ ଚେଷ୍ଟା କଲା ।

ମଧୁ, ସମସ୍ତଙ୍କ ମୁହଁକୁ ଥରେ ଚାହିଁନେଇ କହିଲା, ଏଥିପାଇଁ ଗାଁର ଜଣେ ସ୍ତ୍ରୀ ଲୋକ ଏ ଦାୟିତ୍ୱ ନେବା ଉଚିତ । କିନ୍ତୁ କିଏ ସେ, ସେଭଳି ସ୍ତ୍ରୀ ଲୋକଟିଏ ତ ଏଇ ଆମ ଗାଁ କିମ୍ବା ପାଖଆଖ ଗାଁରେ ଥିଲାଭଳି ଜାଣିପାରୁ ନାହୁଁ ।

ମଧୁ କଥା ଶୁଣି ସମସ୍ତେ ତାକୁ ତାରିଫ କଲେ । ସ୍ତ୍ରୀ ଲୋକଙ୍କ କାମ ସ୍ତ୍ରୀ ଲୋକ ନେବା ଉଚିତ । ତାରି ପ୍ରଶ୍ନ ସମସ୍ତଙ୍କ ମୁହଁରେ ଦେଖାଦେଲା । ସତେ ତ ସେଭଳି ସ୍ତ୍ରୀ ଲୋକଟି କିଏ, ଯେ ଏତେ ବଡ଼ ଦାୟିତ୍ୱ ନେଇ ପାରିବ ? ବସି ସବୁ ଶୁଣୁଥିବା ଲୋକ ମାନଙ୍କ ଭିତରୁ ଜଣେ ପାଟିକରି କହିଲା, ଜଣେ ସ୍ତ୍ରୀ ଲୋକ ହେଲେ ହେବନାହିଁ । ଏକୁଟିଆ ମାଇକିନା ଲୋକଟିଏ କଣ କରିବ ? ତା ସହିତ ଆଉଜଣେ ସ୍ତ୍ରୀ ଲୋକଟିଏ ହେଲେ ଦୁହେଁ ମିଶି ମା ଭଉଣୀ ମାନଙ୍କୁ ବୁଝାଇ ପାରିବେ । ମଧୁ ସମସ୍ତଙ୍କ କଥା

ଶୁଣୁଥିଲା । ସେମାନଙ୍କ ଆଡ଼କୁ ଥରେ ତାର ଆଖି ବୁଲାଇ ଆଣି କହିଲା, ଆମେ ଯେତେବେଳେ ଜଣେ ସ୍ତ୍ରୀ ଲୋକକୁ ଆମ ଦୃଷ୍ଟିକୁ ଆଣି ପାରୁନାହୁଁ, ସେତେବେଳେ ଦୁଇ ଜଣଙ୍କ କଥା ଉଠୁଛି କେଉଁଠି ?

ତପନ, କଥାର ଗୁରୁତ୍ୱ ଏବଂ ଗମ୍ଭୀରତା ବୁଝିପାରି କହିଲା, ଜଣକୁ ଆମେ ବାହାର କଲାପରେ ଆପେଆପେ ତାରି ଦେଖାରେ ଆଉ ଜଣେ ବାହାରି ପଡ଼ିବେ ।

ମଧୁ କଥାକୁ ଲାଘବ କରିବା ପାଇଁ କହିଲା, ହନୁମାନ ସାତ ସମୁଦ୍ର, ତେର ନଈ ପାର ହୋଇ ସୀତାଙ୍କୁ ଠାବ କଲାପରି ଆମକୁ ମଧ୍ୟ ଜଣେ ସ୍ତ୍ରୀ ଲୋକଙ୍କୁ ଠାବ କରିବାକୁ ପଡ଼ିବ ।

ତାକଥା ଶୁଣି ସମସ୍ତଙ୍କ ମନରେ ହସ ଚହଟି ଗଲା । କଥା ଏତେଟା ସହଜ ନୁହେଁ, ମଧୁକଥା ସମସ୍ତଙ୍କ ମନକୁ ପାଇଲା ।

ଟୋକାମାନଙ୍କ ଆଗରୁ ଉହାସ ଗାଁର ପୁରୁଣା ବୟସ୍କ ଘନ ବସି ଶୁଣୁଥାଏ । ପିଣ୍ଡାର ଗୋଟିଏ ପାର୍ଶ୍ୱକୁ ଗୁମ୍ ହୋଇ ବସି ରହି କେତେ କଣ ଭାବି ଚାଲିଥାଏ । ସମସ୍ତଙ୍କ କଥା ସେ ମନ ଦେଇ ଶୁଣି, ତାର ସମାଧାନ ପାଇଁ ଚିନ୍ତା କରି ଚାଲିଥାଏ ।

ବୟସ ଅହାଡ ତିନି କୋଡ଼ିକୁ ଡେଇଁ ଗଲାଣି । ବାର୍ଦ୍ଧକ୍ୟତାର ସ୍ମୃତିକୁ ମଳିନ କରିଦେଇ ନାହିଁ । କଂଠକୁ ଦୁର୍ବଳ କରି ଦେଇ ନାହିଁ । ଶିଥିଳ ଚର୍ମ ତଳେ ଅସରନ୍ତି ବଳ ଏବେବି ଖନ୍ଦ ହୋଇଥିଲା ଭଳି ମନେହୁଏ । ମୁଣ୍ଡରେ ତାର ପାଚିଲା ଧଳା ବାଳକୁ ନାଲି କସଦିଆ ଗାମୁଛା ଠେକରେ ଭିଡ ଦେଇଥାଏ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଗାଲ ଦୁଇଟିର ଚମ ଏବେବି ଓହଳି ପଡ଼ୁନଥାଏ । ଆଖି ଦୁଇଟି ଦପ୍ ଦପ୍ ହୋଇ ସତେଜ ଦେଖାଯାଉଥାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାର ମନର ବୟସ ତାକୁ ଟୋକା ଭଳି ଜଣା ପଡୁଥାଏ । ତେଣୁ ଯୁବକମାନଙ୍କ ସହ ବସିବା, ଗପିବା, ମଉଜ ମଜଲିସ୍ କରିବାରେ ତାର ଆନନ୍ଦ । ସମସ୍ତେ ଗାଁଟି ଯାକର ଲୋକେ କି ପୁରୁଷ କି ସ୍ତ୍ରୀ ସମସ୍ତଙ୍କର ଆପଣାର ଅଜା । ଗାଁରେ କାହିଁକି ଆଖପାଖ ଗାଁ ତଥା ଏଖଣ୍ଡ ମଣ୍ଡଳରେ ସେ ସମସ୍ତଙ୍କ ଅଜା । ଲୋକଙ୍କ ଯେଉଁ ଉତ ହେଲା ସେଇଠି କିଏ ନ ଡାକିଲେ ମଧ୍ୟ ଘନ ଅଜା ହାଜର । ଘରର ମୁରବି ଭଳି ସବୁ କାମ ଦେଖା ରେଖା କରି ଚଳାଇ ନେବେ । ନ ଜାଣିବା ଲୋକ ଜାଣିବ, ସେ ଏ ଘରର କର୍ତ୍ତା । ତାଙ୍କରି ହୁକୁମରେ ସବୁ କାମ ଚାଲିଛି । କିଏ ମରିଗଲା ତାର ଦଶା, ଶୁଦ୍ଧିକ୍ରିୟା, ସେଠି ଘନ ଅଜା । ସାନ୍ତ୍ୱନା ଦେବେ । ମନରେ ବିଶ୍ୱାସ ସ୍ଥାପନ କରିବେ । ଆଗକୁ ବଢ଼ିବା ପାଇଁ ଦମ୍ଭ ଦେବେ । ତେଣୁ ତାଙ୍କୁ ଦେଖିଲେ ମନରେ ଦମ୍ଭ ଆସିଯାଏ । ମନରେ ଭରସା ଫେରିଆସେ । ସେହି ଘନ ଅଜା ଗୁମ୍ ହୋଇ ବସିଥିବା ଦେଖି ମଧୁ ଆଶ୍ଚର୍ଯ୍ୟ ହୋଇ ତାଙ୍କ ଅତି ନିକଟକୁ ଚାଲିଆସି କହିଲା, କଣ ଅଜା ଆମେ ସବୁ ଏତେ ଚିନ୍ତା କରି ସ୍ତ୍ରୀ ଲୋକଟିଏ ଖୋଜି ବାହାର କରିବା ପାଇଁ କୂଳ କିନାରା ପାଉନାହୁଁ । ତୁମେ ଏଣେ ତୁନି ପଡ଼ି ଆମ ମଜା ଦେଖୁଛ ?

ଘନ ଅଜା, ମୁଣ୍ଡର ଠେକା କାଢ଼ି ମୁହଁକୁ ଥରେ ପୋଛି ଦେଇ କହିଲେ, "ମୁଁ ତୁନି ପଡ଼ ତୁମମାନଙ୍କ କଥା ଶୁଣୁଛି ଏବଂ ଉପାୟ ମଧ୍ୟ ଚିନ୍ତା କରୁଛି ।"

ମଧୁ ବ୍ୟଗ୍ର ହୋଇ କହିଲା, ତେବେ ତୁମେ କିଛୁ କହୁନା କାହିଁକି ? ମହିଳା ସମିତି ଦାୟିତ୍ୱ ନେବା ପାଇଁ ସ୍ତ୍ରୀ ଲୋକଟିଏ ପାଇବୁ କେଉଁଠୁ ? ମହିଳା ସମିତି ଗଠନ ନହେଲେ ମା ଭଉଣୀଙ୍କୁ ଏକଜୁଟ କରି ହେବ ନାହିଁ । ଯୁଗକୁ ନେଇ ଗତି ବଦଳିଛି । ତେଣୁ ଯୁଗକୁ ଚାହିଁ ତପନ ଠିକ୍ ସମୟରେ ଠିକ୍ କାମରେ ହାତ ଦେଇଛି । ମା ଭଉଣୀମାନେ ଶିକ୍ଷିତ ନହେଲେ ଦେଶ, ସମାଜର ଉନ୍ନତି ହେବ କେମିତି ? ଆମେ ଆଗେଇବା କେମିତି ? ଶିକ୍ଷା ହେଉଛି ପ୍ରଗତିର ମାପକାଠି । ତେଣୁ ତାକୁ ଭୁଲିଲେ ଚଳିବ ନାହିଁ ତା ପାଇଁ ସମସ୍ତ ଉଦ୍ୟମ ଆବଶ୍ୟକ । ସମସ୍ତଙ୍କ ଆନ୍ତରିକ ସହଯୋଗରେ ଏହା ସମ୍ଭବପର ହୋଇ ପାରିବ ।

ମଧୁର ବ୍ୟଗ୍ରତା ଦେଖି, ଘନ ଅଜା କହିଲେ, ଆରେ ଏମିତି ଉଛନ୍ନ ହେଲେ ଚଳିବ କେମିତି । ଅଜା ହସ ହସ ମୁହଁରେ କହିଲେ, ମୋ ଆଖିରେ ଜଣେ ଦିଶୁଛି । ହଁ, ସେ ମଙ୍ଗିବ କି ନାହିଁ ମୁଁ ସେ କଥା କହି ପାରିବି ନାହିଁ ।

ଏତକ କଥା ଶୁଣିବା କ୍ଷଣି ସମସ୍ତ ଆଖି ବିସ୍ଫୋରିତ ହୋଇଗଲା । ସମସ୍ତେ ଅଜାଙ୍କ ପାଖକୁ ଲାଗି ଆସିଲେ । ଉତ୍କଂଠାରେ ସେମାନଙ୍କ ମନ ବ୍ୟାକୁଳ ହେଲା କିଏ ସେ ? ଉତ୍ତାଳ ସମୁଦ୍ର ବକ୍ଷରେ କୂଳ କିନାର ନପାଇ ନାବିକ ଯେପରି ଆଶଙ୍କାରେ ତା ନାଚିକୁ ବାହି ଚାଲିଥାଏ । ସେତେବେଳେ ଅଜଣା ଭୟରେ ମନ ତାର ଶଙ୍କି ଯାଇଥାଏ । ଯେତେବେଳେ ଇତସ୍ତତ ନାଁ । ବାହି ଥଳକୂଳ ଅପ୍ରତ୍ୟାଶିତ ଭାବେ ମିଳିଯାଏ, ସେତେବେଳେ ତା ମନର ଆନନ୍ଦ ଦମ୍ଭ କହିଲେ ନ ସରେ । ହୃଦୟ ତାର ଆନନ୍ଦରେ ନାଚି ଉଠୁଥାଏ । ଠିକ୍ ସେହିପରି, ଅଜାଙ୍କଠୁ ଶୁଣିଲା ପରେ, ସମସ୍ତେ ତାଙ୍କ ମୁହଁକୁ ଚାହିଁ ରହିଥାନ୍ତି ଆଶାର ଆଲୋକ ବର୍ତ୍ତିକା ସଦୃଶ ।

ଘନ ଅଜା ପାକୁଳା ପାଟିକୁ ଟିକିଏ ପାକୁଳେଇ କହିଲେ ଆମ ଗାଁରେ ତ ସେଭଳି ଝିଅ କିଏ ନାହିଁ ? ନିଜ ଚିବୁକରେ ହାତ ରଖି ମୁଣ୍ଡ ହଲାଇ ସମସ୍ତଙ୍କୁ ଅନାଇ ନେଉଥାନ୍ତି । ଅଧୈର୍ଯ୍ୟ ହୋଇ ମଧୁ କହିଲା, ସେଇଥିପାଇଁ ପର ତୁମକ ପଚାରୁଛୁ ? ତୁମେ ଆଉ ଅଧିକା ଆମକୁ କଣ ବତାଇଲ ?

ଆରେ ଆମ ଗାଁରେ ନଥିଲେ କଣ ହେଲା ଆମ ପାଖ ଗାଁରେ ତ ଅଛି । ତମେ ମାନେ ଏପରି ଅଧୈର୍ଯ୍ୟ ହେଲେ ଚଳିବ କେମିତି ? ଅଜା ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ ।

ତପନ ମନରେ ଉତ୍କଂଠା ବଢ଼ି ବଢ଼ି ଚାଲିଥାଏ ।

ସେ ଅଜାଙ୍କ ଅତି ନିକଟକୁ ଚାଲିଆସି କହିଲା, ସେଇଥି ପାଇଁ ପରା ତୁମକୁ ବାଟ ବତାଇବା ପାଇଁ କହୁଛୁଁ ।

ସେମାନଙ୍କ ଉତ୍କଂଠାକୁ ବେଶୀ ବଢ଼ିବାକୁ ନ ଦେଇ ଅଜା କହିବାକୁ ଆରମ୍ଭକଲେ ସମସ୍ତେ ନିରବ ନିସ୍ତବଧ ହୋଇ ଅଜାଙ୍କ ପାକୁଳା ମୁହଁକୁ ଅନାଇ ରହିଥାନ୍ତି ।

ଆମ ପାଖଗାଁ କେନ୍ଦୁପାଟି । ନଈତଟ । ଆମ ବଡ଼ ନଦୀ ତେଲନଦୀ । ତା ପାଖ ଆମ୍ବତୋଟା । ତାର ଡାହାଣ ପଟକୁ ଛୋଟ ବଡ଼ ଘରମିଶି ପଲ୍ଲୀଗାଁ ।

ସେଇ ଗାଁର ଝିଅ । ନା ତାର 'କନକ' ।

ନାଁଟି ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅଜାଙ୍କ ମୁହଁକୁ ଅନାଇ ରହିଲେ । କା ମୁହଁରୁ କଥା ଫୁଟିଲା ନାହିଁ ।

କିଛି କ୍ଷଣପରେ ମଧୁ, ନବ ହାରିକା ଏକା ସାଙ୍ଗରେ କହି ଉଠିଲେ,'ଅଜା ତୁମେ ଏତେ କଥା ଜାଣିଛ ଅଥଚ ଆମକୁ ଲୁଚଉଛ । କାଲି ଆମେ ତାଙ୍କ ଗାଁକୁ ଯାଇ କଥା ହୋଇ ଠିକ୍‌କରି ଆସିବା ।

କନକ ନାଁ ଶୁଣି ତପନ ଆଶ୍ଚର୍ଯ୍ୟ ହୋଇ ତା ଅଜା ମୁହଁକୁ ଚାହିଁ ରହିଲା । ସେ ଭଲ ଭାବରେ ଜାଣେ କନକର ଅଳ୍ପଦିନ ତଳେ ବାହା ହେବାପାଇଁ ସବୁ ଠିକ୍ ହୋଇଯାଇଥିଲା କଣ ହେଲା କେଜାଣି ବାହା ହେବାପାଇଁ ସେ ଖେକଠୋକ୍ ମନା କରିଦେଲା । ତେଣୁ ଗାଁ ଲୋକ ତା ଉପରେ ନାରାଜ ।

ଏ ସମସ୍ତ ଖବର ତପନ ତା ସାଙ୍ଗ ମାନଙ୍କଠୁ ଶୁଣିଛି ।

ଯେଉଁ ଦିନଠୁଁ ସେ ତାର ବାହାଘର ଖବର ଶୁଣିଛି, ସେହି ଦିନଠୁଁ ତା ମନରେ ତା ପ୍ରତି ରାଗ, ଘୃଣା ଆସିଯାଇଛି । ମାତ୍ର ଯେଉଁଦିନ ଜାଣିଲା, ତାର ଅନିଚ୍ଛା ସତ୍ତ୍ୱେ ତାକୁ ଜଣକ ସହ ବାହା କରିଦେବା ପାଇଁ ଯୋର ଯବରଦସ୍ତି କରାଯାଉଥିଲା । ମାତ୍ର ସେ ସ୍ପଷ୍ଟ ମନା କରିଦେବା ଫଳରେ, ତାର ସାହାସ ପଣକୁ ତପନ ମନେ ମନେ ପ୍ରଶଂସା ନ କରି ରହିପାରିଲା ନାହିଁ ।

ସେହି ଦିନଠୁଁ ତା ପ୍ରତି ଅନୁକଂପା, ସହାନୁଭୂତି ଦେଖାଦେଇଛି । ମନେ ମନେ ଅନେକଥର ଚିନ୍ତା କରିଛି ତାକୁ ଥରେ ଯାଇ ଦେଖିଆସିବ । ଭଲ ମନ୍ଦକଥା ହୋଇ ଫେରି

ଆସିବ । ମଣିଷର ଦୁଃଖ ସମୟରେ ମଣିଷ ପାଖରେ ପହଂଚିଲେ, କଥା ଦୁଇପଦହେଲେ ଦୁଃଖ ଲାଘବ ହୋଇଥାଏ । ଗାଁର ଟାହି, ଟାପରାରେ କନକ ମନ ଆଜି ଅସ୍ଥିର ହୋଇ ପଡୁଥିବ ।

ଯିବାପାଇଁ ମନ ଛଟପଟ ହେଉଥାଏ । ମାତ୍ର କେଉଁ ଅଜଣା ଆଶଙ୍କାରେ ମନ ଦବି ଯାଉଥାଏ । କିଏ କଣ କହିବ ? ସେ ତାର କିଏ ? କେତେ ଲୋକ କେତେକଥା କହିବେ । ପିଲାଦିନର ସାଙ୍ଗ । ଏବେ ସେମାନେ ବଡ଼ ହୋଇ ଗଲେଣି । ତାଙ୍କ ଘରକୁ ,ଆଗପରି ଗଲେ ଲୋକେ କଣ ଭାବିବେ ? ବିତି ଯାଇଥିବା ଅତୀତ ଏକ ଦୁଃସ୍ୱପ୍ନଭଳି ତା ମନକୁ କେତେ ଘାଣ୍ଟି ଚକଟି ହା ହତାଶ କରି ଦେଉଛି । ତାକୁ ଭୁଲିବାକୁ ଚେଷ୍ଟାକରି ମଧ୍ୟ ମନରୁ ପାଶୋରି ପାରୁନାହିଁ । ତପନର ଆଜି ଗୋଟି ଗୋଟି ସବୁ ମନେ ପଡ଼ ଯାଉଛୁ । ପିଲାଦିନର କଥା । ଧୂଳି ଖେଳିବା ବେଳର କଥା । ମିଛିମିଛିକା ବର କନିଆ କଥା ।ପିଲା ଦିନର ଖେଳ, ପିଲାଦିନର ସପନ ବାସ୍ତବ ଜୀବନରେ କେବେ ସମ୍ଭବପର ହୋଇନଥାଏ

ବୟସ ବଢ଼ିବା ସଙ୍ଗେ ସଙ୍ଗେ ତପନ ମନରେ ତା ପ୍ରତି ଏକ ମମତା ସ୍ନେହ, ସତ କହିବାକୁ ଗଲେ, ପୁରୁଷର ନାରୀ ପ୍ରତି ଯେଉଁ ଆବେଗ ତାରି ମନରେ ଦେଖାଦେଇ ଥିଲା । ତାକୁ ଦେଖିଲେ ତା ହୃଦୟରେ ଚମକ ସୃଷ୍ଟି ହୁଏ, ମନ ଆନନ୍ଦରେ ନାଚିଉଠେ । ଖୁସିରେ ମନ ଚହଲି ଉଠେ ।

ଏ ଖୁସି ଲାଗିବା କଣ ? ମନର ମନର ମିଳନ । ମନ ଯେଉଁଠି ଏକାକାର ହୋଇ ଯାଏ, ସେଠି ସ୍ନେହ, ପ୍ରୀତି ଅଧିକ ଦେଖାଦେଇ ମନରେ ଆନନ୍ଦ ସୃଷ୍ଟି କରିଥାଏ ।

ଦିନ, ସମୟ ଗଡ଼ ଯାଇଛି । କନକ ବଡ ହୋଇଛୁ । ଦେହର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗରେ ଯୌବନ ଫୁଟି ଉଠିଛୁ । ମନରେ କେତେ ତରଙ୍ଗ ଢେଉ ଚହଲି ଯାଇଛି ।

ଖରା ଛୁଟିରେ ଗାଁକୁ ଆସିଲେ ସେହି ତେଲନଈ କୂଳକୁ ସେ ତାର ସାଙ୍ଗ ମେଳ-ରେ କେତେଥର ଯାଇଛୁ । ସେହି ଆମ୍ବତୋଟାରୁ କେତେ ଆମ୍ବ ପାରିଛୁ । ଟେକାମାରି, ଲବଡ଼ ମାରି ଆମ୍ବ ଝାଡ଼ିଛୁ । ନିଜେ ଖାଇଛୁ, ସାଙ୍ଗସାଥୀଙ୍କୁ ଖୁଆଇଛୁ । ସେତେବେଳେ ସେ କନକକୁ ଭେଟିଛୁ । ଆଖିରେ ଆଖି ମିଶିଛୁ । ମନର ଅକୁହାକଥା ଆଖିରେ କହିଛୁ । ତାଠୁ ଉତ୍ତର ମଧ୍ୟ ସେହି ଆଖିରେ ପାଇଛି ।

ସେହି ସ୍ମୃତି ସବୁ ଆଜି ଗୋଟି ଗୋଟି ମନେପଡ଼ ଯାଉଛୁ । ମନତାର ଉଦାସହୋଇ ଉଠୁଛି । ଆକାଶରେ କଳାମେଘ ଉଠି ଅଘନକ ବର୍ଷା, ଝଡ଼ ଆସି ସାଇତି ରଖିଥିବା ଗଛଲତା, ଘରଦ୍ୱାର ଭାଙ୍ଗି ମୁହୂର୍ତ୍ତକେ ସବୁ ଚୂରମାର କରି ଦଳାଭଳି ତା ମନର ସଚିତ

ଆଶା ଏକା ଦିନରେ ବୁଢ଼ୀମାର୍ ଦ୍ୱୋଇ ଯାଇଛି । ହଠାତ୍ ଖବର ପାଇଲା କନକ ବାହା ହେବାପାଇଁ ଯୋଗାଡ଼ ଚାଲିଛି । ତାର କିଛି ଦିନ ପରେ ଜାଣିବାକୁ ପାଇଲା, ନା ସେ ମନା କରିଦେଇଛି ।

ଆକାଶର କଳା ମେଘ ଘୁଞ୍ଚି ଯାଇଛି ।

ସେହି କନକ ନା ଆଉ କିଏ ? ଅଜା କ'ଣ ତା' ମନକଥା ଜାଣି ତାକୁ ପରିକ୍ଷିବା ପାଇଁ କନକ ନାଁ ତା' ଆଗରେ ଥୋଉଛନ୍ତି ? କନକର ନାଁ ଶୁଣି ତା ହୃଦୟର କୋମଳ ସ୍ଥାନରେ ଏକ ମୃଦୁ ଆଘାତ କଲାଭଳି ତାକୁ ମନେ ହେଉଛି । ସେ କିଆଁ ଆମ ଗାଁକୁ ଆସି ଏ ଦାର୍ଯ୍ୟିଦ୍ର ମୁଣ୍ଡାଇବ ? ଘରେ ତାର ବୁଢ଼ୀ ମା ତା କଥା କିଏ ବୁଝିବ ?

ନା ଏହା କେବେ ସମ୍ଭବ ନୁହେଁ ।

ଅଜଣାତ୍ ତା ପାଟିରୁ ବାହାରି ପଡ଼ିଲା-ନା ।

ମନ ତାର ଉତ୍ତେଜିତ ହୋଇ ଯାଇଥାଏ । ନିଶ୍ୱାସ ଯୋରରେ ବୋହୁଥାଏ । ମୁହଁ ତାର ଲାଲ ପଡ଼ିଯାଇଥାଏ । ଏଣେ ତାର ସାଙ୍ଗମାନେ ଆନନ୍ଦରେ ପାଟି କରୁଥାନ୍ତି । ତାଙ୍କର ଏତେବଡ଼ ସମସ୍ୟାକୁ ଅଜା ସମାଧାନ କରିଦେଇ ପାରିଛନ୍ତି ବୋଲି । ଅଜାଙ୍କୁ କେତେ ପ୍ରଶଂସା କରୁଥାନ୍ତି । ଆନନ୍ଦ କୋଳାହଳ ମଧ୍ୟେ ତପନର ଉତ୍ତେଜିତ ନାଁ ଶବ୍ଦ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଲା ।

ମଧୁ ବିସ୍ମିତ ହୋଇ ତାର ବନ୍ଧୁକୁ ଏଭଳି ଗମ୍ଭୀର ହୋଇ ବସିଥିବା ଦେଖି ତା' ଦେହକୁ ହଲାଇ ଦେଇ କହିଲା । ସବୁ ଠିକ ହେଲାବେଳକୁ ତମେ କ'ଣ କହୁଛ ନାଁ ।

କ'ଣ ନାଁ, କଥା କଅଣ ?

ଘନ ଅଜା ବିସ୍ମିତ ହୋଇ ତପନକୁ ଅନାଇ ରହିଥାଆନ୍ତି । ତପନ ନିଜକୁ ସଂଯତ କରିନେଇ ସମସ୍ତଙ୍କୁ ଅନାଇଲା, ସମସ୍ତେ ତାକୁ ଆଶ୍ଚର୍ଯ୍ୟ ନୟନରେ ଅନାଇ ରହିଥାନ୍ତି । ସେ ନିଜର ଭୁଲ ବୁଝିପାରି ନମ୍ର କଂଠରେ କହିଲା-

ଅଜା ଯେଉଁ କହିଲେ କନକ କଥା, କେଉଁ କନକ ? ତା ମନରେ ବିରାଟ ପ୍ରଶ୍ନ ଦେଖା ଦେଇଥାଏ । ଉଦ୍‌ଗ୍ରୀବ ହୋଇ ସ୍ପଷ୍ଟ ଜାଣିବାକୁ ଚେଷ୍ଟା କରୁଥାଏ । ତାର ଆପଣାର କନକ ନା ଆଉ କିଏ ?

ଆଉ କେଉଁ କନକ ?

କେଂଦୁପାଟି କନକ କହିଲେ ଗୋଟିଏ କନକ । ଏକା ଗାଁଉଁଳରେ ଗଢ଼ା କନକ । ଅଭାଗୀ କନକ । ବାପ ଛେଉଣ୍ଡ କନକ । ତାର ହୀନ କପାଳକୁ ଆଜି ତାର ଏଇ ଦଶା ।

ଅଜା ତପନର ମୁହଁକୁ ଚାହିଁ ଗମ୍ଭୀର ହୋଇ କହିଲେ । ମୁଁ ତାକୁ ଭଲରେ ଚିହ୍ନିଛି ଜାଣିଛି । ଯେଉଁ କଥା ନାହିଁ କରିଦେବ ନା । ଯେତେ ମନାଇଲେ ଶିଖାଇଲେ ମଧ୍ୟ ସେ ମାନିବା ଭଳି ଝିଅ ନୁହେଁ । ତାର ମନ, ବିବେକ ବିରୁଦ୍ଧରେ ତାକୁ କେହି ଯୋର ଯବରଦସ୍ତି ବାହା କରାଇ ପାରିବେ ନାହିଁ । ଗରୀବ ହେଲେ ମଧ୍ୟ ତାର ଆତ୍ମ ମର୍ଯ୍ୟାଦା ଅଛି । ହୃଦୟର ସହ ହୃଦୟର ମେଳ ନ ହେଲେ ବାହା କେବେ ହୁଏ ନାହିଁ । ଅଜା ଟିକିଏ ଗୁମ୍‌ମାରି କହିଲେ । ଛାଡ଼ ଆମକୁ ସେଥିରେ କ'ଣ ମିଳିବ ?

ଅଜାଙ୍କ କଥା ଶୁଣି ମଧୁ ଉତ୍ତେଜିତ ହୋଇ କହିଲା– ଏତ ବଡ଼ ଅନ୍ୟାୟ ?

ନ୍ୟାୟ, ଅନ୍ୟାୟ କଥା ନୁହେଁ, ମଣିଷକୁ ମଣିଷ ଭଳି ବ୍ୟବହାର ଆଜି ଧନ, କ୍ଷମତା ବଳରେ ଲୋପ ପାଇ ଯାଉଛି । ନହେଲେ କନକ ଭଳି ଝିଅକୁ ରୋଗା ବୁଢ଼ା ସହ ବାହା କରିବା ଷଡ଼ଯନ୍ତ୍ର ଛଡ଼ା ଆଉ କିଛି ନୁହେଁ ? ସେ ଯେ ହେଉନା କାହିଁକି ?

ଅଜାଙ୍କ ମୁହଁ ଘୃଣାରେ ସେହି ଅଜଣା ବ୍ୟକ୍ତି ପ୍ରତି ନିକ୍ଷେପ ହେଲା । ସେହି ଜଣକ ମୋହନ ବାବୁ ଛଡ଼ା ଆଉ କିଏ ହୋଇପାରେ ? ପରିବେଶକୁ ଟିକିଏ ହାଲ୍‌କା କରିବା ପାଇଁ ଘନ ଅଜା ସମସ୍ତଙ୍କୁ ବୁଝାଇ କହିଲେ, ତମେ ସବୁ ଯାଇ କନକ ଏବଂ ତା ମା' ବୁଢ଼ୀକୁ କହି ସବୁ ଠିକ୍ ଠାକ୍ କରି ଆସ । ସେ ଦାୟିତ୍ୱ ନେଲେ ତୁମର ଆଉ କେଉଁ କଥାରେ ଅସୁବିଧା ରହିବ ନାହିଁ । କାମିକା ସାହସୀ ଝିଅ କନକ । ଅଜାଙ୍କ ମୁହଁରୁ ଏତକ ଶୁଣି ସମସ୍ତଙ୍କ ମନ ଆନନ୍ଦରେ ପୁଲକିତ ହୋଇ ଉଠିଲା ।

ତପନ ମନରୁ ସବୁ ସଂଶୟ ଦୂର ହୋଇଛି । ତାରି ମୁହଁ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲା । କନକ ପ୍ରତି ତା ମନରେ ସମବେଦନା ଦେଖାଦେଇଛି । ଅକାରଣରେ କନକ ପ୍ରତି ରାଗ ଆସିଯାଇଥିଲା । ଆଜି ଅଜାଙ୍କ ଠୁଁ ଶୁଣିଲା ପରେ ତା ମନର କଳୁଶ ଭାବନା ଦୂର ହୋଇଛି । ଅସହାୟ ନାରୀକୁ ପୁରୁଷ ତାର କ୍ରୀଡ଼ନକ କରିବାକୁ କୁଣ୍ଠାବୋଧ କରେ ନାହିଁ । କନକ ସେଭଳି ଝିଅ ନୁହେଁ ଆଜି ସେ ତାହା ପ୍ରମାଣିତ କରିଦେଇଛି ।

ତପନ ମନରେ ବ୍ୟଗ୍ରତା ଦେଖାଦେଲା । ସେ ଥରେ ତାକୁ ଦେଖିବା ପାଇଁ ବ୍ୟାକୁଳ ହୋଇଉଠିଲା ।

ଗମ୍ଭୀର ହୋଇ, ପାଟି ପାକୁଳେଇ ଘନ ଅଜା ଗାମୁଛାକୁ ଦୁଇଗୋଡ଼ ଅଂଠୁରେ ଛନ୍ଦ ବସିଥାନ୍ତି ।

ତପନ ତାଙ୍କ ଦେହରେ ହାତ ସ୍ପର୍ଶକରି କହିଲା, ଅଜା ତମେ ଆମ ପାଖରେ ଖାଲି ପ୍ରସ୍ତାବ ଦେଇଦେଲେ ହେବ ନାହିଁ । ତମେ ଆମ ମୁରବୀ ହିସାବରେ ଆମ ସହିତ ଯାଇ

କଥା ପକ୍‌କା କରିବାକୁ ପଡ଼ିବ । ଖାଲି ଆମେ ଟୋକା ସବୁ ଗଲେ ହେବ ନାହିଁ । ଆମ ସହିତ ତୁମେ ନିଜେ ଯାଇ, ମାଉସୀଙ୍କୁ ବୁଝାଇ ସବୁ ଠିକ୍ କରି ଆସିବାକୁ ହେବ । ତପନ ଏତକ ସିନା କହିଦେଲା । ମାତ୍ର ତା ମନରେ ବହୁ ପ୍ରଶ୍ନ ଦେଖା ଦେଲା । ମନ ଆଶଙ୍କାରେ ସଂଶୟ ହୋଇ ଉଠିଲା । ଏତେ ଦିନ ହେଲା, ସେ କନକକୁ ଦେଖି ନାହିଁ । ହଠାତ୍ ତା ପାଖକୁ ଗୋଟିଏ କାମ ବାହାନାରେ ସାକ୍ଷାତ କରିବାକୁ ଯିବା ତାକୁ ଲଜ୍ୟା ସଙ୍କୋଚ ମାଡ଼ି ଆସିଲା । ସେ ତାର ମନକୁ ବାରମ୍ବାର ପ୍ରଶ୍ନ କଲା, କିପରି ତାକୁ ସାକ୍ଷାତ କରିବ ? କଣ ସେ ଭାବିବ ? ହଠାତ୍ ତାକୁ ଦେଖାକଲେ ତା ମନରେ କିଭଳି ଭାବ ସୃଷ୍ଟି ହେବ । ସେ ତା ସହିତ କଥା ମଧ୍ୟ ହୋଇ ନପାରେ ? ଏଭଳି ବିଭିନ୍ନ ପ୍ରଶ୍ନ ତା ମନରେ ଦେଖା ଦେଇଥାଏ ।

ତପନର କଥାରେ ସମ୍ମତି ପ୍ରଦାନ କରି, ଏକା ସାଙ୍ଗରେ ସମସ୍ତେ କହି ଦେଲେ, ହଁ ଅଜା ତମେ ଆଗ ବାହାରିଲେ ଆମେ ସବୁ ତମ ପଛେ ପଛେ ଯିବୁଁ ।

ଧନ ଅଜା ଦେଖିଲେ ଟୋକାମାନେ ତାଙ୍କୁ ଛାଡ଼ବେ ନାହିଁ । ସେ ମୁହଁରେ ହସ ଖେଳାଇ କହିଲେ, ସବୁଥିରେ ମୋତେ ଭିଡ଼ଲେ ମୁଁ ବୁଢ଼ା ଆଉ କେତେ ଆଡ଼େ ହେବି ।

ନବ ହସି ହସି କହିଲା, ଅଜା ତୁମେ କେଉଁଠୁ ବୁଢ଼ା ହୋଇଛ । ଯୁଆନ୍ ଟୋକା ପରି ଦିଶୁଛ । ଖାଲି ମୁଣ୍ଡର ବାଳ ସିନା ଧଳା ହୋଇଯାଇଛି ।

ଟୋକାଙ୍କ ଭିତରୁ ଜଣେ କହି ଉଠିଲା ।

ବୃଦ୍ଧ ନୁହଇ ସେ ଶୁକ୍ଳ କେଶ ଯା'ର ।

ସମସ୍ତେ ହସି ଦେଲେ ।

ଦେଖିଲ ଅଜା ତୁମକୁ କିଏ ବୁଢ଼ା କହିବ । ମଧୁ ହସି ହସି କହିଲା ।

ହେଲା, ହେଲା ତୁମକୁ ଆଉ ପାରି ହେବ ନାହିଁ । ତୁମେ ଟୋକା ଗୁଡ଼କ ମିଶି ମୋତେ ଟୋକା କରି ଦେଲଣି ।

ସମସ୍ତେ ଏକ ସାଙ୍ଗରେ ପାଟି କରି ଉଠିଲେ 'ଅଜାଙ୍କ ଜୟ ହେଉ' ।

ଜୟ ଶବ୍ଦରେ ଗାଁ ଦାଣ୍ଡ କମ୍ପି ଉଠିଲା ।

କନକ ନିଜର ରୂପକୁ ଦର୍ପଣରେ ଦେଖି ଚମକି ପଡ଼ିଲା । ଦୁଃଖରେ ଦୁଇ ହାତ ମୁହଁରେ ଢାଙ୍କି ତଳେ ବସି ପଡ଼ିଲା । ଅନେକ ଦିନ ପରେ ଆଜି ସେ ଦର୍ପଣରେ ତାର ମୁହଁ ଦେଖୁଛି । ମୁଣ୍ଡବାଳ କୁଣ୍ଡାଇବ ବୋଲି ହାତରେ ପାନିଆ ଧରିଛି । ମୁହଁ ଶୁଖି କଳା ପଡ଼ଯାଇଛି । ଆଖି ତଳ ପଟା କଳାଦାଗ ସ୍ପଷ୍ଟ ବାରି ହେଉଛି । ମୁହଁ ମଳିନ ପଡ଼ଯାଇଛି । ସତେ ଯେପରି ଏକ ଝାଉଁଳା ଲତା ଭଳି ସମଗ୍ର ଶରୀର ଝାଉଁଳି ଯାଇଛି । କନକ ନିଜକୁ ନିଜେ ବିଶ୍ୱାସ କରି ପାରିଲା ନାହିଁ । ଏଇ କେତେ ଦିନ ଭିତରେ ତାର ଏକି ପରିବର୍ତ୍ତନ ?

ଦର୍ପଣରେ ତାର ନିଜ ପ୍ରତିବିମ୍ବ ତାକୁ କ୍ରସ୍ତ କରି ପକାଇଲା । ଆଜକୁ ଅନେକ ଘଡି ହେବ ତାକୁ ନିଦ ଭଲ କରି ହେଉନାହିଁ । ମନରେ କେତେ ଦୁଃଶ୍ଚିନ୍ତା ଭରି ଯାଇଛି । ସଦାବେଳେ ମନମାରି ବସି ରହିଛି । ଗାଧୁଆ ତୁଠରୁ ଫେରିବା ବେଳେ ବଉଳ ତାକୁ କହୁଥିଲା । ତାର ସୁନା ଚେହେରା ଆଜି ମଳିନ ପଡ଼ଯାଇଛି । ତାର ସଦା ହସ ହସ ମୁହଁରେ ସରସ ଟିକିଏ ଲିଭି ଯାଇଛି । ବଉଳକୁ ସେ କିଛି ଉତ୍ତର ଦେଇ ପାରି ନଥିଲା । ବଉଳ ସହିତ ଗାଧୁଆ ତୁଠରୁ ଆସିଲା ବେଳେ କେତେ କଥା ଜାଣି ପାରିଲା । ତାର କେତେ ସାଙ୍ଗ ସାଥୀ ଏ ଭିତରେ ବାହା ହୋଇ ଘର ସଂସାର କଲେଣି । କିଏ ଶାଶୁ ଘରକୁ ଯାଇ, ମା ଘରକୁ ପୁଣି ଆସି ଦୁଇ ଚାରି ଦିନ ରହି ସ୍ୱାମୀ ସହିତ ଫେରି ଗଲେଣି । ହେଇ କାଲି ପରି ଲାଗୁଛି ପାଖ ପଡ଼ଶା ଗାଁର ସପନି ନାନୀ କାଖରେ ପୁଅଟିଏ ଧରି ମା ଘରକୁ ଆସିଥିଲା । କନ କନିଆ ପୁଅ । କେତେ ସୁନ୍ଦର ଦିଶୁଥିଲା । ଠିକ୍ ତା ମା' ଭଳି ତା ଚେହେରା ହୋଇଥିଲା । କମଳିନୀ ତାର ଗେରସ୍ତ ସହ ଆସି ଗାଁ ଦାଣ୍ଡରେ ହସି ହସି ଚାଲି ଯାଉଥିଲା । ଗାଁ ଟୋକାମାନଙ୍କୁ ଦାନ୍ତ ଦେଖାଇ ଖଟେଇ ହେଉଥିଲା ।

ଏଇନେବି ତାର ପିଲାଳିଆ ଢଙ୍ଗ ଯାଇନି ବୋଲି ବଉଳ ହସି ହସି ଗଡ଼ ଯାଉଥିଲା । ସବୁ ଝିଅ ଶାଶୁ ଘରରୁ ମା ଘରକୁ ଆସିଲେ ଝିଅ ହୋଇଯାଆନ୍ତି । ବୋହୂ ପଣିଆ କେବଳ ଶାଶୁଘରେ ଶୋଭପାଏ ।

ଏତେ କଥା ଶୁଣି ଶୁଣି କନକ ମନରେ କୋହ ଜାତ ହୋଇଥିଲା । ସେ ମଧ୍ୟ କେତେ ଆଶା କରିଥିଲା । ତାର ବାହାଘର ହେବ । ତାର ମନଲାଖି ବର ଆସି ତା ହାତ ଧରିବ ।

ବ୍ରାହ୍ମଣର ମନ୍ତ୍ର ଉଚ୍ଚାରଣରେ ତାର ମନ, ହୃଦୟ ଶୁଦ୍ଧ ପୂତ ହୋଇଉଠିବ । ତାର ତନୁରେ ଶୀହରଣ ସୃଷ୍ଟି ହେବ । ଏମିତି କେତେ କଣ ଭବି ଚାଲିଥାଏ, ବିବାହର ସ୍ୱପ୍ନ ଦେଖୁ ଦେଖୁ ସ୍ୱପ୍ନ ସରିବା ଆଗରୁ ସବୁ ଓଲଟ ପାଲଟ ହୋଇଯାଇଛୁ । ମହାଜନର କୁଚକ୍ରାନ୍ତର ଶିକାର ହେବାକୁ ଦେଇନାହିଁ । ମନରେ ସାହାସ ସଂଚୟ କରିଛି । ଯା ପାଖରେ ତୁଣ୍ଡ ଖେଲିବାକୁ ସାହାସ ହେଉ ନଥିଲା, ତାଙ୍କୁ ରେକ୍ ଠୋକ୍ ମନା କରି ଦେଇପାରିଛି । ନା' ସେ ବାହା ହେବ ନାହିଁ । ପଦଟିଏ ମାତ୍ର । ସେହି ପଦଟିଏ ଶୁଣି ସମସ୍ତେ ତଟସ୍ଥ ହୋଇଯାଇଛନ୍ତି । ମନରେ ଆସିଛି ଏକ ଶୂନ୍ୟତା ।

ଆଜି ସେ ସମସ୍ତ ନିର୍ଯ୍ୟାତନା, ସମସ୍ତ ପ୍ରତାରଣା, ସମସ୍ତ ଦୁଃଖଠାରୁ ସେ ବହୁ ଦୂରରେ । ଆଜି ସେ ଖୋଲା ଆକାଶର ମୁକ୍ତ ବିହଙ୍ଗ ସଦୃଶ ।

ତା ମନରେ ଦେଖା ଦେଇଥିବା କେତେ ଆଶା କେତେ ଆକାଂକ୍ଷାକୁ ସାଉଁଟି ନେଇ ବୋହୂ ହେବାର କଳ୍ପନା, ଆଜି ତାର ପିଲା ଦିନର ମିଛି ମିଛିକା ବାହା ହେବାର କଳ୍ପନା ସଙ୍ଗେ ମେଳି ଯାଇଛି । ସେ ଦିନର ସ୍ୱପ୍ନ ଏବଂ ଆଜିର ବାସ୍ତବତା ମଧ୍ୟରେ କେତେ ବିରାଟ ଅନ୍ତରାୟ ସୃଷ୍ଟି ହୋଇଯାଇଛି ।

ଭଲ ପାଇବାର ଆଶା, ସ୍ନେହ ମମତାର ଆକାଂକ୍ଷା ସାଂସାରିକ ଜୀବନର ମୂଳଦୁଆ ଦେଇ ଗତି କରିବାର ପରିକଳ୍ପନା ସବୁ ନଈ ବାଲିରେ ତିଆରି ଧୂଳିଘର ଭଳି ସାମାନ୍ୟ ପବନରେ ମିଳେଇ ଯାଇଛି ।

ମନରେ ଆଜି ଆସିଛି ଏକ ଶୂନ୍ୟତା । ଆଗକୁ ତାର ବିରାଟ ଜୀବନ ପଡ଼ି ରହିଛି । ସମୟ ସମୟରେ ତା ମନରେ ଦେଖା ଦେଉଛି ରାଗ, ହିଂସା, କ୍ରୋଧ । କିନ୍ତୁ ସେ କାହା ପ୍ରତି ? ସେ କଣ ତାର ପ୍ରତିଶୋଧ ନେଇ ପାରିବ ? ସେ ଶକ୍ତି ତାର ନାହିଁ । ମନର ରାଗ ମନରେ ଉଠି କେବଳ ବିଳୀନ ହୋଇଯାଉଛି । ତହ ମଧ୍ୟ ଅସହାୟତାରେ ଛଟ ପଟ ହୋଇ ଥଳ କୂଳ ନପାଇ ହାହତାଶ ହୋଇ ନୀରବ ଅଶ୍ରୁ ବର୍ଷନ କରି ଭାଗ୍ୟକୁ ନିନ୍ଦ ଚାଲିଛି ।

ତାର ବଉଳର ନୀରବ ବିଷର୍ଣ୍ଣ ମୁହଁକୁ ଅନାଇ ପ୍ରଭାତୀ କହିଲା, 'ବଉଳ ଆଉ ଗୋଟିଏ କଥା ତୁମକୁ କହି ନାହିଁ । ଜାଣିଲେ ତମ ମନରେ କଷ୍ଟ ହେବ ବୋଲି କହୁନାହିଁ । କନକ ତା ବଉଳର ସଦ୍ୟ ଫୁଲ୍ଲ ସଦୃଶ ସତେଜ ମୁହଁକୁ ଥରେ ଅନାଇ କହିଲା କହୁନ ବଉଳ, ସବୁ କଥା ଆଜି ଶୁଣିବି । ମନରେ ଆଉ କଷ୍ଟ କଣ ? ଏ ପୋଡ଼ା ମୁହଁରେ, ଲାଜ, ଶରମ, କଷ୍ଟ ସବୁ ପୋଡ଼ି ଜଳି ପାଉଁଶ ହୋଇଯାଇଛି । କେତେ ଦିନପରେ ତୁମକୁ ଭେଟିଛୁ । ଆଜି ସବୁ କଥା ତୁମଠୁଁ ଶୁଣିବି । ମୋତେ ଆଉ କିଛି ଲୁଚାଅନା ବଉଳ ।

କନକ ଅନୁନୟ ହୋଇ କହିଲା ।

ପ୍ରଭାତୀ ତାର ବଉଳ ମନରେ ବ୍ୟଗ୍ରତା, ଉତ୍କଂଠା ବେଶ୍ ବୁଝି ପାରିଲା ।

ବଉଳ ଲେ,

ପାଖ ଗାଁର ତପନର ବାପା ସାରଙ୍କ କୁଡା ଅବେଳରେ ଚଳି ପଡ଼ିଲା । ପୁଅ ତାର ଶ୍ରାଦ୍ଧ କ୍ରିୟା କଲା । କନକ ନିଜକୁ ନିଜେ ବିଶ୍ୱାସ କରି ପାରିଲା ନାହିଁ । ଏଇ କେଇ ଦିନ ଭିତରେ କେତେ କଥା ଘଟିଗଲା । ସେ କିଛି ଜାଣି ପାରିଲାନାହିଁ ? ସୂର୍ଯ୍ୟ ପୂର୍ବ ଦିଗରେ ଉଦୟ ହୋଇ ପଶ୍ଚିମ ଦିଗରେ ଅସ୍ତ ହେବା ଭିତରେ କେତେ କଥା ଘଟି ଯାଉଛି । ସେ କିଛି ବୁଝି ପାରିଲା ନାହିଁ । ସମୟର ସୁଅ କେତେ ପ୍ରଖର । ତାର ଥଳ କୂଳ ପାଇବା କେତେ କଷ୍ଟକର । ସତେ ଏ ଦୁନିଆ କେତେ ବିଚିତ୍ର ।

ତାର ପିଲା ଦିନର କଥା ଗୋଟି ଗୋଟି ମନେ ପଡ଼ ଯାଉଛି ।

ତପନ ସହିତ ଖେଳିବା, ତା ସହିତ ବସି ଗପ କରିବା । ଅମ୍ବ ଗଛ, ପିଜୁଳି ଗଛ ଚଢ଼ି, ଆମ୍ବ ପିଜୁଳି ତୋଳିବା । ନଈ ବାଲିରେ ଘଣ୍ଟା ଘଣ୍ଟା ଦୌଡ଼ିବା, ସବୁ ଆଜି ଗୋଟି ଗୋଟି ମନେ ପଡ଼ ଯାଉଛି ।

ପଛ କଥା ଭାବି ହେତୁ କଲେ ମନରେ କେତେ ଦୁଃଖ ଲାଗୁଛି । ସବୁ ସତେ ସପନ ଭଳି ଲାଗୁଛି । ସେହି ପିଲା ଦିନର ସାଥୀ ତପନ ଭାଇର ବାପା ମରି ଯାଇଛି । ଅଥଚ ସେ ଜାଣି ପାରିଲା ନାହିଁ ?

ନିଜକୁ ନିଜେ ଧିକ୍କାରିଲା ! ତା ମନରେ ପରିବର୍ତ୍ତନ ଦେଖାଦେଲା ।

ହଁ, ଜାଣିଲେ ଅବା ସେ କଣ କରିପାରିଥାନ୍ତା ?

ତା ପାଖକୁ କ'ଣ ଦୌଡ଼ି ଯାଇ ପାରିଥାନ୍ତା ?

ତାକୁ କ'ଣ ଶାନ୍ତ୍ୱନା ଦେଇ ପାରିଥାନ୍ତା ?

ମନ କେବଳ ହାଇଁ ପାଇଁ ହେଉଛି ସିନା ।

ତାର ଅଜଣାତରେ ତାର ହୃଦୟରେ କୋହ ଜାତ ହେଲା । ତାର ଚକ୍ଷୁ ଯୁଗଳ ଅଶ୍ରୁସିକ୍ତ ହୋଇ ଉଠିଲା । ଚିନ୍ତିତ ବିଷାଦ ଗ୍ରସ୍ତ ମନରେ କେତେ ଭାବନା ତାର ଆଜି ଖେଳି ଯାଇଛି ।

ବଉଳ ତାର କେତେବେଳୁ ତା ଘରକୁ ଚାଲି ଗଲାଣି । କନକ ନିର୍ବାକ୍ ନିସ୍ତବ୍ଧ ଭାବରେ ଦାଣ୍ଡ କବାଟକୁ ଧରି ଛିଡ଼ା ହୋଇଛି ।

ଖୁସୀ କନକ ଆଜି କ୍ଷଣକାୟ ହୋଇ ଯାଇଛି । ସେ ଆଜି ମଳିନ ପଡଯାଇଛି । ଧୀରେ ଧୀରେ ସେ ନିଃଶେଷ ହୋଇ ଯାଉଛି । ସେ ଆଜି ଆହତ, କ୍ଷତ ବିକ୍ଷତ । ମନକୁ ସେ ଯେତେ ଶାନ୍ତ୍ୱନା ଦେବାକୁ ଚେଷ୍ଟା କରୁଛି ସେ ଦେଇପାରୁ ନାହିଁ ।

ନାରୀ କଣ ଆଜି ପୁରୁଷର କ୍ରୀଡ଼ନକ ? ତାର ଅସହାୟତାର ସୁଯୋଗ ନେଇ ମୋହନ ବାବୁ ନିଜକୁ ଜଣେ ପରୋପକାରୀ ବୋଲି ଦେଖାଇ ହେବା ପାଇଁ ଏକ ଛଳନା ବାହାଘର କରଇ ଦେବା ପାଇଁ ସବୁ ଯୋଗାଡ଼ କରିଦେଇ ସାରିଥିଲେ । ଏ କଥା ଭବି ଭବି ତା ମନର ଶାନ୍ତ ନାହିଁ ?

ମନକୁ ସେ ଯେତେ ଶାନ୍ତ୍ୱନା ଦେବାପାଇଁ ଚେଷ୍ଟା କରୁଛି ସେ ଦେଇପାରୁ ନାହିଁ ।

ଘରେ ତାର ବୁଢ଼ୀମା ।

ଆଖିକୁ ଭଲ ଦିଶୁ ନାହିଁ । କାନକୁ ମଧ୍ୟ ସେତେ ଭଲ ଶୁଭୁ ନାହିଁ । ତାକୁ ସେବା ଶୁଶ୍ରୁଷା କରି ବଞ୍ଚାଇବା ଦାୟିତ୍ୱ ତାର । ଦୁଃଖିନୀ ନିରିମାଖି ଜୀବନ ମଧ୍ୟରେ ମଧ୍ୟ ସେ ଆଜି ବଂଚିବାକୁ ହେବ । ଭଇ ନାହିଁ, ବାପା ନାହିଁ, ସେହି ଆଜି ତାର ମା'ର ଆଶା ଭରସା । ତା ନିଜ ମା' ପାଇଁ ସେ ଆଜି ବଂଚିବ । ମଣିଷ ଭଳି ମଣିଷ ଭବରେ ତାକୁ ବଂଚିବାକୁ ହେବ । ତା ବିନା ତାର ବୁଢ଼ୀମା କ୍ଷଣକେ ବଂଚିବା ସମ୍ଭବ ନୁହେଁ । ତାକୁ ଦୁଇଓଳି ଗଣ୍ଡ ତୋରଣି ମହାଏ ଦେବାକୁ ହେବ ।

ନିଜ ମନକୁ ବୁଝାଇବା ପାଇଁ ଚେଷ୍ଟା କଲା । ସଦା ମନକୁ ଦୁଃଖ କରି ଘାଣ୍ଟି ହେଲେ ଲାଭ କଣ ? ମନକୁ ସମ୍ଭାଳିବାକୁ ହେବ । ତାର ଆଉ କିଏ ଅଛି ? ମନକୁ ମନ ବୁଝାଇବାକୁ ସେ ଚେଷ୍ଟା କଲ । ଆଖିରେ ଅଶ୍ରୁ ଅବାରିତ ବୋହି ଚାଲିଲା । ତଥାପି ତାକୁ ତାର ବୁଢ଼ୀମା ପାଇଁ ବଂଚିରହିବାକୁ ହେବ ।

ଆଶା ନଥାଇ ମଣିଷ ବଂଚି ପାରେନା । ଆଶା ବିହୀନ ମଣିଷର ଜୀବନ ଦୁର୍ବିସହ ହୋଇ ଉଠିଥାଏ । ଆଶା ଆକାଂକ୍ଷାରେ ମଣିଷ ଆଗକୁ ବଢ଼ିବା ପାଇଁ ଏକ ଆଶ୍ୱାସନା । ତାହାହିଁ ଦଗ୍ଧିଭୂତ ପ୍ରାଣରେ ଶୀତଳତା ଆଣି ଦେଇଥାଏ ।

କନକ ଭବବିହ୍ୱଳ ହୋଇ ଦୂରକୁ ନିଃର୍ଲିପ୍ତ ନୟନରେ ଅନାଇ କେତେ କଣ ଭବି ଚାଲିଥାଏ ।

ପାଖ ବୃକ୍ଷ ଡ଼ାଳରୁ କାଣ୍ଡାଟିଏ ନିସ୍ତବ୍ଧା ଭଙ୍ଗ କରି ରାବି ଉଠୁଥାଏ । କିନ୍ତୁ କନକର ତନ୍ଦ୍ରା ଭଙ୍ଗ ହେଉ ନଥାଏ । ଶୂନ୍ୟ ମନରେ ଦୂର ପାହାଡ଼କୁ କେବଳ ଅନାଇ ରହିଥାଏ ।

ଘର ବାହାରେ କାହାର ଡାକ ଶୁଣି କନକ ଘର ଭିତରୁ ପଦାକୁ ଚାଲି ଆସିଲା । ବାହାରକୁ ଆସି ସେ ଯାହା ଦେଖିଲା ନିଜକୁ ନିଜେ ବିଶ୍ୱାସ କରି ପାରିଲା ନାହିଁ । ଯାହା କଥା ସେ ଏତେବେଳ ହେଲା ଚିନ୍ତା କରୁଥିଲା, ଯାହାକୁ ଟିକିଏ ଆଖି ପୂରାଇ ଦେଖିବ ବୋଲି ମନ ତାର ଛନ ଛନ ହେଉଥିଲା, ସେହି ତପନ ଭାଇ ଆସି ଦ୍ୱାର ମୁହଁରେ ଛିଡ଼ା ହୋଇଛନ୍ତି । ସାଙ୍ଗରେ ଘନ ଅଜା ଏବଂ ଅନ୍ୟମାନେ ।

ସ୍ୱପ୍ନ ଦେଖୁନାହିଁ ତ ?

ସେ ନୀରବରେ ଛିଡ଼ା ହୋଇଥିବା ଦେଖି, ଘନଅଜା ପାଖକୁ ଚାଲିଆସି ବା ମୁଣ୍ଡରେ ହାତ ବୁଲାଇ, ବୁଢା ପଚାରିଲା, କେମିତି ଅଛୁ ? ମା ବୁଢୀ ଭଲ ଅଛି ତ ?

କନକ ନିଜକୁ ସଜାଡ଼ି ନେଇ, ଏତେ ସମୟ ଧରି ସମସ୍ତଙ୍କୁ ଛିଡା ହୋଇଥିବା ଦେଖି ଅପ୍ରସ୍ତୁତ ହୋଇଗଲା । ଲଜ୍ଜିତ ହୋଇ ମୁଣ୍ଡ ନୁଆଁଇ ନମସ୍କାର କଲା । ମନ ତାର ଚଳ ଚଂଚଳ ହୋଇ ଉଠିଲା । ଘର ଭିତରକୁ ତରତର ହୋଇ ଚାଲିଯାଇ ଘରୁ ଖଜୁରି-ପଟି ଆଣି ପାରିଦେଇ ବସିବାକୁ କହିଲା ।

ତପନ ଛିଡ଼ାହୋଇ କନକକୁ ଚାହିଁ ରହିଥାଏ ।

ଏଇ ସେ କନକ ।

କେତେ ଦିନ, କେତେ ମାସ କେତେ ବର୍ଷ ପରେ ଦେଖୁଛି । ଯାହାକୁ ଦେଖିବ ଦେଖିବ ବୋଲି ମନ ତାର ଛଟପଟ ହେଉଥିଲା ପାଖରୁ ଦେଖି ମଧ୍ୟ ସେ ବିଶ୍ୱାସ କରି ପାରିଲା ନାହିଁ, ତାରି ଶୁଖିଲା ମୁହଁକୁ ଦେଖି । ଗଭୀର ବ୍ୟଥାରେ ମୁହଁଟି ତାର ଝାଉଁଳି ପଡ଼ିଛି । ଦେହର ଗଠନ କେତେ ପରିବର୍ତ୍ତନ ହୋଇ ଯାଇଛି । ତାର ସେହି ଛନଛନ ଆଖି ଯୋଡ଼କ ଆଜି ଶାନ୍ତ କମନୀୟ ଦେଖାଯାଉଛି । ମନର ସେ ଦିନର ଚଞ୍ଚଳତା ପରି-ବର୍ତ୍ତେ ମୁହଁ ଗମ୍ଭୀର ହୋଇ ଯାଇଛି । ତାର ଗୋରା ଦେହ ଏ ଭିତରେ କେତେ ମଳିନ ହୋଇ ଯାଇଛି । ତପନର ମନରେ ଏକ ପ୍ରକାର କୋହ ଉଠିଆସିଲା । କନକ କାଛକୁ ଆଉ ଯେଇ ତାର ତପନ ଭାଇକୁ ଚାହିଁ ରହିଥାଏ ।

ତା ବାପା ମଲା ଖବର ଶୁଣିଲା ପରେ ତାକୁ ଟିକିଏ ଦେଖିବ ବୋଲି କେତେ ଭାବୁଥାଏ । ତା ଦୁଃଖରେ ସମଦୁଃଖୀ ହେବାପାଇଁ ମନ ତାର ଛଟପଟ ହେଉଥାଏ ।

ଆଜି ତାକୁ ପାଖରେ ଦେଖି, ତାକୁ କଣ ବୋଲି କହିବ, ତା ପାଟି ଓଠ ଦୁଇଟି ଥରି ଉଠୁଥାଏ । ତାକୁ ଛିଡ଼ା ହୋଇଥିବା ଦେଖି ମନର କୋହକୁ ଚପିରଖି ଥରିଲା କଂଠରେ କହିଲା ଭାଇ ବସ, ଛିଡ଼ା ହୋଇ ରହିଲ ଯେ ?

ସେ କୋହ ସମ୍ଭାଳି ପାରିଲା ନାହିଁ । ଆଖିରୁ ଦୁଇଧାର ଲୁହ ଝରି ଆସିଲା । ଅମାନିଆ ଲୁହ ଧାର ଧାର ଗଡ଼ି ଚାଲିଛି । ସେହି ପଦକ କଥାରେ ତପନର ବହୁଦିନର ସଂଚିତ ମାନ ଅଭିମାନ ଭୁଲି ତା ପ୍ରତି ସମବେଦନା ଜାତହେଲା । ତା ମନର ବେଦନା ଆତ୍ମପ୍ରକାଶ କଲା । ଆଖି ତାର ଛଳଛଳ ହୋଇ ଉଠିଲା । ଦୁଇ ହୃଦୟର ସଂଚିତ ବିଷାଦ ଆଖି ଲୁହରେ ଧୋଇ ହୋଇଗଲା । କୋହକୁ ଚପିରଖି ଥରିଲା କଂଠରେ କହିଲା, 'କନକ, ମାଉସୀକୁ ଡାକି ଦେଲୁନାହିଁ ?

ତପନଠୁ ଏହି ସ୍ନେହବୋଳା କନକ ଡାକ କେତେ ଦିନପରେ ଶୁଣିବାକୁ ପାଇଛି । ତାର ସ୍ନେହବୋଳା କଥା ପଦକ ଶୁଣି ତାର ହୃଦୟରେ ତରଙ୍ଗ ସୃଷ୍ଟି କରିଛି । ବହୁ ଦିନର ସ୍ମୃତି ଜାଗରିତ ହୋଇ ଉଠିଲା ।

ଏଇ ଘରକୁ ତପନ ଭାଇ କେତେଥର ଆସିଛନ୍ତି । କେତେ ହସ ଖୁସୀ ହୋଇଛନ୍ତି । ମା ସହିତ ବସି ଘଣ୍ଟା ଘଣ୍ଟା ଗପିଛନ୍ତି । ସେହି ତପନ ଭାଇ ମାକୁ ଡାକିବାକୁ କହୁଛନ୍ତି । ସେ ତାର ତପନ ଭାଇର ମୁହଁକୁ ଅନାଇ ବସ, ମୁଁ ଡ଼ାକି ଦେଉଛି ବୋଲି କହି, ଚଞ୍ଚଳ ଆଖିର ଲୁହ ପଣତକାନିରେ ପୋଛି ଘର ଭିତରକୁ ଚାଲିଗଲା, ଛୋଟ କୁଡ଼ିଆ ଘର । ଦୁଇ ବଖରା ଘର, ପାଖରେ ରନ୍ଧାଘର । ଛୋଟ ଅଗଣା । ଘର ବାରଣ୍ଡାରେ ବୁଢ଼ୀଶୋଇ ରହିଥାଏ ।

ଘର ଭିତରକୁ ଯାଇ କନକ ଚଳଚଞ୍ଚଳ ହୋଇ କହିଲା ମା', ମା ଗୋ, ତପନ ଭାଇ ଆସିଛନ୍ତି । ଆନନ୍ଦରେ ଗଦ୍‌ଗଦ୍ ହୋଇ ବୁଢ଼ୀକୁ ଉଠାଇଲା । ସାଙ୍ଗରେ ଘନଅଜା ଏବଂ ଅନ୍ୟମାନେ ଆସିଛନ୍ତି ।

ବୁଢ଼ୀ ତପନ ଆସିଥିବା ଖବର ଶୁଣି ପ୍ରଥମେ ଆଶ୍ଚର୍ଯ୍ୟ ହେଲା । ଶୋଇବା ଖଟରୁ ଉଠି, ଲୁଗାପଟା ସଜାଡ଼ି ଘରୁ ପାଟିକରି କରି ଆସିଲା ।

ଏତେ ଦିନକେ ତୋର ବୁଢ଼ୀ ମାଉସୀକୁ ଆଜି ମନେ ପଡ଼ିଲା । ସତେ ଆଜି ସୁରୁଜ ପୂରୁବ ଦିଗରେ ନଉଇଁ, ପଶ୍ଚିମ ଦିଗରେ ଉଇଁ ପଡ଼ିଲା ଲୋ ପୁଅ ।

ବୁଢୀର ଡାକ ଶୁଣି ତପନ ଭବନା ରାଜ୍ୟରୁ ଫେରି ଆସିଲା । ତରତର ହୋଇ ଘର ଭିତରକୁ ଚାଲିଯାଇ, ତାର ମାଉସୀର ପାଦ ଧୂଳିନେଇ ପ୍ରଣାମ କଲା । ଏତେ ଦିନପରେ ତାକୁ ଦେଖି ବୁଢ଼ୀର ଆଖି ଛଳଛଳ ହୋଇଗଲା ।

ପିଲାଟି ଦିନରୁ ଯେଉଁ ମାଉସୀ ଆଗରେ ଖେଳିକୁଦି ଦିନ ବିତାଉଥିଲା, ଆଜି ଅନେକ ଦିନପରେ ତାଙ୍କୁ ଭେଟି ତାର ପିଲା ଦିନର ସ୍ମୃତି ମନେ ପଡ଼ିଗଲା । ଆଖି ତାର ଛଳଛଳ ହୋଇଗଲା ସେହି ମାତୃ ପ୍ରତିମାକୁ ଦେଖି ।

ବୁଢୀ ତାକୁ ଆଶୀର୍ବାଦ କରି ତଳୁ ଉଠାଇ ଆଣିଲା । ତା ଘରର ସମସ୍ତ ହାଲ, ମା କଥା, ଭଉଣୀ କଥା ବୁଝି ସାନ୍ତ୍ୱନା ଦେଲା ।

ଘରର ମୁରବିଭଳି ଘର ସମ୍ଭାଳିବାକୁ ପଡ଼ିବ ? ବାପା କଥା ହେଜି ହେଜି ମନକୁ କଷ୍ଟଦେଲେ ଆଉ ଚଳିବ ନାହିଁ ପୁଅ । ଯାହାର ଯେତେବେଳେ ଡାକରା ଅସିବ ସେ ଯିବ । ତାକୁ କିଏ ଅଟକାଇ ପାରିବେ ନାହିଁ ।

ଏଇ ତ ଦୁନିଆ !!

ଯାହାର ଯେତେବେଳେ ସମୟ ହେବ ସେ ଚାଲିଯିବ । ତାହାରୁ ଥାଇ ଘନ ଅଜା ପାଟିକରି କହିଲେ, ଆମେସବୁ ତୁମ ଘରକୁ କୁଣିଆ ଆସିଛୁଁ ।

ତପନ ତାର ମାଉସୀକୁ ଧରି ବାହାରକୁ ଆସିଲା ।

କନକ ରନ୍ଧାଘରକୁ ଯାଇ ଚୁଲିରେ ଚାହା ତିଆରି କରିବାରେ ଲାଗିଗଲା ।

ବୁଢୀ ପଦାକୁ ଆସି, ମୋର ଆଜି କେଡ଼େ ଭାଗ୍ୟ । ମୋ ଘରକୁ କୁଣିଆ ଆସିଛନ୍ତି ଆନନ୍ଦରେ ଗଦଗଦ୍ ହୋଇ ଏତକ କହିଲା ।

ମଧୁ, ନବ ଆସି ବୁଢ଼ୀର ପାଦଛୁଇଁ ନମସ୍କାର କଲେ । ତପନ ସେମାନଙ୍କ ପରିଚୟ କରାଇଦେଲା ।

ତପନ ତ ମୋ ଘର ପୁଅ । ଆଗେ ଆମ ଘରକୁ କେତେ ଆସୁଥିଲା । ଏଇନେ ଆଉ ଆସିପାରୁ ନାହିଁ । ଆଜି ଆସିଛି । କେତେ ଖୁସୀ ଲାଗୁଛି ।

ଘନ ଅଜା ହସିହସି କହିଲେ, ତପନ ଆଉ ସେଇ ପିଲା ଅଛି ? ତା ମୁଣ୍ଡରେ କେତେ ଦାୟିତ୍ୱ ଆସିଯାଇଛି । ବାପ ମଲାପରେ ନିଜ ଘରକଥା । ମା, ଭଉଣୀ କଥା, ଗାଁ କଥା ସବୁ ସେ ବୁଝୁଛି । ଘରର, ଗାଁର ମୁରବିଭଳି ସବୁକାମ ଚଳାଇ ନେଉଛି । ବାପ ଥିଲେ, ତାକୁ ଏ ପିଲା ବୟସରେ ସାଙ୍ଗସାଥୀ ମେଳରେ ଖେଳିବୁଲି ଗପ କରିବା ବେଳ ।

ଏଇନେ ତାକୁ ଦାୟିତ୍ୱ ମୁଣ୍ଡାଇବାକୁ ପଡ଼ୁଛି ।

' ଭଗବାନ ତାକୁ କୋଟି ପରମାୟୁ ଦେଇଥାନ୍ତୁ ।'

ବୁଢ଼ୀ ତପନ ମୁଣ୍ଡରେ ଆଉଁସି ଏତକ ଅଦୃଶ୍ୟ ଭଗବାନକୁ ହାତଯୋଡ଼ କହିଲା ।

ଘନଅଜା ବୁଢ଼ୀର ସ୍ୱାସ୍ଥ୍ୟ , ଭଲ ମନ୍ଦ ଆଲୋଚନା କରି ସୁଖ, ଦୁଃଖ ସଂସାରରେ ମଦୁ ସହି ଚଳିବାକୁ ପଡ଼ିବ ବୋଲି କହି ଆଶ୍ୱାସନା ଦେଲେ ।

କଥାର ମୋଡ଼ ବଦଳାଇବା ପାଇଁ ମଧୁ ପାଖକୁ ଚାଲିଆସି କହିଲା ।

ମାଉସୀ ଆମେ ତୁମ ପାଖକୁ ଗୋଟିଏ ଜରୁରୀ କାମ ନେଇ ଆସିଛୁଁ ।

ବୁଢ଼ୀ ମଧୁ କଥା ଶୁଣି କିଛୁ ବୁଝି ପାରିଲା ନାହିଁ । ସମସ୍ତଙ୍କ ମୁହଁକୁ ବେଲ୍‌ବେଲ୍ କରି ଅନାଇ ରହିଲା । ଜରୁରୀ କାମ ଫେର ତା ପାଖରେ । କେବେ ନ ଶୁଣିଲା ଭଳି କଥାଟିଏ ଶୁଣି ବୁଢ଼ୀ ଆଶ୍ଚର୍ଯ୍ୟ ହୋଇ କହିଲା ।

ପୁଅ, ମୋ ପାଖରେ ଫେର, କି କାମ ?

ଏତେବେଳେ କନକ ଗୋଟିଏ ଥାଳିଆରେ ଚାରିଗ୍ଲାସ ଚାହାଆଣି ସେମାନଙ୍କ ପାଖକୁ ଚାଲି ଆସିଲା ।

ଘନଅଜା, ଗରମ ବାଷ୍ପ ଉଠୁଥିବା ଚାହା ଦେଖି କନକକୁ କହିଲେ, ଭଲକଲୁ ମା ଚାହାପାଣି ଟିକିଏ ଦରକାର ଥିଲା । ଏ ବୁଢ଼ା ବୟସରେ ଚାହା ଟିକିଏ ହେଲେ ମନଫୁର୍ତ୍ତି ହୁଏ । ଅଜା ଘରେ କ୍ଷୀର ନଥିଲା କ୍ଷୀର ବଦଳରେ ଲେମ୍ବୁ ପକାଇ ଚାହା କରିଛି । କନକ ହସି ହସି ଅଜାଙ୍କୁ କହିଲା ।

ସେ ଭଲକରି ଜାଣେ ତପନ ଲେମ୍ବୁ ଚାହା ପିଇବାରେ ବେଶୀ ଆଗ୍ରହୀ ।

ତପନ ଥରେ କନକ ମୁହଁକୁ ଚାହିଁଲା ।

ଦୁହିଁଙ୍କ ଚାରି ଚକ୍ଷୁର ମିଳନ ହେଲା । କନକର ମୁହଁରେ ହସ ଚହଟି ଆସିଲା ।

ଆଖିରେ ଆଖି ମଧ୍ୟରେ କେତେ କଥା ଭାସି ଆସିଲା ।

ବହୁ ଦିନର ମଧୁର ସ୍ମୃତି ମନରେ ଚହଟି ଆସିଲା ।

ତପନ ବୁଝିଲା ତାକୁ ଖୁସୀ କରିବା ପାଇଁ ତା ମନଲାଖି ଲେମ୍ବୁ ଚାହା ସେ ନିଜେ ତିଆରୀ କରି ଆଣିଛୁ ।

ଘନ ଅଜା ଚାହା ପିଉପିଉ ଖୁସୀରେ କହିଲେ, କେତେ ସୁଆଦ ଲାଗୁଛୁ ଲୋ ମା । କ୍ଷୀର ଚାହାଠୁ ଲେମ୍ବୁ ଚାହା ସ୍ୱାସ୍ଥ୍ୟ ପକ୍ଷରେ ହିତକାରକ ।

ନବ, ମଧୁ, ଚାହା ପିଉପିଉ କହିଲେ, ସତେ ଅଜା ଲେମ୍ବୁ ଚାହା ଭାରି ବଢ଼ିଆ ହୋଇଛୁ ।

ମଧୁ ଚାହା ପିଉ ପିଉ ତା ମାଉସୀକୁ କହିଲା ।

ଆମ ଗାଁରେ ଯୁବକ ସଂଘ ଜରିଆରେ ଗାଁର ବହୁତ କାମ କରାଯାଉଛି । ଗାଁରେ ଗୋଟିଏ ପାଠାଗାର ଖୋଲା ଯାଇଅଛି । ପିଲା, ଟୋକା, ବୁଢ଼ାମାନେ ଆସି ପାଠାଗାର-ରେ ବସି ବହି ପଢ଼ୁଛନ୍ତି । ଖବର କାଗଜ ଜରିଆରେ ଦେଶ ବିଦେଶର ଖବର ପଢ଼ି ଜାଣୁଛନ୍ତି । ରେଡ଼ିଓ ଲାଗିଛି । ଖବର ଶୁଣୁଛନ୍ତି । ଗୀତ ଶୁଣୁଛନ୍ତି । ଚାଷର ହାଲଚାଲ ଜାଣୁଛନ୍ତି । ଗାଁ ଦାଣ୍ଡ ତିଆରି କରିବାରେ ଯୁବକ ସଂଘର ଯୁବକମାନେ ଅଣ୍ଟାଭିଡ଼ କାମ-ରେ ଲାଗି ଯାଇଛନ୍ତି । ଗାଁ ରାସ୍ତା, ପାଖ ଗାଁର ରାସ୍ତା ତିଆରି କରୁଛନ୍ତି । ଏଭଳି କେତେ କାମ ଚାଲିଛି ।

ଖାଲି ମହିଳା ସମିତି କାମ ଆଗେଇ ପାରୁନାହିଁ ।

ବୁଢ଼ୀ ବିସ୍ମିତ ହୋଇ କହିଲା । କଅଣ ସରକାର ଆଉ ରାସ୍ତା ତିଆରି କରୁନାହାନ୍ତି!!!

ବୁଝିଲ ମାଉସୀ ସରକାର ତ ଅନେକ କାମ କରୁଛନ୍ତି । ଯାହା ବାକୀ ରହି ଯାଉଛି ଗାଁ ଯୁବକମାନେ ଏକାଠି ହୋଇ ଅନେକ କାମ ଉଠାଇ ଦେଉଛନ୍ତି ।

ମଧୁ ଏତକ କହି ବୁଢ଼ୀକୁ ଅନାଇଲା ।

ବୁଢ଼ୀ ଏସବୁ କଥା କିଛି ବୁଝି ପାରିଲା ନାହିଁ ।

ପାଖରେ କନକ ଛିଡ଼ା ହୋଇ ସବୁ ଶୁଣୁଥାଏ ।

ତପନ ଚାହା ପିଇ ଗ୍ଲାସକୁ ଅନ୍ୟମାନଙ୍କଠୁଁ ଆଣି ଏକାଠି ରଖୁଥାଏ । ତପନ ହାତରୁ ଗ୍ଲାସ ସବୁ ନେଇ କନକ ଗ୍ଲାସ ଉପରେ ଗ୍ଲାସରଖି ହାତରେ ଧରି ଛିଡ଼ା ହୋଇ ଥାଏ ।

ଅଢ଼ା ପାଟିରେ ପାନ ଖଣ୍ଡିଏ ପକାଇ ଫୂର୍ତ୍ତି ମନରେ ଥରେ ସମସ୍ତଙ୍କୁ ଦେଖିନେଇ ଅସଲ କଥାଟି କହିବାକୁ ଆରମ୍ଭ କଲେ ।

ବୁଝିଲ ନା କନକ ମା?, ଆମେ ସବୁ ବୂଢ଼ାବୂଢ଼ୀ ଲୋକ । ପୁରୁଣା କାଳିଆ ।

ଟୋକାମାନେ ମୋତେ ଭିଡ଼ ଆଣିଲେ ତୁମ ସହ କଥାହେବା ପାଇଁ । ଆମ ଗାଁରେ ମହିଳା ସମିତି ଗଠନ କରିବା ପାଇଁ ସ୍ଥିର ହୋଇଛି । ଖାଲି ଆମ ଗାଁ ନୁହେଁ, ତୁମ ଗାଁ, ପାଖ ପଡ଼ଶା ଗାଁ, ସମସ୍ତ ମହିଳା ମାନଙ୍କ ଉନ୍ନତି ପାଇଁ ଗଢ଼ା ଯାଇଛି । ସେଥିରେ ବର୍ତ୍ତମାନ ପଚାଶ ଜଣ ମହିଳାଙ୍କୁ ପାଠ ପଢ଼ାଯିବ । ଶିଲାଇ କାମ ଶିଖାଯିବ । ଘରସଫା ସୁତୁରା ରଖିବା କାମ ଶିଖାଯିବ । ପୁଅଝିଅଙ୍କୁ କିପରି ରୋଗ ନହେବ, ପରିଷ୍କାର ପରିଚ୍ଛନ୍ନ ରଖାଯିବ ତାର ତାଲିମ ଦିଆଯିବ । ସ୍ତ୍ରୀ ଲୋକମାନେ କିପରି ଘରକାମ ସରିଲା ପରେ ଅଧିକା ଉପାର୍ଜନ କରି ଘରଖର୍ଚ୍ଚ ଚଳାଇବେ, ଦୁଇ ପଇସା ସଞ୍ଚୟ କରି ଅସମୟରେ ତାକୁ ଖର୍ଚ୍ଚ କରିବେ । ଏଭଳି କେତେ ମଙ୍ଗଳକର କାମ କରିବା ପାଇଁ ସ୍ଥିର ହୋଇଛି । ସ୍ତ୍ରୀ ଲୋକମାନଙ୍କୁ ଶିକ୍ଷା ଦେବାପାଇଁ ଜଣେ ସ୍ତ୍ରୀ ଲୋକ ଦରକାର ।

କନକ ବିସ୍ମୟ ହୋଇ କଥା ଶୁଣୁଥାଏ । ବୁଢୀ ନୀରବରେ ବସି କଥାର ମର୍ମ ବୁଝି ନପାରି ସମସ୍ତଙ୍କ ମୁହଁକୁ ଅନାଇ ରହିଥାଏ । ଘନଅଢା ପୁଣିଥରେ ସମସ୍ତଙ୍କୁ ଲକ୍ଷ୍ୟ ନେଇ କହିଲେ ।

ଆଜି ଗାଁରେ ସମସ୍ତେ ଏକାଠି ହୋଇ ବିଚାର କରି ସ୍ଥିରକଲେ, ହଁ, ମୁଁ ନିଜେ ପିଲାଙ୍କୁ ପ୍ରସ୍ତାବ ଦେଲି । ଏଭଳି ଏକ ଦାୟିତ୍ୱ ବହନ କରିବା ପାଇଁ ଆମ ଏ ପାଖ ଆଖ ଗାଁରେ ଜଣେ ଝିଅ ମୋତେ ଦିଶୁଛି । ତାକୁ ମଧ୍ୟ ମୁଁ ପିଲାଟି ଦିନରୁ ଜାଣିଛି ।କାମିକା ଝିଅ । ପାଠ ବି ଅଧିକ ପଢିଛି । ସେ ମଙ୍ଗିଲେ ହେଲା । ସେହି ଝିଅଟି ହେଉଛୁ 'କନକ'। କନକ ବିସ୍ମିତ ହୋଇ ସମସ୍ତଙ୍କୁ ଅନାଇ ରହିଲା । ତା ନାଁ ଶୁଣି ଛାତି ତାର ଧଡ଼୍‌ଧଡ଼୍ ହେଲା । ଏତେ ଝିଅ ଥାଉଁଥାଉଁ ତା ନା'ଟି ଆଜି କାହିଁକି ସ୍ଥିର ହୋଇଛି ?

ସେ କିଛି ବୁଝିପାରିଲା ନାହିଁ । ଖାଲି ବଲ୍‌ବଲ ହୋଇ ସମସ୍ତଙ୍କୁ ଅନାଇ ରହିଲା ।

ବୁଢୀ ଆଶ୍ଚର୍ଯ୍ୟ ହୋଇ କହିଲା । ଯୁବା ଝିଅ ଦୂର ଗାଁକୁ ଯାଇ କଣ କରିବ ? କିଏ ତା କଥା ଶୁଣିବ ? ସେ କିଆଁ ଏତେ କଥାରେ ଦାୟିତ୍ୱ ନେବ ? କିଏ କେତେ କଥା କହିବେ !!!

ସେ ଗଲେ ମୁଁ ବୁଢୀ ଏକୁଟିଆ କ'ଣ କରିବି ? ମୋତେ ଭାତ ଗଣ୍ଡାଏ କିଏ ରାନ୍ଧି ଦେବ ?

ମଧୁ ଆଗ୍ରହ ଦେଖାଇ କହିଲା । ମାଉସୀ ତୁମେ କିଛି ଚିନ୍ତା କରନାହିଁ । ଆମେ, ତମର ଏତେ ପୁଅ ଥାଉଁଥାଉଁ ତୁମର କିଛି ଅସୁବିଧା ହେବନାହିଁ । ଆମେ ସେଠି ଘର ଠିକ୍‌କରି ସାରିଛୁଁ । ସେଠି ତୁମେ ରହିବ । ତୁମର ଖିଆପିଆର କିଛି ଅସୁବିଧା ହେବ ନାହିଁ ।

ମଧୁ ପାଖକୁ ଆସି କହିଲା ।

ମାଉସୀ ଯୁଗ ବଦଳିଛି । ନୂଆ ଆଲୁଅ ଦେଖିବା ପାଇଁ ଲୋକେ ଅନାଇ ରହିଛନ୍ତି । କନକ ନାନୀ ଏ ଦାୟିତ୍ୱ ନେଲେ, କେତେ ମା', ଭଉଣୀଙ୍କୁ ସେ ବାଟ ବତାଇବେ । ବଂଚିବା ପାଇଁ ନୂଆ ରାସ୍ତା ଦେଖାଇବେ ।

ଆମେ କେତେ ଆଶା ନେଇ ଆସିଛୁଁ । ମନରେ ବ୍ୟଗ୍ରତା ଫୁଟାଇ ଏତକ କହିଲା ।

ତପନ ନୀରବରେ ବସିଥାଏ କନକଠୁଁ କିଛି ଶୁଣିବ ବୋଲି । କନକ ଏଭଳି ପ୍ରସ୍ତାବରେ ବିସ୍ମିତ ହୋଇ ଯାଇଥାଏ, ସତେ କଣ ସେ ଏତେ ବଡ଼ ଦାୟିତ୍ୱ ତୁଲାଇ ପାରିବ ? ତାଠି କଣ ଏତେ ଶକ୍ତି ଅଛି, ସମସ୍ତଙ୍କୁ ଏକାଠି କରି ବାଟ ଦେଖାଇ ପାରିବ ? ନିଜକୁ ନିଜେ ସେ ବିଶ୍ୱାସ କରି ପାରୁ ନଥାଏ ।

ମଣିଷ ନିଜ ଶକ୍ତିକୁ ନିଜେ ଜାଣି ପାରେନା । ସମୟ ଏବଂ ମୁହୂର୍ତ୍ତର ଯୋଗସୂତ୍ରରେ ଅନ୍ତଃନିହିତ ଶକ୍ତିର ବିକାଶ ଘଟିଥାଏ ।

ହନୁମାନ ନିକଟି ଏତେଶକ୍ତି ଥିଲା ବୋଲି ଜାଣି ନଥିଲେ । ସେ ଆତ୍ମବିସ୍ମୃତି ହୋଇ ଯାଇଥିଲେ । ଭଗବାନ ରାମଚନ୍ଦ୍ରଙ୍କ ଦର୍ଶନ ପରେ, ତାଙ୍କ ପରାମର୍ଶରେ ସେ ନିଜ ଶକ୍ତିକୁ ଉପଲବ୍ଧି କରି ପାରିଥିଲେ ଏବଂ ସମାଜର ହିତପାଇଁ, ସାତ ସମୁଦ୍ର ତେର ନଈ ପାରହୋଇ ସୀତା ଠାବ କରି ଏକ ମହାନ କର୍ତ୍ତବ୍ୟ ସଂପନ୍ନ କରି ପାରିଥିଲେ ।

ଠିକ ସେଭଳି ଆଜି ସେହି ମୁହୂର୍ତ୍ତ ଆସି ପହଂଚିଛି । କନକ ନିଜର ଆତ୍ମଶକ୍ତିର ବିକାଶ ପାଇଁ ଏ ଏକ ସୁଯୋଗ ଆସିଛି । ସେ ଏ ସୁଯୋଗ ହାତଛଡ଼ା କରିବ ନାହିଁ । ସମସ୍ତଙ୍କର ମଙ୍ଗଳ ପାଇଁ ସେ ନିଜକୁ ଉତ୍ସର୍ଗ କରିବ । ସେ ଯେଉଁଠି ବାଟ ପାଇବ ନାହିଁ ତପନ ଭାଇ ତାକୁ ବାଟ ବତାଇ ଦେବେ । ଠିକ୍ ସମୟରେ ଠିକ୍ ପରାମର୍ଶ ଦେବେ । ତେବେବି ତା ମନରେ ସଂଶୟ ଦେଖା ଦେଉଥାଏ ।

ଘରୁ ସେ କେବେ ବାହାରକୁ ଯାଇନାହିଁ । ପାଞ୍ଚ ଲୋକଙ୍କ ସହ ମିଶି କଥା ହୋଇ ହୋଇନାହିଁ । ମାଇପିମାନେ କିଏ କେତେକଥା କହିବେ । ଟାହି ଟାପର କରିବେ ।ଲୋକ ହସା ହେବାଛଡ଼ା ଆଉ କିଛି ହେବନାହିଁ ।

ମନରେ ତାର ଭୟଯାତ ହେଲା । ଆତ୍ମବିଶ୍ୱାସ ହେଲନାହିଁ । ଆଖି ତାର ଲୁହରେ ଛଳଛଳ ହୋଇ ଆସିଲା ।

ପାଖରେ ତପନ ଭାଇ ବସି ତା ମୁହଁକୁ ଅନାଇ ରହିଛନ୍ତି । ସେ ପାଖରେ ଥିଲେ ମନରେ ଦମ୍ଭଆସେ ।

କେତେ ଆଶା ନେଇ ସେ ଆସିଛନ୍ତି ।

ତା ମନର ଦ୍ୱନ୍ଦ ଦୋଳାୟନ ଭିତରେ ସେ ଛାଣ୍ଟି ପାଲଟି ଯାଇଥାଏ ।

ବେଙ୍ଗସାପାଲି ଗାଁକୁ ଯାଇ ମହିଳା ସମିତିର ଦାୟିତ୍ୱ ନେବାକୁ ପଡ଼ିବ । ସେହି ଗାଁକୁ ଯିବାପାଇଁ ତା ମନ କେତେ ଛଟପଟ ହେଉଥିଲା । ଆଜି ଅଯାଚକ ତାକୁ ସେଠି ରହିବା ପାଇଁ ପ୍ରସ୍ତାବ ଆସି ପହଂଚିଛି ।

ମନ ତାର ବ୍ୟାକୁଳ ହେଲା ।

ସେଇଠି, ଦିନ, ମାସ, ବର୍ଷବର୍ଷ ଧରି ରହିବା ପାଇଁ ଦିନେ ତାର ମନ ବ୍ୟାକୁଳ ଥିଲା ।

ମାତ୍ର ଆଜି ସବୁ ତାକୁ ସାତ ସପନ ଭଳି ମନେ ହେଉଛି ।

ସେ କିଛୁ ଭବି ପାରିଲା ନାହିଁ ।

ତା ମନରେ ନାନା ପ୍ରଶ୍ନ, ନାନା ଦ୍ୱନ୍ଦ ଦେଖାଦେଲା ।

ସେ ମନା କରିଦେବ ?

କାହିଁକି ଯିବ ?

କଣ ସେଥିରୁ ମିଳିବ ? କାହା ପାଇଁ ସେ ଏତେ କାମ କରିବ ? କି ଆଶା ନେଇ ସେ ଗାଁକୁ ଯିବ ?

ମନାକରି ଦେବ କି ??

ନା, ନା, ସେ ମନାକରି ପାରିବ ନାହିଁ ।

ସେ ମନାକଲେ ତପନ ଭଇ ମନରେ କଷ୍ଟହେବ ।

ସେ କେତେ ଆଶାନେଇ, ତା ଘରକୁ ଦୌଡି ଆସିଛନ୍ତ । ତାଠୁଁ ହଁ ପଦଟିଏ ଶୁଣିବା ପାଇଁ ବ୍ୟାକୁଳ ହୋଇ ତା ମୁହଁକୁ ଅନାଇ ରହିଛନ୍ତ ।

ନଗଲେ ସେ କଣ ଭବିବେ ?

ଏଭଳି ବିଭିନ୍ନ ପ୍ରଶ୍ନ ତା ମନରେ ଦେଖାଦେଲା ।

ସେ କିଛି ସ୍ଥିର କରିପାରିଲା ନାହିଁ ।

କନକଠୁ କିଛି ଉତ୍ତର ପାଇବ ବୋଲି ତପନ ତା ମୁହଁକୁ ଚାହିଁ ରହିଥାଏ ।

କନକ ନୀରବ ନିଶ୍ଚଳ ଭବରେ କାନ୍ଥକୁ ଆଉଯାଇ ଛିଡ଼ାହୋଇ ରହିଥାଏ ।

ଏଇ ସେ ତାର ତପନ ଭଇ । ପିଲାଦିନର ସାଙ୍ଗସାଥୀ, ବନ୍ଧୁ, ସଖା । ତା ଠୁଁ ଉତ୍ତର ପାଇବା ପାଇଁ ତାରି ମୁହଁକୁ କେତେ ଆଗ୍ରହରେ ଅନାଇ ରହିଛନ୍ତ ।

ତପନ ତାକୁ ଏଭଳି ଅନାଇ ରହିଥିବା ଦେଖି ତାର କାନ ମୂଳ ଲଜ୍ଜାରେ ଲାଲପଡ଼ିଗଲା । ତାର ଦୃଷ୍ଟି ଅନ୍ୟ ଆଡ଼କୁ ବୁଲାଇ ଆଣିଲା ।

କଣ କହିବ ?

କଣ ଉତ୍ତର ଦେବ ?

ସେ କଣ ମୋ ମନକଥା ଜାଣୁନାହାନ୍ତ । ପିଲାଟି ଦିନରୁ ପର ସେ ମୋତେ ଜାଣିଛନ୍ତ ?

ଏ ଘରେ ମୋର ବୁଢ଼ୀମା ।

ତାର ସୁଖ ଦୁଃଖ ଭବିଷ୍ୟତ ମୋ ସହିତ ଯୋଡାହୋଇ ରହିଛି । ତାକୁ ଦଣ୍ଡେ ଛାଡ଼ କେଉଁଠିକୁ ଯିବାର ମୋର ନାହିଁ । ଗଲେ ତାର କେତେ ଅସୁବିଧା ହେବ ?

ଦିନେ ତ ଫେରି ସେ ଘର ଛାଡି ଚାଲି ଯାଇଥାନ୍ତା ।

ତାକୁ ତ ଦିନେ ଏଘର ଛାଡିବାକୁ ପଡ଼ିଥାନ୍ତା । ସେ ତ ସବୁଦିନ ଏ ଘରେ ରହି ପାରିବ ନାହିଁ । ତାକୁ ତ ଫେରି ଘର ସଂସାର କରିବାକୁ ପଡିବ ।

ସବୁ ତାର ଆଶା, ଗତିର ଦୁଃସ୍ୱପ୍ନ ଭଳି ଆଜି କେଉଁ ଅନ୍ଧକାର ଗହ୍ୱର ଭିତରେ ଲୁଚି ଛପି ଯାଇଛି ।

ତପନ ଭଇର ତା ପ୍ରତି ବିଶ୍ୱାସ ନଥିଲେ ସେ ଅବା ଆସିଥାନ୍ତେ କାହିଁକି ?

ତା ଉପରେ ଭରସା ରଖି , କେତେ ବଡ଼ ଭରସା, ଯାହା ସେ ଦିନେ ଭାବିନଥିଲା, ନୂଆ କାମଟିଏ, ନୂଆ ଦାୟିତ୍ୱ ଦେବାପାଇଁ ସେ ଆସିଛନ୍ତି ।

ଆଖିରେ କେତେ ଅନୁନୟ ଭରାଣୀ ।

ତାକୁ ସେ ଏଡ଼େଇ ଦେଇ ପାରିବ ?

ନା !!!

ତାଙ୍କ ବାପ ମଲା ଦିନଠୁ ସେ ଘର ସମ୍ଭାଳୁଛନ୍ତି ।

ପାଅଖଣ୍ଡ ଗାଁର ଉପକାର କରିବା ପାଇଁ ସେ ଅଣ୍ଟାଭିଡ଼ି ବାହାରି ପଡିଛନ୍ତି । ଲୋକଙ୍କୁ ନୂଆବାଟ ଦେଖାଇଛନ୍ତି ।

ତେବେ ସେ କିଆଁ , ତାଙ୍କୁ ସାହାଯ୍ୟ କରିବ ନାହିଁ ?

ଲୋକେ, କିଏ କଣ କହିବେ ? ?

କେତେ ଚାହିଁ ଟାପରା କରିବେ ।

କା ତୁଣ୍ଡକୁ କିଏ କଣ ବାଡବତା ଦେଇ ପାରିବ ?

ଆପେ ଭଲ ତ ଦୁନିଆ ଭଲ ।

କୁହନ୍ତୁ, ସେଥିରେ ତାର ଯାଏଆସେ କେତେ ?

ଏମିତି କେତେ କଣ କନକ ଭାବି ଚାଲିଛି ।

ବୁଢୀ ନୀରବତା ଭାଙ୍ଗି କହିଲା ।

ହଁ ବାପ, ମୋର ମନା କରିବାର କିଛିନାହିଁ ।

ଯୁଗ ବଦଳିଛି । ତୁମେ ସବୁ ନୂଆ ନୂଆ କାମ କରିବାକୁ ବାହାରିଛ ।

ମୁଁ ମନା କରିବି କିଆଁ ?

ମୁଁ ତ ମଶାଣିକୁ ଯିବାପାଇଁ ବାଟ କାଢିଛି ।

ଝିଅକୁ ପଚାର । ସେ ଠିକ୍ ଯାହା ଭାବୁଛି ତାହା କରୁ ।

ତପନ ମୋ ଘର ପୁଅ ।

ସେ ଯେତେବେଳେ ଆସିଛି, ତମେ ସବୁ ଆସିଛ, ମୁଁ ଅମଙ୍ଗ ହେବି କାହିଁକି ?

ମା'ଠୁ ଏତକ ଶୁଣିଲା ପରେ ବିସ୍ମୟ ଏବଂ ପୁଲକରେ କନକ ତାର ମାଉ ଶାନ୍ତ କମନୀୟ ମୁହଁକୁ ଅନାଇ ରହିଲା ।

ନୀରବରେ କିଛିକ୍ଷଣ ଅତିବାହିତ ହେଲାପରେ କନକ, ତପନ ମୁହଁକୁ ଚାହିଁ କହିଲା ଭାଇ ତୁମେ ଯାହା ଠିକ୍ ଭାବିଛ ମୁଁ ସେଥିରେ ଅରାଜି ହେବା କିଛିନାହିଁ ।

ତମେ ତ ସବୁ ଦେଖିଲ, ଶୁଣିଲ । ତମେ ଯାହା ଠିକ୍ ମନେ କରୁଛ ମୋର ସେଥିରେ ସମ୍ମତି ।

ତପନର ମୁହଁ ଆନନ୍ଦରେ ପୁଲକିତ ହୋଇଗଲା । ଆଖି ଯୋଡ଼କ ଚହଲିଗଲା । ଓଠ ଦୁଇଟି ଥରିଉଠିଲା । ମନରେ ଆନନ୍ଦର ଲହରୀ ଖେଳିଗଲା । ଦେହରେ ସୃଷ୍ଟି ହେଲା ପୁଲକ । ମୁହଁରେ ଦେଖାଦେଲା ଆନନ୍ଦର ତରଙ୍ଗ । ଚାହାଣୀରେ ଅପୂର୍ବ ଉଲ୍ଲାସ । ଭାବନାରେ ଖେଳିଗଲା ନବ ତରଙ୍ଗ ।

ଆନନ୍ଦ ପୁଲକରେ କନକ ଆଖି ଛଳଛଳ ହୋଇ ଉଠିଲା । ତପନ ଭାଇ ତା ମୁହଁକୁ ଏଭଳି ଆନନ୍ଦରେ ଅନାଇ ରହିଥିବା ଦେଖି ମନ ତାର ହାଲକା ହୋଇଗଲା । ତାର ମାନ ସମ୍ମାନ ଆଜି ସେ ଅର୍ପଣ କରି ଦେଇଛି ତପନ ଭାଇ ପାଖରେ ।

ତପନର ଦେହରେ ପୁଲକ ସୃଷ୍ଟି କରିଛୁ ସେହି ପଦେ କଥା । ଭାଇ ତୁମେ ଯାହା ଠିକ୍ ଭାବିଛ, ମୋର ସେଥିରେ ସମ୍ମତି ''।

ତା ପ୍ରତି କନକର କେତେ ବିଶ୍ୱାସ ।

କେତେ ଭରସା ରଖିଛୁ ।

ଏବେବି ସବୁ ଅତୁଟ ରହିଛୁ, ସବୁ ଦାୟିତ୍ୱ ତା ଉପରେ ସେ ଛାଡ଼ ଦେଇଛୁ ।

ତା ମନରେ ଦୃଢ଼ ବିଶ୍ୱାସ, ତାର ତପନ ଭାଇ କେବେ ତାକୁ ଭୁଲ ବାଟରେ ନେବେନାହିଁ ।

ତାର ଛଳଚଳ କଳା ଭଅଁର ଆଖି ଯୋଡ଼କ ଆନନ୍ଦ ପୁଲକରେ ନାଚି ଉଠିଲା ।

ମା' କହୁଛନ୍ତ, ତୋର ଭାଗ୍ୟ ଲୋ ମା । ଜନମ ଦେଇଛୁ ବୋଲି ମୁଁ କଣ କରମ ଦେଇଛୁ ?

ତୋ ମୁହଁରେ ହସ ଦେଖିଲେ ମୋ ମନ ଶାନ୍ତ ।

ମୁଁ ତ ସୁଖ ଭୋଗିଲିଣି, ଦୁଃଖ ଅଙ୍ଗେ ଲିଭଇଲିଣି । ମଣିଷକୁ ଚିହ୍ନି ଲିଣି ଜୀବନକୁ ଜାଣିଲିଣି ।

ଏବେ ତୋତେ ସବୁ ଦେଖିବାକୁ ପଡ଼ବ ଶିଖିବାକୁ ପଡ଼ବ । ବୁଢ଼ୀଠୁଁ ମେଲଣି ନେଇ ସମସ୍ତେ କେତେବେଳୁ ଚଲିଗଲେଣି । କନକ ଅପଲକ ନୟନରେ ପଶ୍ଚିମ ଦିଗ୍ ବଳୟର ଅସ୍ତଗାମୀ ସୂର୍ଯ୍ୟକୁ ଅନାଇ ରହିଥାଏ ।

ପତ୍ର ଗହଳି ମଧ୍ୟଦେଇ ଅନ୍ଧାର ଧୀରେ ଧୀରେ ମାଡ଼ି ଆସୁଥାଏ । ପଲକ ବିଲୀନ ଭବରେ ସେମାନଙ୍କ ଯିବା ବାଟକୁ ଅନାଇ ରହିଥାଏ । ଧୀରେ ଧୀରେ ସେମାନଙ୍କ ଛାୟା ଦୃଷ୍ଟିର ଅନ୍ତରଳେ ଲୁଚି ଯାଉଥାଏ ।

ଟଳ ଟଳ ଲୁହ ଗଡ଼ିଆସିଲା । କନକର ଗୋରା ଚିକ୍କଣ ଗାଲ ଉପରଦେଇ । ଏ ଦୁଃଖର ନା ଆନନ୍ଦର ସହଜରେ ତା ମୁହଁ ଦେଖି ଜାଣି ହେଉ ନଥାଏ ।

ଜନକ ମାଁ ଭଉଣୀକୁ ପାଠ ପଢ଼ାଇବ । ସେମାନଙ୍କୁ ନୂଆ ନୂଆ କାମ ଶିଖାଇବ ।

କିଏ କହୁଛି ସେ ଚାକିରୀ କରିବ । ମୁଠା ମୁଠା ଟଙ୍କା ପାଇବ । ଗାଁଟି ସାରା ବୁଲି ପଡୁଛି । କେତେ ଯୁବକ ଯୁବତୀ ବୁଢ଼ା ବୁଢ଼ୀ କଥାଟି ବୁଝିବାକୁ ଚେଷ୍ଟା କରୁଛନ୍ତି ।

କେତେକ କହୁଛନ୍ତି ଜନକର ଭାଗ୍ୟ ଖୋଲିଲା ।

ଗାଁରେ ଜଣକ ଘରେ ପଡିରହି ଦିନରାତି ଖଟି ସଢ଼ି ଯାଇଥାନ୍ତା ।

ସେଥିରୁ ମୁକ୍ତି ପାଇଲା ।

କେତେକ ଗାଁ ଛାଡ଼ ଅନ୍ୟ ଗାଁକୁ ଯିବ ଚାକିରୀକରି, ତାକୁ ପସନ୍ଦ କରୁନଥାନ୍ତି ।

ମାଇପି ଲୋକ, ତାକୁ କ'ଣ ଲାଜ ସରମ ନାହିଁ ?

ଅଲଗୁକି ହୋଇ ନଥିଲେ ମରଦ ମାନଙ୍କ ସଙ୍ଗେ ବୁଲିବ, ବସିବ, ହସିବ କେତେ କଥା ??

ସେମାନେ ସହଜରେ ବିଶ୍ୱାସ ମଧ୍ୟ କରି ପାରୁନଥାନ୍ତି ।

ମୋହନବାବୁ ଘର ଭିତରେ ଗର୍ଜୁଥାନ୍ତି । ତାଙ୍କର ପାଟିରେ ଘର ପଡୁଥାଏ ଉଠୁଥାଏ । ତାଙ୍କସ୍ତ୍ରୀ ଉର୍ମିଳା ଦେବୀଙ୍କ କଥା ଶୁଣି ସେ ରାଗରେ ନିଆଁ ପାଲଟି ଯାଇଥାନ୍ତି । ଆଖି ନାଲି ପଡ ଯାଇଥାଏ । ମୁହଁ ରାଗରେ ଫୁଲି ଯାଇଥାଏ । ନାକର ନିଶ୍ୱାସ ଖର ତର ହୋଇ ବୋହୁଥାଏ ।

ମୋହନ ବାବୁ ପାଟିକରି କହୁଥାନ୍ତି, ମୁ ତାର ବୁଢ଼ୀମା ବେମାର ପଡଲା ବେଳକୁ ଦୁଇହଜାର ଟଙ୍କା କରଜ ଦେଇଛି । ଟଙ୍କା ନସୁଝି ଯିବ କେମିତି ଦେଖିବି ?

ତାଙ୍କସ୍ତ୍ରୀ ପାଖରେ ଗୋଟିଏ ଖଟରେ ବସି ଧୀରସ୍ଥିର ଭାବରେ କହୁଥାନ୍ତି ଏତେ ପାଟି କରୁଛ କାହିଁକି ?

ଦାଣ୍ଡରେ ଲୋକ ଶୁଣିଲେ କଣ କହିବେ ?

ସେ ତାଉ କଣ କଲା, କେଉଁଠିକୁ ଗଲା ସେଥିରେ ତମର ଯାଏ ଆସେ କେତେ ?

ମୋହନ ବାବୁଙ୍କ ମୁହଁ ସ୍ତ୍ରୀଙ୍କ କଥା ଶୁଣି ରାଗରେ ନାଲି ପଡ଼ଯାଇଥାଏ । ତମେ ଏହା କହୁଛ ?

ତୁମେ କ'ଣ ବୁଝିବ । ମୋର ଟଙ୍କା ସେ ନେଇଛି । ସେତକ ଶୁଝି ଯେଉଁଆଡେ ଯିବାକଥା ସେ ଯାଉ । ମୋର ଟଙ୍କା ନ ଶୁଝିଲା ଯାଏଁ ସେ ଏ ଗାଁ ଛାଡ଼ ଯାଇ ପାରିବ ନାହିଁ ।

ଉର୍ମିଳା ଦେବୀ ସ୍ୱାମୀଙ୍କ ଏଭଳି ଢଙ୍ଗ ଦେଖି ବିସ୍ମିତ ହୋଇଗଲେ । ତାଙ୍କୁ ବୁଝାଇବା ପାଇଁ କହିଲେ, ତମେ ତାକୁ କରଜ ଦେଇଛ ବୋଲି ତା' ମୁଣ୍ଡ ତ କିଣି ନେଇନ ।

ସ୍ତ୍ରୀଙ୍କ କଥା ଶୁଣି ନିଆଁରେ ଘିଅ ପଡ଼ଲା ଭଳି ରାଗରେ ଜଳି ଉଠି ତମତମ ହୋଇ କହିଲେ, ହଁ ହଁ ମୁଁ ତାକୁ କିଣିଛି । ଟଙ୍କା ନ ଶୁଝିଲା ପର୍ଯ୍ୟନ୍ତ ମୋ ବିନା ଅନୁମତିରେ କେଉଁଠିକୁ ସେ ଯାଇପାରିବ ନାହିଁ । ଉର୍ମିଳା ଦେବୀ ଶାନ୍ତ କଂଠରେ କହିଲେ, ତେବେ ତାର ବାହା ପାଇଁ ବୁଢାବର କେମିତି ଯୋଗାଡ଼ କରୁଥିଲ । ସେ ହଁ କରି ଦେଇଥିଲେ ତ ବାହା ହୋଇ ଚାଲିଯାଇଥାନ୍ତା । ତେବେ ତମ ଟଙ୍କା ଶୁଝନ୍ତା କେତେବେଳେ ? ବାହା କେବଳ ନାଁକୁ ମାତ୍ର !!!

ଥାଉ ଥାଉ ସେ କଥା । ଘୃଣାରେ ଉର୍ମିଳା ଦେବୀଙ୍କ ମୁହଁ ନାଲି ପଡ଼ଗଲା । ଉପରେ ପଡ଼ ତା ବାହାଘର ପାଇଁ କେତେ ସୁଆଗ ?

ସେ ମନା କରିଦେଇ ଠିକ୍ କରିଛି ।

ମୋତେ ତୁମେ ଥଟ୍ଟା କରୁଛ ? ମୋହନବାବୁ ତାଙ୍କ ସ୍ତ୍ରୀଙ୍କ ଉପରେ ରାଗ ତମତମ ହୋଇ ପାଟି କରୁଥାନ୍ତି । ଉପରେ ପଡ଼ ବାହା କରଉ ଥିଲି ? ତମେ ଏକଥା କହିପାରୁଛ ?

ମୁଁ କିଆଁ କହିବି ? ଗାଁଟା ସାରା ପର ସଭିଏ କହୁଛନ୍ତି । ତମେ ବୁଝିଲା ଲୋକକୁ ନେଡଗୁଡ଼ କହୁଣୀକୁ ବୋହି ଯାଇଥିବ । ସବୁ ଗୁମର ଗୋଟି ଗୋଟି ଖୋଲିଯିବ ।

ଛି, ଛି ।

ତା କଥାରେ ଆଉ ମନ ଦିଅନା । ମୋ ସାନ କୁହା ମାନି ତା କାମରେ ତୁମେ ମୁଣ୍ଡ ପୁରାଅନା । ଉର୍ମିଳା ଦେବୀ ମିନତୀଭରା କଂଠରେ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲେ ।

ତମେ ମୋର ସ୍ତ୍ରୀ ହୋଇ ଯେତେବେଳେ ଏତେ କଥା କହିପାରୁଛ ବାକିଲୋକ

ଆଉ କ'ଣ କହୁ ନଥିବେ । ଘର ଭିର୍ଙ୍ଗି କିମ୍ଭୀର୍ ହେଲେ ଯାହା ତୁମ ଭଳି ସ୍ତ୍ରୀ ମୋର ଆଜି ସେୟା । ମୋହନବାବୁ ରାଗ ତମତମ ହୋଇ ଘରୁ ପଦାକୁ ବାହାରି ଆସିଲେ ।

ଉର୍ମିଳା ଦେବୀ ନିର୍ବାକ ହୋଇ ସ୍ୱାମୀଙ୍କ ଯିବାବାଟକୁ ଅନାଇ ରହିଲେ । ତାଙ୍କ ଆଖିରେ ସ୍ୱାମୀଙ୍କ ଏ ଅଧୋପତନ ଦେଖି ଦୁଇଧାର ଅଶ୍ରୁ ଗଡ଼ ଆସିଲା ।

ଦାଣ୍ଡ ବାହାରେ ଶଙ୍କର ମୁଣ୍ଡରେ ପଗଡ଼ଟିଏ ଭିଡ଼ ଛିଡ଼ା ହୋଇଥାଏ ।

ଘରେ ସ୍ୱାମୀ ସ୍ତ୍ରୀଙ୍କ ପାଟିତୁଣ୍ଡ ଶୁଣି ସେ ଶଙ୍କି ଯାଇଥାଏ । ବାବୁ ବାହାରିଲେ କଥା ହେବ ବୋଲି ଅପେକ୍ଷା କରି ରହିଥାଏ ।

କନକ ଗାଁ ଛାଡ଼ ଚାଲି ଯାଉଥିବା ଜାଣି ଶଙ୍କରର ମନ ମଧ୍ୟ ଭଲ ନ ଥାଏ । ତାରି ରାଗ ତପନ ଉପରେ ପଡ଼ଥାଏ । ସେହି ଟୋକା ଆମ ଗାଁକୁ ଆସି କନକକୁ ଫୁସୁଲାଇ ତା ଗାଁକୁ ନେଇ ଯାଉଛି ।

ଶଙ୍କରର ଲୋଭିଲା ଆଖି କନକ ଉପରେ ଥାଏ । ମନରେ ସେ କେତେ କଳ୍ପନା ଜଳ୍ପନା କରି ବସିଥାଏ । ତା ଆଖି ଆଗରୁ କନକ ଚାଲି ଯାଉଥିବା କଥା ଶୁଣି ସେ ଅବା କିପରି ତୁନି ରହିପାରନ୍ତା ? ତେଣୁ ସେ ଆସିଛି ବାବୁଙ୍କ ସହ ପରାମର୍ଶ କରି ତାର ଠିକ୍ ଠିକଣା କରିବେ ବୋଲି ।

ବାବୁ ଘର ଭିତରୁ ରାଗ ତମ ତମ ହୋଇ ବାହାରକୁ ଆସିବା ଦେଖି ଶଙ୍କର ଡରି ଡରି ତାଙ୍କ ପାଖକୁ ଆସିଲା ।

କ'ଣ କିରେ ?

ମୋହନ ବାବୁ ମୁହଁର ରାଗକୁ ଦବାଇ ଶଙ୍କରକୁ ଦେଖି ପଚାରିଲେ ।

ବାବୁ, କଥା କ'ଣ କି, ଥରେ ଚାରି ଆଡ଼କୁ ଅନାଇ ନେଇ ଥଙ୍ଗ ଥଙ୍ଗ ହୋଇ ଶଙ୍କର ଛିଡ଼ା ହୋଇ ରହିଲା ।

ମୋହନ ବାବୁ ବିରକ୍ତ ହୋଇ କହିଲେ ।

ଆରେ କହୁ ନାହୁଁ, କଥା କ'ଣ ?

ଟିକିଏ ସାହସ ପାଇ ଶଙ୍କର କହିଲା ।

ବାବୁ ତୁମେତ ସବୁ ଜାଣିଛ । କନକ ଗାଁ ଛାଡ ଆର ଗାଁକୁ ଚାକିରୀ ନା ଫାକିରୀ କରିବାକୁ ଚାଲିଯାଉଛି ।

ରାଗରେ ଘୃଣାରେ ମୁହଁ ଛୁଆଡ ଏତକ କହିଲା ।

ହଁ ମୁଁ ସବୁ ଜାଣେ ।

ଏହି ନାଟର ଗୋବର୍ଦ୍ଧନ ସେହି ତପନ ।

ଗାଁରେ ସେ ଯୁବକ ସଂଘ ଗଢ଼ିଛି । ଗାଁରେ ମହିଳା ସମିତି ଗଢ଼ିବ । ମାଇକିନା-ମାନେ ପାଠ ପଢ଼ିବେ । ଚପଳ ମାଡ଼ ଗାଁ ଦାଣ୍ଡରେ ବୁଲିବେ । ପୁରୁଷମାନଙ୍କ ସଙ୍ଗେ ହେଁ ହେଁ ପେଁ ପେଁ ହେବେ ।

ଗାଁଟାକୁ ଝେକି ଧରିବେ ।

ପିଲର ବହପ କେତେ ଦେଖ । ତା' ସାଙ୍ଗରେ ସେହି ଘନ ବୁଢ଼ା ମଧ୍ୟ ଟୋକାଙ୍କ ଭଳି ମାତିଛି । ଫନ୍ଦ ଫିକର କରି ଲୋକଙ୍କୁ ମତାଉଛି ।

ଗାଁ ମହାଜନଠୁଁ ଋଣ ନ ନେଇ ସମବାୟ ସମିତିଠଁ ଋଣ ନେବାପାଇଁ ଲୋକଙ୍କୁ ମତାଉଛି । ନୂଆ କରି ସମବାୟ ସମିତି ଗଠନ ହୋଇଛି ।

ବାପା ତାର ମରି ଯାଇଛି । ଘରେ ଯାହା ବୁଢ଼ା ସାଇତି ରଖି ଯାଇଥିଲା ତାକୁ ଫୁଅ ଉଡ଼ାଉଛି ।

ଲୋକଙ୍କଠୁଁ ବାହା ବାହା ଶୁଣିବନା !!

ମୋହନ ବାବୁ ରାଗରେ କହି ଚାଲିଥାନ୍ତି ।

ସମୟ ଆସୁଛି ଫୁଅ ବୁଝିବ । କେତେ ତାର ବାହାପିଆ ଦେଖାଯିବ ।

ରାଗରେ ଗର ଗର ହୋଇ ସମସ୍ତ ରାଗ ତପନ ଉପରେ ଅଜାଡ଼ ଦେଉଥାନ୍ତି । ମୁହଁରେ ପ୍ରତିହିଂସାର କୁଟିଳ ଭବ ଫୁଟି ଉଠୁଥାଏ । ଆଖି ଯୋଡ଼କ ରାଗରେ ନିଆଁ ରଡ ଭଳି ଜଳି ଉଠୁଥାଏ ।

କନକ ଚାଲିଯିବା ଖବର ଶୁଣିଲା ବେଳଠୁ ସେ ବଡ଼ ଅସ୍ଥିର ହୋଇ ପଡ଼ଥାନ୍ତି । ତାଙ୍କ ସ୍ତ୍ରୀଙ୍କ ବାରଣ ସତ୍ତ୍ୱେ ସେ କାହା କଥା ଶୁଣିବାକୁ ପ୍ରସ୍ତୁତ ନଥାନ୍ତି ।

ସେ କେତେ ଆଶା ବାନ୍ଧିଥିଲେ । ତାଙ୍କ ପାଖେ ପାଖେ କନକ ଥିବ । ତାଙ୍କ ଭୋଗ ଲାଲସା ସେ ମେଣ୍ଟାଉଥିବ । ତେଣୁ ଜାଣି ଶୁଣି ଜଣେ ବେଗା ବୟସ୍କ ଲୋକ ସହିତ ତାକୁ ବାହା କରାଇ ଦେଉଥିଲେ । ମାତ୍ର ଟୋକୀ ବଡ଼ ଚାଲାକ । ତରକି ଗଲା ।

ମାତ୍ର ଆଜି ଏକାଥରକେ ସବୁ ଓଲଟ ପାଲଟ ହୋଇ ଯାଇଅଛି । ରାଗରେ ମୁହଁ ଲାଲ ପଡ଼ଯାଇଥାଏ । ଆଖିରୁ ନିଆଁ ବର୍ଷୁଥିଲା ପରି ମନେ ହେଉଥାଏ ।

କନକ କଥା ସେ ଯେତେ ଭାବୁଥାନ୍ତି ସେତେ ତାଙ୍କ ମନରେ ରାଗ ବଢ଼ିଚାଲିଥାଏ ।

ପାଖରେ ଶଙ୍କର ଥାଇ ନିଆଁରେ ଘିଅ ଢାଳିଲାଭଳି ତାଙ୍କୁ ନାନା କଥା କହି ଉତ୍ତେଜିତ କରୁଥାଏ ।

ଶଙ୍କରର ଆଖି ମଧ୍ୟ କନକ ଉପରେ ପଡ଼ଥାଏ ।

ନିରୀହ, ନିରାଶୟ ପ୍ରତି ପାପଚାରୀ ବ୍ୟକ୍ତିମନ ଅତି ସହଜରେ ଟାଣିହୋଇ ଯାଇଥାଏ ।

ତାର ଅସହାୟତାର ସୁଯୋଗ ନେଇ ଅବାଟକୁ ଟାଣିବା ପାଇଁ ମନ ଛଟପଟ ହେଉଥାଏ ।

ପାପଚାରୀ ବ୍ୟକ୍ତିର ମନ ସଦାବେଳେ ସୁଯୋଗ ଉଣ୍ଡି ବୁଲୁଥାଏ । ସୁଯୋଗ ହାତ ଛଡା ହେବାକୁ ଯେତେବେଳେ ଯାଉଛି ପ୍ରତିହିଂସାର ବହ୍ନି ପ୍ରଜ୍ଜ୍ୱଳିତ ହେବା ସ୍ୱାଭାବିକ ।

ମାତ୍ର ମନ ଯାହା ଚାହେଁ ସେ ତାହା କେବେ ପାଇ ପାରେକି ?

ଆଶା ତାର କେବେ ମେଣ୍ଟି ପାରେକି ?

ମଣିଷ ଯଦି ନିଜ ଇଚ୍ଛା ମୁତାବକ ସବୁ ହାସଲ କରିପାରନ୍ତା ତେବେ ଆଜି ଏତେ ଅଶାନ୍ତି । ଅସନ୍ତୋଷ ହିଂସା, ପ୍ରତିହିଂସା ଦେଖା ଦିଅନ୍ତା କେମିତି ?

ମୋହନ ବାବୁ ଧନ ବଳରେ ସବୁ ଭୋଗ କରିବା ପାଇଁ ଲାଳାୟିତ ।

ଶଙ୍କର ମଧ୍ୟ ତାଙ୍କର ସହାୟକ ହୋଇ, ତାର ପାପ ମନକୁ ଲୋଟାଇ ଦେଉଛି ସହଜରେ ତାର ପ୍ରାପ୍ୟ ହାସଲ କରି ନେବାକୁ ।

ବିଚିତ୍ର ଏ ସଂସାର ।

ତାଠୁଁ ଆହୁରି ବିଚିତ୍ର ଏ ମଣିଷ ମନ ।

ରେଙ୍ଗସାପାଲି ଗାଁର ବିରାଟ ପରିବର୍ତ୍ତନ ହୋଇ ଯାଇଛି । ଗାଁ ଦାଣ୍ଡ ଓସାରିଆ ହୋଇଛି । ଲୋକେ ରାସ୍ତାକୁ ଅବରୋଧ କରି ରାଜଟାଟି ପିଟି ଅଣଓସାରିଆ କରି ଦେଇଥିଲେ । ତାକୁ ଗାଁ ଯୁବକ ମାନଙ୍କ ଉଦ୍ୟମରେ ସମସ୍ତଙ୍କୁ ବୁଝାଇ ରାସ୍ତାକୁ ଚୌଡ଼ା କରାଯାଇଛି । ଏକାଥରକେ ଗାଁ ଦାଣ୍ଡରେ ଦୁଇଟି ଶଗଡ଼ ଯିବା ଆସିବା କରି ପାରୁଛୁ । ଯେଉଁ ରାସ୍ତାରେ ଗୋଟିଏ ଶଗଡ଼ ଯିବା କଷ୍ଟକର ହେଉଥିଲା, କେବେ କାହାର ରାଜ ଟାଟିରେ ଶଗଡ଼ ଲାଗିଗଲେ କଳି ତକରାଳ ହେଉଥିଲା, ଆଜି ସେ ରାସ୍ତାରେ ଦୁଇଟି ଶଗଡ଼ ଅନାୟସରେ ଯାତାୟତ କରି ପାରୁଛୁ ।

ଚୌଡ଼ା ରାସ୍ତା ଦେଖି ଗାଁ ପିଲାମାନେ ରାସ୍ତା ଉପରେ ପେଣ୍ଡୁ ଗଡ଼ାଇ, କିଏ ଚୁଣ୍ଡା କନାକୁ ଗୁଡ଼ାଇ ଗୁଡ଼ାଇ ପେଣ୍ଡୁ ତିଆରି କରି ରାସ୍ତାରେ ଖେଳି ରାସ୍ତାକୁ ଧୂଳିଧୂସରିତ କରି ଦେଉଥାନ୍ତି । ସତେ ଯେପରି ସେମାନେ ଖେଳ ପଡ଼ିଆରେ ଫୁଟବଲ ଖେଳିଲା ଭଳି ଆନନ୍ଦରେ ଡେଇଁ ଉଠୁଥାନ୍ତି ।

ଗାଁ ରାସ୍ତାରେ ମୁରୁମ୍ ପଡ଼ିବା ପାଇଁ ସବୁ ବ୍ୟବସ୍ଥା ହୋଇ ଯାଇଛୁ । ଗାଁର ଅନେକ ଉନ୍ନତି ହୋଇ ଯାଇଛୁ । ଯୁବକ ସଂଘର କାର୍ଯ୍ୟ ଆଗେଇ ଚାଲିଛି । ଲୋକଙ୍କ ମଙ୍ଗଳ ପାଇଁ ଅନେକ କାର୍ଯ୍ୟ ହାତକୁ ନିଆଯାଇଛୁ ।

ଅଞ୍ଚଳର ଯେଉଁମାନେ ବୟସ୍କ ପ୍ରଥମେ ସେମାନେ ଖାପଛଡ଼ା ହୋଇ ରହୁଥିଲେ । ମାତ୍ର ଧୀରେ ଧୀରେ ଯୁବକ ମାନଙ୍କ ଉତ୍ସାହ ଉଦ୍ଦିପନାକୁ ଦେଖି, ନିକଟରୁ ନିକଟତର ହୋଇ ଯୁବକ ସଂଘକୁ ବିଭିନ୍ନ ପରାମର୍ଶ ଦେଇ ଆଗେଇବାରେ ସାହାଯ୍ୟ କରୁଛନ୍ତି ।

ଉନ୍ନୟନ ମୂଳକ କାର୍ଯ୍ୟକୁ ଆଗେଇବା ପାଇଁ ନିଷ୍ଠାପର ଯୁବକ ମାନଙ୍କ ଏକ ମିଳନ କ୍ଷେତ୍ର ରେଙ୍ଗସାପାଲି ଗାଁ । ମନରେ ଆନ୍ତରିକତା, କର୍ତ୍ତବ୍ୟ ନିଷ୍ଠା ବଳରେ, ଆଜି ସେମାନଙ୍କ ପାଖରେ କିଛୁ ଅସାଧ୍ୟ ହୋଇ ରହିନାହିଁ । ଯୁବକ ମାନଙ୍କ ପାଖରେ ଭରି ରହିଛୁ ଅସରନ୍ତ ଶକ୍ତି । ତାକୁ ଠିକଣା ମାର୍ଗରେ ବିନିଯୋଗ କଲେ ଫଳ ନିଶ୍ଚୟ ମଙ୍ଗଳ ଦାୟକ ହେବ ।

ଆଜି ସେ ଶକ୍ତିର ସଦ୍‌ବିନିଯୋଗ ହୋଇ ପାରିଛି ।

ରେଙ୍ଗସାପାଲି ଗାଁର ଉନ୍ନତି ପାଖ ପଡ଼ଶା ଗାଁରେ ତାର ପ୍ରଭାବ ପଡ଼ୁଛି । ଦୂର ଦୂରାନ୍ତକୁ ମଧ୍ୟ ତାହା ଚହଲି ଗଲାଣି ।

ଅନେକ କୌତୂହଳ ହୋଇ ଗାଁର ଉନ୍ନତି ସ୍ୱଚକ୍ଷୁରେ ଦେଖିବା ପାଇଁ ଆସି ଦେଖି ଯାଉଛନ୍ତି ।

ଯାହା ସେମାନେ ଶୁଣି ବିଶ୍ୱାସ କରୁ ନଥିଲେ, ଦୁଇ ଆଖିରେ ଦେଖି ସେମାନଙ୍କ ମନର କଳାପରଦା ଦୂର ହୋଇ ଯାଇଛି । କଥାଟି ଗୋଟିଏ କାନରୁ ଆର କାନକୁ ଯାଇ ଆଜି ସମଗ୍ର ଅଞ୍ଚଳରେ ଚହଲ ପକାଇ ଦେଇଛି ।

ବର୍ଷକ ଭିତରେ କେତେ କାମ ହୋଇ ଯାଇଛି ।

ପ୍ରତ୍ୟେକ ଗାଁ ସହିତ ଅନ୍ୟ ଗାଁକୁ ସବୁଦିନିଆ ରାସ୍ତାର ସଂଯୋଗ ହୋଇ ପାରିଛି

ଲୋକେ, ସବୁଦିନିଆ ରାସ୍ତା ପ୍ରତ୍ୟେକ ଗାଁ ସହିତ ସଂଯୋଗ ହୋଇଯିବା ପରେ ନିଜ ଜମିରୁ ଉପାର୍ଜିତ ପନିପରିବା ବିକ୍ରୀବଟା କରିବାକୁ କୌଣସି ଅସୁବିଧା ହେଉନାହିଁ । ଲୋକଙ୍କ ହାତକୁ ଟଙ୍କା ଆସି ଯାଉଛି । ମନରେ ସେମାନଙ୍କ ଆନନ୍ଦ ଖେଳି ଯାଉଛି । ଆଗରୁ ତାଙ୍କ ପନିପରିବା କମ୍ ଦାମରେ ବିକ୍ରୀହୋଇ, ଅବା ବିକ୍ରୀ ନହୋଇ ନଷ୍ଟହୋଇ ଯାଉଥିଲା । ତେଣୁ କ୍ଷତିରେ ଆଉ ଚାଷ କରିବାକୁ ମନ ବଳୁନଥିଲା । ଏବେ ଆଉ ସେକଥା ନାହିଁ ।

ଯାତାୟାତର ସୁବିଧା ହୋଇ ଯାଇଅଛି । ପଇସା ହାତକୁ ଆସିଲା ପରେ ଚାଷପ୍ରତି ତାର ଆଗ୍ରହ ବଢ଼ି ଯାଉଛି ଘରେ ବସି ରହିବା ପାଇଁ ମନ ବଳୁନାହିଁ ।

କ୍ଷେତରେ ଖଟି ଉପାର୍ଜନ କରି ବଂଚିବା ପାଇଁ, ମଣିଷ ଭଳି ମଣିଷ ହିସାବରେ ବଂଚିବା ପାଇଁ ଝାଳ ନାଳ ହୋଇ ଅପାର ତୃପ୍ତି ଅନୁଭବ କରି ପାରିଛି ।

ମନରେ ସନ୍ତୋଷ ଭାବ ଖେଳି ଯାଉଛି ।

ଗାଁ ପୋଖରୀ ଦଳ କାଢ଼ି ପୋଖରୀକୁ ପରିଷ୍କାର କରାଯାଇଛି । ଗାଁ ବ୍ୟବହାର ପାଇଁ ପ୍ରଥମେ ପୋଖରୀଟିଏ ଛାଡ଼ଦେଇ ଅନ୍ୟ ପୋଖରୀରେ ମାଛଚାଷ କରାଯାଇ ଯଥେଷ୍ଟ ଉପାର୍ଜନ କରି ଗାଁ ପାଂଠିରେ ଜମା କରାଯାଇ, ଗାଁର ହିତରେ ସେହି ଅର୍ଥକୁ ବିନିଯୋଗ କରାଯାଉଛି ।

ଲୋକଙ୍କ ମନରେ କାମ କରିବା ପାଇଁ ଆଗ୍ରହ ସୃଷ୍ଟି ହୋଇ ପାରିଛି । ଲୋକଙ୍କ ଆଖି ଫିଟିଛି । ସମସ୍ତେ ଆଜି କାର୍ଯ୍ୟରେ ବ୍ୟସ୍ତ । ଜଣେ ବି ବେକାର ହୋଇ ଗାଁରେ ବସି ରହିନାହିଁ ।

ଗାଁରେ ଏକ ସୁନ୍ଦର ପାଠାଗାର ନିର୍ମାଣ ହୋଇଯାଇଛି । ଲମ୍ବା ଚୌଡା ମାଟି କାନ୍ଥ ଘେର ପ୍ରଶସ୍ତ କୋଠରୀରେ ଗାଁର ଯୁବକମାନେ ଏକାଠି ବସି ଖବର କାଗଜ ପଢ଼ିବା ଛୋଟ ପିଲାମାନଙ୍କ ପାଇଁ ସୁନ୍ଦର କଉତିକିଆ ଗପବହି,ବିଭିନ୍ନ ମହାପୁରୁଷ ମାନଙ୍କ ଜୀବନୀ ବହି ପଢ଼ିବା ପିଲାମାନଙ୍କର ଏକ ନିତି ଦିନିଆ ଅଭ୍ୟାସରେ ପରିଣତ ହୋଇ ଯାଇଛି ।

ଆଠଖଣ୍ଡ ଗାଁକୁ ନେଇ ସମବାୟ ସମିତି କାମ ଆଗେଇ ଚାଲିଛି । ଲୋକଙ୍କୁ କୃଷିଋଣ ଯୋଗାଇ ଦେବା, ସାର,ବିହନ, ପୋକମରା ଔଷଧ ସୁଲଭ ଦରରେ ଯୋଗାଇ ଦେବା ତଥା ଲୋକଙ୍କ ନିତ୍ୟ ବ୍ୟବହାର୍ଯ୍ୟ ଚିନି, କିରେସିନି, ଚାଉଳ, ତେଲ, ଲୁଣର କାରବାର ଠିକ୍ ଭାବରେ କାମ୍ ଚାଲିଛି ।

ଏ ସମସ୍ତ କାର୍ଯ୍ୟର ମୂଳରେ ତପନର ହାତ ଲାଗିଛି । ତାକୁ ମଧ୍ୟ ଛାୟା ସହିତ କାୟା, ଅବା କାୟା ସହିତ ଛାୟା ଭଳି ତାର ସାଥୀ ମଧୁ , ନବ ଏବଂ ଅନ୍ୟମାନେ ଅହରହ ଆଗେଇବାରେ ସମୟ ଏବଂ ଶକ୍ତି ଦେଇ ଚାଲିଥାନ୍ତି ।

ତପନ ଗୋଟିଏ ଆମ୍ବ ଗଛକୁ ଆଉଯେଇ ଛିଡ଼ାହୋଇ କେତେ କଣ ଭାବି ଚାଲିଥାଏ ଅଞ୍ଚଳର ଉନ୍ନତି ପାଇଁ ଅନେକ ଗୁଡ଼ାଏ କାର୍ଯ୍ୟ ହାତକୁ ନିଆଯାଇଛି । ସବୁ ଠିକ୍ ଚାଲିଛି ।

ତଥାପି ମନରେ ସନ୍ଦେହ ।

କେଉଁଠି କିଛି ଭୁଲ୍ ରହିଗଲା କି ? ସବୁ ସେ ନିଜେ ତନ୍ନ ତନ୍ନ କରି ବୁଝୁଛି । ଲୋକଙ୍କୁ କାମରେ ମଧ୍ୟ ଲଗାଇ ପାରୁଛି । କେତକ ମଧ୍ୟ ଖୁସିରେ ସବୁକାମ ନିଃସ୍ୱାର୍ଥଭାବରେ କରି ଚାଲିଛନ୍ତି ।

ପ୍ରତ୍ୟେକ ମଣିଷର ଜୀବନରେ ଗୋଟିଏ ଲକ୍ଷ୍ୟ ଅଛି ।

କଣ ସେ ଲକ୍ଷ୍ୟ ।

ଧନ ଅର୍ଜନ ?

କ୍ଷମତା ?

ପ୍ରତିପତ୍ତି ?

କିଏ ଚାହେଁ ଶାନ୍ତି, ସୁଖ, ସମୃଦ୍ଧି, ନା, ଆହୁରି କେତେ ।

ମଣିଷର ଆଶାର ଅନ୍ତ ନାହିଁ ।

ତାର ପରିସମାପ୍ତି ନାହିଁ ।

ଆଶା କେବେ ମେଣ୍ଟି ପାରେନାଁ ।

ମଣିଷ ନିଜ ମନର ଭାବନାରେ ସେ ଖୋଜିବୁଲେ କଣ ତାର ଦରକାର ?

କଣ ସେ, ତାର ଇପ୍‌ସିତ ବସ୍ତୁ !

ଖୋଜି ନ ପାରି, ବୁଝି ନପାରି, ବାଟ ବଉଳା ହୋଇ ହନ୍ତସନ୍ତ ହେବାହିଁ ସାର ହୋଇଥାଏ ।

ଏଭଳି ଅଜଣା ବାଟରେ ଅଜଣା ପଥିକ ହିସାବରେ ସମୟର ମହା ସ୍ରୋତରେ ଶେଷରେ ଲୀନ ହୋଇ ଯାଇଥାଏ ।

କର୍ମ ହିଁ ଧର୍ମ, କର୍ମହିଁ କାରିଗର ।

ଏହି ମହା ମନ୍ତ୍ରରେ ତପନ ଆଜି ଦୀକ୍ଷିତ ।

କେବଳ ତପନ ଏକାନୁହେଁ । ଆଜି ଅନେକ ଯୁବକ ତପନର ସେହି ମହାମନ୍ତ୍ରରେ ଅନୁପ୍ରାଣିତ ହୋଇ ସେହି କର୍ମଶାଳାରେ ନିଜକୁ ଉତ୍ସର୍ଗ କରି ଦେଇଛନ୍ତି ।

କର୍ମ ହିଁ ଧନ । କର୍ମହିଁ ବିଦ୍ୟା ।

ଏହାହିଁ ଆଜିର ମହାମନ୍ତ୍ର !!

କାର୍ଯ୍ୟର ବ୍ୟସ୍ତତା ସତ୍ୱେ ତପନ ମନରେ ପୁରି ରହିଛି ଅପୂରନ୍ତ ଆନନ୍ଦ । କାର୍ଯ୍ୟ ବ୍ୟସ୍ତତା ମଧ୍ୟରେ ସେ ପାଉଛି ଅପୂର୍ବ ଉଲ୍ଲାସ । ତେଣୁ ସେ ତାର ମନର ଭାବନାକୁ ବାସ୍ତବରେ ରୂପାୟିତ କରିବା ପାଇଁ ସଦା କାର୍ଯ୍ୟରତ ରହି, ପାଉଛି ଅପୂର୍ବ ପ୍ରେରଣା । ତେଣୁ ସେ ଆଗକୁ ବଢ଼ିବା ପାଇଁ ମନରେ ପାଉଛି ନୂତନ ଉଲ୍ଲାସ । ନୂତନ ଶକ୍ତି । ତପନ ଏମିତି ଭାବ ବିହ୍ୱଳ ଭାବେ ଛିଡ଼ାହୋଇ ଥିବା ଦେଖି, ମଧୁ ପାଖକୁ ଆସି ତପନର ପିଠିରେ ହାତରଖି ପଚାରିଲା ।

କଣ ତୁ ଆଜି ବଡ଼ ଚିନ୍ତିତ ?

ଏକୁଟିଆ ଛିଡ଼ା ହୋଇ କେତେ କଣ ଭାବି ଚାଲିଛୁ ।

ମଧୁର ଏ ସରଳ ପ୍ରଶ୍ନରେ ତପନର ସ୍ୱପ୍ନ ଭାଙ୍ଗିଲା ।

ନିଜକୁ ସଞ୍ଜତ କରିନେଇ ସେ କହିଲା, ଭାବୁଥିଲି ଆମର କାର୍ଯ୍ୟକ୍ରମ ସମ୍ବନ୍ଧରେ । କାଳେ କେଉଁଠି କିଛି ଭୁଲ ରହିଁଗଲା କି ?

ମଧୁକୁ ଅନାଇ ତପନ ପୁଣି ପ୍ରଶ୍ନକଲା, ହଁ ତୋ ଉପରେ ଯେଉଁ ଦାୟିତ୍ୱ ଦେଇଥିଲି, ତୁ କେତେଦୂର ଆଗେଇଲୁ ?

ତପନ ପ୍ରଶ୍ନରେ ସେ ତାକୁ ଅନାଇଲା ।

ଭାବବିହ୍ୱଳ ହୋଇ ତପନ କହିଲା ।

ସମୟ କେତେ ଦ୍ରୁତ ଗତିରେ ଆଗେଇ ଚାଲିଛି ।

ମଧୁ ଟିକିଏ ହସି କହିଲା, ପଛକୁ ନ ଅନାଇ ଆଗକୁ ମାଡ଼ି ଚାଲିବା ହେଉଛି ତାର କର୍ତ୍ତବ୍ୟ ।

ସତେ ତ !

ଆମକୁ ଆଜି ସମୟ ନିଅଣ୍ଟ ଭଳି ମନେ ହେଉଛି ।

କାମରେ ସଦା ବ୍ୟସ୍ତ ରହିଲେ ସମୟ ଅଣ୍ଟେନାହିଁ । ତପନ କହି ମଧୁକୁ ଅନାଇଲା

ମଧୁ ତାର ପେଣ୍ଟ ପକେଟରୁ ଗୋଟିଏ କାଗଜ ବାହାର କରି ତପନକୁ ଦେଖାଇ କହିଲା ।

ଭାଇ ତମେ, ଅନାବନା ଜମି ସଂଗ୍ରହ କରିବା ପାଇଁ କହିଥିଲ । ମୁଁ ତାର ଏକ ତାଲିକା ପ୍ରସ୍ତୁତ କରିଛୁ ।

ଗାଁରେ ଯେଉଁ ମାନଙ୍କ ଜମି ଚାଷ ନ ହୋଇ ପଡ଼ ରହିଛୁ । ସେହି ଅନାବନା ପତିତ ଜମି ସବୁ ସଂଗ୍ରହ କରିଛି । ତପନ ଆଗ୍ରହରେ ମଧୁ ପିଠିରେ ହାତମାରି କହିଲା, ବା ତୁ ଏ ଭିତରେ ଅନେକ ଦୂର ଆଗେଇ ଯାଇଛୁ । ସର୍ବମୋଟ କେତେ ଏକର ଜମି ସଂଗ୍ରହ କରି ପାରିଛୁ? ମଧୁ ଆଗରୁ ହିସାବ କରିଥିଲା । ସାଙ୍ଗେସାଙ୍ଗେ କହିଲା ସର୍ବମୋଟ ବାବନ ଏକର୍ ।

ଏ ସମସ୍ତେ ଆଗ୍ରହର ସହିତ ଆମକୁ ଜମି ଚାଷ କରିବା ପାଇଁ ସମ୍ମତି ମଧ୍ୟ ପ୍ରଦାନ କରିଛନ୍ତି । ମୁଁ ସେମାନଙ୍କ ସମ୍ମତି ପତ୍ର ମଧ୍ୟ ଲିଖିତ ଆକାରରେ ପୂର୍ଣ୍ଣ ସାଥିର ସହ ନେଇ ଆସିଛି ।

ତପନ ଆନନ୍ଦରେ ମଧୁକୁ କୁଣ୍ଡାଇ ପକାଇ କହିଲା ।

ବାଃ, ତୋ କାର୍ଯ୍ୟ ପ୍ରଣାଳୀ କେତେ ସୁନ୍ଦର !!

ଅଳ୍ପ ସମୟ ଭିତରେ ତୁ ସମସ୍ତ କାର୍ଯ୍ୟ ଶେଷ କରିଦେଇ ପାରିଛୁ । ଭାବବିହ୍ୱଳ ହୋଇ ତପନ କହିଲା । ଏତେ ଜମି ଉତ୍ପାଦନ ନହୋଇ ଅକାମୀ ହୋଇ ପଡ଼ ରହିଛୁ । ଏଣେ ଗାଁରେ ଲୋକେ ଓଳିଏ ଖାଇ ଆଉ ଓଳି ଭୋକରେ ପଡ଼ ରହିଛନ୍ତି । କଥା ହଉ-ହଉ ଦୁଇବନ୍ଧୁ ଗଛତଳ ପଥର ଚଟାଣରେ ବସି ପଡ଼ଲେ ।

ଏକେ ଆରେକକୁ କିୟତ ସମୟ ଦେଖିନେଲେ । ତପନର ମୁହଁ ଆନନ୍ଦରେ ଉଲ୍ଲସିତ ହୋଇ ଯାଇଥାଏ ।

ମଧୁ ତାର ଦାୟିତ୍ୱ ସୁରୁରୁପେ ସଂପାଦିତ କରୁଥିବା ଯୋଗୁଁ ଆତ୍ମତୃପ୍ତି ଲାଭ କରୁଥାଏ । ତା ମନରେ ମଧ୍ୟ ଅପୁରନ୍ତ ଆନନ୍ଦ ଖେଳି ଯାଉଥାଏ ।

କିଛି ସମୟ ଏପରି ନୀରବରେ କଟିଗଲା ପରେ ମଧୁ ପ୍ରଶ୍ନ କଲା, ଆମ ହାତକୁ ଏତକ ଜମି ଆସିଗଲା । ଏବେ ତାକୁ ଆମେ କିପରି ତହିଁରୁ ଉତ୍ପାଦନ କରି ପାରିବା ? ତପନ ତାର ବନ୍ଧୁକୁ କ୍ଷଣକ ପାଇଁ ଦେଖିନେଇ କହିଲା ।

ଏବେ ଆମ ଦାୟିତ୍ୱ ବହୁ ଗୁଣରେ ବଢ଼ି ଯାଇଛି । ଏହି ଅକର୍ମଣ୍ୟ ଅନାବନା ଜମିରୁ ଆମକୁ ଉତ୍ପାଦନ କରିବାକୁ ପଡ଼ିବ । ଯେଉଁମାନେ କାମଧାମ ନପାଇ ବେକାର ହୋଇ ବସି ରହିଛନ୍ତି ସେମାନଙ୍କୁ କର୍ମନିଯୁକ୍ତି ଦେବାକୁ ପଡ଼ିବ ।

ମଧୁ ତା ବନ୍ଧୁର କଥା ଶୁଣି, ଟିକିଏ ଆଶ୍ଚର୍ଯ୍ୟ ହୋଇ କହିଲା ଏ ଭିତରୁ ଅନେକ ଜମି ଗେଗଡ଼ିଆ, ଚାଷ ପାଇଁ ସଂପୂର୍ଣ୍ଣ ଅନୁପଯୁକ୍ତ ।

ତପନ ତା ବନ୍ଧୁର କଥାଶୁଣି ନ ହସି ରହିପାରିଲା ନାହିଁ ।

ସେହି ଗେଗଡ଼ିଆ, ପଥରିଆ ଜମିରେ ମଧ୍ୟ ଚାଷ କରଯାଇ ପାରିବ । ସେଥିପାଇଁ ଧାନଚାଷ ଅପେକ୍ଷା ଅନ୍ୟ ଅର୍ଥକାରୀ ଫସଲ ଉତ୍ପାଦନ କରଯାଇ ପାରିବ । ଯେଉଁଠି ପାଣି, ମାଟି,ସାର ଠିକ୍ ଭବରେ ବ୍ୟବହାର ହୋଇ ପାରିବ ଏବଂ ପରିଶ୍ରମ କରଯାଇ ପାରିବ ଯେକୌଣସି ଜମିରୁ ମଧ୍ୟ ଉତ୍ପାଦନ କରିବା ସମ୍ଭବପର ହେବ ।

ମଧୁ ତାର ବନ୍ଧୁର ଏଭଳି ଉତ୍ତରରେ ଆଦୌ ସନ୍ତୋଷ ହୋଇ ପାରିଲା ନାହିଁ । ବିସ୍ମିତ ହୋଇ ତାକୁ ଅନାଇ ରହିଲା ।

ତପନ ତା ବନ୍ଧୁକୁ ଏଭଳି ବିସ୍ମିତ ହୋଇ ଅନାଇ ରହିଥିବା ଦେଖି କହିଲା ।

ଆମେ ସମସ୍ତେ ଆଜି ସେହି ଜମିକୁ ଦେଖି, କେଉଁ ଜମିରେ କି ଚାଷ କରଯାଇ ପାରିବ, କେଉଁଠି ଫଳଗଛ ଲଗାଯାଇ ପାରିବ, ଆବଶ୍ୟକ ସ୍ଥଳେ ମୃତ୍ତିକା ପରୀକ୍ଷା କରି ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାକୁ ପଡ଼ିବ ।

ମଧୁ ମନରୁ ସନ୍ଦେହ ଦୂର କରିବା ପାଇଁ ତପନ କହିଲା, ଯେଉଁ ଗେଗଡ଼ିଆ ପଥରିଆ ଜମିଅଛି, ସେହି ଜମିରେ ଛଅଫୁଟ ଦୂରତାରେ ଦୁଇଫୁଟ ଗଭୀର ଏବଂ ଓସାରରେ ଗାତ ଖୋଳାଇ ତହିଁରେ ଉର୍ବର ମାଟି ସହ ଖତ, ସାର ଦେଇ ଗାତ ଭର୍ତ୍ତି କରି ପୋଟଳ ଚାଷ କରାଯାଇ ପାରିବ ।

ବର୍ଷକ ଭିତରେ ଧାନଠୁ ଯଥେଷ୍ଟ ଆୟ କରଯାଇ ପାରିବ ।

ତେଣୁ କୌଣସି ଜମି ଅକାମୀ ହୋଇ ପଡ଼ ରହିବା ପ୍ରଶ୍ନ ଉଠୁନାହିଁ । ଆବଶ୍ୟକ ସ୍ଥଳେ କୁଅଁର ବ୍ୟବସ୍ଥା କରି ଜଳସେଚନ ପାଇଁ ସୁବିଧା ଦିଆଯିବ ।

ମଧୁ ତା ବନ୍ଧୁର, ଏଭଳି ସରଳ ଉତ୍ତର ମଧ୍ୟରେ ତା ଭାବନାର ଗଭୀରତାକୁ ଏବଂ ବାସ୍ତବରେ ରୂପାୟିତ କରିବା ପାଇଁ ତାର କାର୍ଯ୍ୟକ୍ରମକୁ ମନେ ମନେ ପ୍ରଶଂସା ନ କରି ରହି ପାରିଲା ନାହିଁ ।

ତପନ ଭାଇ ଏଭଳି ବାସ୍ତବ ଚିନ୍ତା ଏବଂ ତାକୁ କାର୍ଯ୍ୟକାରୀ କରିବା ପାଇଁ ସଂକଳ୍ପ ଆଗରୁ ସ୍ଥିରକରି ପାରି ନଥିଲେ ତାକୁ ଏତେ ସହଜରେ ସୁନ୍ଦର ଭାବରେ ବୁଝାଇ ନଥାନ୍ତା ।

ମନେ ମନେ ସେ ଲଜ୍ଜିତ ହୋଇ ପଡ଼ିଲା ।

ଅଳ୍ପକ୍ଷଣ ପୂର୍ବରୁ ସେ ଭାବିଥିଲା, ଏଭଳି ଜମିରୁ କିଛି ଉତ୍ପାଦନ ହୋଇପାରିବ ନାହିଁ।

ମାତ୍ର ସେ ଦେଖିଲା ତପନ ଭାଇ କେତେ ସୁପରିକଳ୍ପିତ ଯୋଜନା ସବୁ ପ୍ରସ୍ତୁତ କରି ରଖିଛି । ଯଥା ସମୟରେ ସେ ତାକୁ ବିନିଯୋଗ କରିବା ପାଇଁ ପ୍ରସ୍ତୁତ ହୋଇ ଯାଇଛି ।

ମଧୁ ତା ମନର ସଂଶୟ ଦୂର କରିବା ପାଇଁ ତପନକୁ ଚାହିଁ ପ୍ରଶ୍ନ କଲା । ଏଭଳି ସମସ୍ତ ପତିତ ଜମିକୁ ଯଦି ବିନିଯୋଗ କରି ପାରିବା ତେବେ ଦେଶରେ ଖାଦ୍ୟସମସ୍ୟା ଏତେ ଉତ୍କଟ ହୋଇ ନଥାନ୍ତା ?

ହଁ, ତାହା ସତ !! ତପନ ତା ବନ୍ଧୁର ଗମ୍ଭୀର ମୁହଁକୁ ଚାହିଁ ସଂକ୍ଷିପ୍ତ ଉତ୍ତର ଦେଲା

ତେବେ ଆମର ଭୁଲ ରହିଲା କେଉଁଠି ?

ଯା ଫଳରେ ଆଜି ଦିନକୁ ଦିନ ଲୋକସଂଖ୍ୟା ହୁ ହୁ ବଢ଼ି ଚାଲିଛି । ଏଣେ ଦିନକୁ ଦିନ ଉତ୍କଟ ଖାଦ୍ୟ ସମସ୍ୟା ଦେଖା ଦେଉଛି । ଯା ଫଳରେ ଅନାହାର, ଅର୍ଦ୍ଧାହାରରେ ଦେଶର ଲକ୍ଷ ଲକ୍ଷ ଲୋକ ଏବେ ବି ଜୀବନ ଅତିବାହିତ କରି ଚାଲିଛନ୍ତି ।

ଏତକ କହି ମଧୁ, ତା ବନ୍ଧୁର ଉଜ୍ଜ୍ୱଳ ମୁହଁକୁ ଅନାଇ ରହିଲା ।

ତପନ ତା ବନ୍ଧୁର ଏଭଳି ପ୍ରଶ୍ନରେ ବିଶେଷ ଖୁସୀ ହୋଇ କହିଲା । ତୁଚ ଦେଖିଲୁ ଆମେ ଆଜି ପଚାଶ ଏକରରୁ ଊର୍ଦ୍ଧ୍ୱ ଜମି ଯାହା ଅକର୍ମଣ୍ୟ ଅବସ୍ଥାରେ ଦୀର୍ଘ କେତେବର୍ଷ ହେବ ପଡ଼ି ରହିଛି, ଯେଉଁଠି କିଛି ଉତ୍ପାଦନ ହୋଇ ପାରିବ ନାହିଁ ବୋଲି, ତା ପାଇଁ ସମୟ ଅର୍ଥ ଅଯଥା ଖର୍ଚ୍ଚ କରିବାକୁ ମଧ୍ୟ ଲୋକେ ଚାହୁଁନାହାନ୍ତି । ଅଥଚ ଆମେ ସେହି ଜମିରୁ ଅର୍ଥକାରୀ ଫସଲ ଉତ୍ପାଦନ କରି ଏ ଗାଁର ତଥା ପାଖଆଖ ଗାଁର ବହୁ ଯୁବକ, ଶିକ୍ଷିତ ଅର୍ଦ୍ଧଶିକ୍ଷିତ ବେକାର ଲୋକଙ୍କୁ କର୍ମନିଯୁକ୍ତି ଦେବାପାଇଁ ଆମେ ଅଣ୍ଟାଭିଡ଼ ବାହାରି ପଡ଼ିଛୁ ଯାହା ଅନ୍ୟପାଇଁ ଅସମ୍ଭବ ତାକୁ ଆମେ ଆଜି ନୂତନ ଉଦ୍ୟମରେ ସମ୍ଭବ କରିବା ପାଇଁ ବଦ୍ଧ ପରିକର । ତା ମନରେ ଏକ ପ୍ରକାର ଦୃଢ଼ତା ଫୁଟି ଉଠିଲା ।

ସେ ତାର ବନ୍ଧୁର ପିଠିରେ ହାତ ରଖି କହିଲା । ଏଭଳି ଆମ ଦେଶରେ ଲକ୍ଷଲକ୍ଷ ଏକର ଜମି କିଛି ଉତ୍ପାଦନ ନ ହୋଇ ପଡ଼ି ରହିଛି । ଏଣେ ଆମେ ଖାଦ୍ୟଅଭାବ ଅନାଟନ ମଧ୍ୟରେ କାଳାତିପାତ କରୁଛୁ ଏହି ପତିତ ଜମିରୁ ଉତ୍ପାଦନ ହେଲେ ଦେଶର ଅର୍ଥନୈତିକ ରୂପରେଖ ବଦଳିଯିବ ଏବଂ ଦେଶର ବହୁ ଯୁବକ କର୍ମନିଯୁକ୍ତି ପାଇ ଆତ୍ମନିର୍ଭରଶୀଳ ହୋଇ ପାରିବେ ।

ମଧୁ ତା ବନ୍ଧୁର କଥାକୁ ମନଦେଇ ଶୁଣୁଥିଲା ।

ସେ କହିଲା ।

ଆଜି ଯେଉଁମାନେ ସ୍କୁଲ, କଲେଜରେ ପାଠ ପଢ଼ିଲେ ସେମାନେ ଚାଷ ଜମିକୁ ଯିବାକୁ ନାକ ଟେକିଲେ । ଏଣେ ସରକାର ଚାକିରୀ ଯୋଗାଇବା ସମ୍ଭବପର ହୋଇ ପାରୁନାହିଁ । ତେଣୁ ବେକାର ସମସ୍ୟା ହୁ ହୁ ବଢ଼ି ଚାଲିଛି । ଜନ ଅସନ୍ତୋଷ ବୃଦ୍ଧି ପାଉଛି । ସାମାଜିକ ବିଶୃଙ୍ଖଳା ଦେଖା ଦେଇଛି !!!

ବେକାର ସମସ୍ୟା ଆମ ସାମାଜିକ ଜୀବନରେ ଅଶାନ୍ତି ଏବଂ ଉତ୍ତେଜନାର ମୂଳ କାରଣ ହୋଇ ଯାଇଛି । ତପନ କହିଲା, ଶ୍ରମ ପ୍ରତି ବିମୁଖତା ହେଉଛି ଏହାର ମୂଳ-କାରଣ । ପିଲାଟି ଦିନରୁ କାମ କରିବା ପାଇଁ, ପରିଶ୍ରମ କରି ଉପାର୍ଜନ କରିବା ପାଇଁ ସ୍କୁଲ କଲେଜରେ ବାସ୍ତବ ଶିକ୍ଷାଦେଇ ପାରିଲୁ ନାହିଁ । ଫଳରେ ଲୋକେ ଶିକ୍ଷିତ ହେଲେ ଏକ ସହଜ ଉପାୟ ଚାକିରୀ କରିବା । ଯେଉଁଠି ବସି, ଆରାମରେ ମାସକ ଦରମା ଖଣ୍ଡିକ ମିଳିଯିବ ?

ଏହା ଦେଖିଲା ପରେ ପରିଶ୍ରମ କରି, ଖଟି, ମେହେନତ କରି ଉପାର୍ଜନ କରିବା ପାଇଁ ସେହି ଶିକ୍ଷିତ ଯୁବକ ମନ କାହିଁକି ବଳାଇବ ?

ତପନ ଯୁକ୍ତି ଛଳରେ କହିଲା, ଦେଶରେ ଅନେକ ସମସ୍ୟା ରହିଛି । ତେବେ ତାକୁ ସମାଧାନ ନ କଲେ ସମସ୍ୟା ବଢ଼ିବ ସିନା କମିବ ନାହିଁ ?

ମଧୁ ବ୍ୟଗ୍ରତା ପ୍ରକାଶ କରି କହିଲା, ତେବେ ଆମେ କାହାକୁ ପ୍ରାଧାନ୍ୟ ଦେଇ କାର୍ଯ୍ୟପନ୍ଥା ଗ୍ରହଣ କରିବା ।

ତପନ ଟିକିଏ ଗମ୍ଭୀର ହୋଇ କହିଲା । ଦେଶରେ ବହୁଲୋକ ଶିକ୍ଷାର ଆଲୁଅ ପାଇପାରି ନାହାନ୍ତି । ଲୋକର ମାନସିକ ଚିନ୍ତା ବିକାଶିତ ନହେଲେ ସେ କୌଣସି ପ୍ରଗତୀ ମୂଳକ କାର୍ଯ୍ୟ କରିପାରେ ନାହିଁ । ଅନ୍ଧବିଶ୍ୱାସ, କୁସଂସ୍କାର ଦୂର ହୋଇ ପାରିବନାହିଁ ।

ଖାଦ୍ୟ ସମସ୍ୟା ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ମୌଳିକ ସମସ୍ୟା ତାର ସମାଧାନ ଆଜି ଅପରିହାର୍ଯ୍ୟ ହୋଇ ପଡ଼ୁଛି । ବିଗତ ବର୍ଷ ମାନଙ୍କରେ ଅର୍ଥନୈତିକ ପ୍ରଗତୀ ଯୋଗୁଁ ଦେଶର ଅନେକ ଉନ୍ନତି ହୋଇଛି ।

କୃଷି ପ୍ରଧାନ ଦେଶ ହିସାବରେ ଅନେକ ଲୋକ କୃଷି ଉପରେ ନିର୍ଭରଶୀଳ । ମାତ୍ର କୃଷି ଏକ ବ୍ୟବସାୟ ନହୋଇ ଜୀବନର ଏକ ଧାରା ରୂପେ ପରିଗଣିତ ହୋଇଛି । ଆମକୁ ଏହା ଏକ ବ୍ୟବସାୟ ରୂପେ ପରିଗଣିତ କଲେ ଅନେକ ଉନ୍ନତି ହୋଇ ଉପାର୍ଜନ ଅଧିକ ହୋଇ ପାରିବ । ମଧୁ ତା ବନ୍ଧୁର କଥାକୁ ତନ୍ମୟ ହୋଇ ଶୁଣୁଥିଲା । ଚାଷକୁ ବ୍ୟବସାୟ ଦୃଷ୍ଟିକୋଣରୁ ବିଚାର କରି, କେତେ ଅର୍ଥ ବିନିଯୋଗ କରି କେତେ ଅର୍ଥ ଲାଭବାନ ହେଲେ, ସେଥିପ୍ରତି ବିଶେଷ ଗୁରୁତ୍ୱ ଦେବା ଆବଶ୍ୟକ । ନହେଲେ ଏହି ବ୍ୟୟ ବହୁଳ ସମାଜରେ ତାଳ ଦେଇ ଆଗେଇବା ସମ୍ଭବ ହେବନାହିଁ !!

ମଧୁ ଟିକିଏ ଉଦାସ ହୋଇ କହିଲା ।

ସମସ୍ତ ପ୍ରଗତି ସତ୍ତ୍ୱେ କେଉଁଠି କିଛି ଆମର ଭୁଲ ରହି ଯାଉଛି, ଯା ଫଳରେ ବିକାଶ ସାଧାରଣ ସ୍ତରକୁ ପହଂଚି ପାରୁନାହିଁ । ଯୋଜନା ସହିତ ଜନସାଧାରଣଙ୍କୁ ସମ୍ପୃକ୍ତ କରଯାଉ ନାହିଁ । ତେଣୁ ପ୍ରତ୍ୟକ୍ଷ ସୁଫଳ ମିଳିପାରୁ ନାହିଁ !!

ମଧୁର ଯୁକ୍ତିରେ ତପନ ଉତ୍ସାହଗତ ହୋଇ କହିଲା । ଶିଳ୍ପ ଏବଂ କୃଷିସମନ୍ୱୟ ରଖାକରି ଅଗ୍ରଗତି କରିବା କଥା । ମାତ୍ର ଶିଳ୍ପ ତୁଳନାରେ କୃଷି ବହୁ ପଛରେ ପଡ଼ିରହିଛି । ଆମେ ଅତ୍ୟାଧୁନିକ ଯନ୍ତ୍ରପାତିର ବ୍ୟବହାର କରି କୃଷି କ୍ଷେତ୍ରରେ ବିପ୍ଳବ ଆଣିବୁ ବୋଲି ଯାହା ଭାବିଥିଲୁ ତାହା ଆଜି ସମ୍ଭବପର ହୋଇପାରି ନାହିଁ ।

ମଧୁ ଟିକିଏ ଚିନ୍ତାକରି କହିଲା ।

ପାଶ୍ଚାତ୍ୟ ଦେଶ ମାନଙ୍କରେ ବିଶେଷତଃ କୃଷି କ୍ଷେତ୍ରରେ ଅତ୍ୟାଧୁନିକ କୃଷି ଯନ୍ତ୍ରପାତି ପ୍ରୟୋଗ କରି ଯେତେ ଶ୍ରମିକ ନିୟୋଜିତ ହୋଇଥାନ୍ତି, ଭାରତବର୍ଷରେ ତାର ଚାରିଗୁଣ ଶ୍ରମିକ ନିୟୋଜିତ ହୋଇଥାନ୍ତି । ମାତ୍ର ଉତ୍ପାଦନ ସେହି ଅନୁପାତରେ ଆମର ବହୁତ କମ୍ । ଏହାହିଁ ଆମ ଦୁର୍ଗତିର ମୂଳକାରଣ ନୁହକି ??

ମଧୁର ଯୁକ୍ତିରେ ଟିକିଏ ବିସ୍ମୟ ପ୍ରକାଶ କରି ତପନ କହିଲା । ସମୟ ଏବଂ ଶକ୍ତିର ବହୁଳ ଅପଚୟ ବାସ୍ତବିକ ଚିନ୍ତାର ବିଷୟ । ତେବେ ଆମକୁ ଆମର ପରିବେଶକୁ ଖାପ ଖୁଆଇ ମାନବ ସମ୍ବଳର ସଦୁପଯୋଗ ସହ ବୈଜ୍ଞାନିକ ପ୍ରଣାଳୀରେ ଚାଷକଲେ ଆମେ ମଧ୍ୟ ବର୍ତ୍ତମାନ ଉତ୍ପାଦନଠୁ ଦୁଇ, ତିନିଗୁଣ ଅଧିକ ଉତ୍ପାଦନ କରିବା ପାଇଁ ସକ୍ଷମ ହୋଇ ପାରିବା । ମଧୁ ତୁ କହୁଥିଲୁ ନା, ସମସ୍ତ ପ୍ରଗତି ସତ୍ତ୍ୱେ ଆମର କେଉଁଠି ଭୁଲ ରହି ଯାଇଛି, ଯା ଫଳରେ ଆମର ବିକାଶ ତଳ ସ୍ତରକୁ ପହଂଚି ପାରୁନାହିଁ । ହଁ ଭାଇ ! ମଧୁ ସମ୍ମତି ଜଣାଇ କହିଲା । ଭାରତର ଅର୍ଥନୈତିକ ପ୍ରଗତି ବିଶେଷତଃ ମଧ୍ୟବିତ୍ତ ଶ୍ରେଣୀ ଲୋକଙ୍କୁ ଉପକୃତ କରି ପାରିଛି ।

ଯେଉଁ ନିଃସହାୟ ନିଷ୍ପେସିତ, ନିଃସମ୍ବଳ ବ୍ୟକ୍ତିମାନଙ୍କ ଉପକାର ପାଇଁ କାର୍ଯ୍ୟକ୍ରମ ଗଠନ କରଯାଇଛି ସେଥିରେ ଆମେ ସଫଳ ହୋଇ ପାରିନାହୁଁ । ଜାତୀୟ ଉତ୍ପାଦନ

ବୃଦ୍ଧି ପାଉଛି, ମାତ୍ର ଜନସାଧାରଣଙ୍କ ମଧ୍ୟରେ ସମବଣ୍ଟନ ହୋଇପାରିନାହିଁ । ବିଭିନ୍ନ ଶ୍ରେଣୀମଧ୍ୟେ ଅର୍ଥନୈତିକ ବୈଷମ୍ୟ କମିବା ସ୍ଥଳେ ବଢ଼ି ବଢ଼ି ଚାଲିଛି ।

ମଧ୍ୟମ ଶ୍ରେଣୀର ଲୋକଙ୍କ ଚାଲି ଚଳନରେ ଏକ ବିରାଟ ପରିବର୍ତ୍ତନ ପରିଲକ୍ଷିତ ହେଉଛି । ଜୀବନରେ କେବଳ ସୁଖ, ସମୃଦ୍ଧି ଉପଭୋଗ କରିବା ପାଇଁ ବ୍ୟାକୁଳତା ପ୍ରକାଶ ପାଉଛି । ଭୋଗ,ବିଳାଶ ପାଇଁ ମନ ଳାଳାୟିତ ।

ସ୍ୱଳ୍ପ ଆୟ ମଧ୍ୟରେ ନିଜ ଭୋଗ ଲାଳସାକୁ ମେଣ୍ଟାଇ ପାରୁନାହାନ୍ତି । ତେଣୁ ଦୁର୍ନୀତିରେ ଆଶ୍ରୟ ନେବାକୁ ବାଧ୍ୟ ହେଉଛନ୍ତି ।

ମଧୁ ତପନର ଭାବ ବିହ୍ୱଳ ମୁହଁକୁ ଅନାଇ ରହିଥାଏ । ସତେ ଯେପରି ତାମୁହଁରୁ ଏକ ପ୍ରକାର ଜ୍ୟୋତି ପରିସ୍ଫୁଟ ହେଉଥାଏ ।

ଅର୍ଥ ଏବଂ କ୍ଷମତା ଲିପ୍ସା ଆଜି ସମଗ୍ର ଦେଶରେ ଏକ ଦୁର୍ନୀତିମୟ ପରିବେଶ ସୃଷ୍ଟି କରିଛି ।

ଗ୍ରାମାଞ୍ଚଳ ଓ ସହରାଞ୍ଚଳ ମଧ୍ୟରେ ଅର୍ଥନୈତିକ ତାରତମ୍ୟ ବଢ଼ି ବଢ଼ି ଚାଲିଛି ।

ଜନସାଧାରଣଙ୍କ ଆଶା ଆକାଂକ୍ଷାକୁ ପୂରଣ କରିବା ପାଇଁ ଆଜି ବାସ୍ତବ କାର୍ଯ୍ୟକ୍ରମର ଆବଶ୍ୟକତା ରହିଛି ।

ତପନ ଭାବ ବିହ୍ୱଳ ହୋଇ କହି ଚାଲିଥାଏ ।

ଜାତୀୟ ନୀତିର ପୁନଃ ନିର୍ଣ୍ଣୟର ଆବଶ୍ୟକତା ଦେଖାଦେଇଛି ।

ମଧୁ ଆଗ୍ରହରେ ତାର ହୃଦୟର ଅକାଟ୍ୟ ଯୁକ୍ତି ତନ୍ମୟ ହୋଇ ଶୁଣୁଥାଏ ।

ବିକାଶଶୀଳ ରାଷ୍ଟ୍ରରେ ସାଧାରଣ ଲୋକଙ୍କ ଚାହିଦାକୁ ଚାହିଁ ଯୋଜନା ପ୍ରସ୍ତୁତ କରାଯାଉଛି । ମାତ୍ର ତୋ କହିବା ଭଳି ଯାହା ନିରାଟ ସତ୍ୟ, ଆମର ଭୁଲ କାର୍ଯ୍ୟକାରୀ ପଦ୍ଧତି ଯୋଗୁଁ ଲକ୍ଷ ହାସଲ ହୋଇ ପାରୁନାହିଁ ।

ଯେଉଁମାନଙ୍କ ଉପରେ ଏ ଗୁରୁ ଦାୟିତ୍ୱ ରହିଛି, ସେମାନଙ୍କ ଆନ୍ତରିକତା, ନିଷ୍ଠାର ଅଭାବ ଫଳରେ ଆମେ ଆମ ଲକ୍ଷ୍ୟ ହାସଲରେ ସକ୍ଷମ ହୋଇ ପାରିନାହୁଁ ।

କାଗଜ କଲମରେ ଆମେ ଆମ ଉଦ୍ଦେଶ୍ୟକୁ ପ୍ରତିପାଦିତ କରିବାରେ ବ୍ୟସ୍ତ । ମାତ୍ର ବାସ୍ତବତାର ବହୁ ଦୂରକୁ ଆମେ ଚାଲିଯାଉଛୁ ।

ତପନର କଥା ଶୁଣି ମଧୁ, ତା ମନର ବ୍ୟଗ୍ରତାକୁ ପ୍ରକାଶ କରି କହିଲା, ସେଥିପାଇଁ ଆନ୍ଦୋଳନ ଦରକାର, ଜନଜାଗରଣ ଦରକାର ।

ଆବଶ୍ୟକ ହେଲେ ତାପାଇଁ ବିପ୍ଳବ ଦରକାର ।

ତପନ, ମଧୁର ଯୁକ୍ତିକୁ ଶୁଣି, ଉବ ପ୍ରବଣ ନ ହୋଇ କହିଲା ।

ଆନ୍ଦୋଳନ, ଜାଗରଣ, ବିପ୍ଳବ ସବୁକିଛି ହୋଇପାରେ । ଏହା ଏକ ସାମୟିକ ଉତ୍ତେଜନା । ଯେତେଦିନ ପର୍ଯ୍ୟନ୍ତ ମଣିଷ ଆତ୍ମ ସଚେତନ ହୋଇ ପାରିନାହିଁ, ଏଭଳି ବିପ୍ଳବ କ୍ଷଣିକ ଉତ୍ତେଜନାରେ ଆରମ୍ଭ ହୋଇ ଶେଷ ହୋଇ ଯାଇଥାଏ ।

ଯେବେ ମନ ଏବଂ ହୃଦୟ ଭିତରେ ବିପ୍ଳବ ସୃଷ୍ଟି କରଯାଇ ପାରିବ ତେବେ ସେ ବିପ୍ଳବ ଏକ କ୍ରାନ୍ତିକାରୀ ବିପ୍ଳବ ହୋଇ ସମାଜର ହିତ ସାଧନ କରି ପାରିବ ।

ଦେଶ ପରାଧୀନତା ଶୃଙ୍ଖଳାରୁ ମୁକ୍ତ ହେଲା, ସେଥିପାଇଁ ସେହି ମହାନ କର୍ମବୀରଙ୍କ ତ୍ୟାଗ, ଏବଂ ଜନ ସାଧାରଣଙ୍କୁ ସଚେତନ କରଯାଇ, ଆତ୍ମତ୍ୟାଗ ବଳରେ-ଆଜି ଯାହା ଅନ୍ୟ ଦେଶ ପାଇଁ ଅସମ୍ଭବ ତାକୁ ଆମେ ସମ୍ଭବ କରି ପାରିଛୁ ।

ଯେଉଁ ମାନଙ୍କ ଆତ୍ମବଳୀ ଦାନରେ ଆମେ ଆଜି ଯାହା ପାଇଛୁ, ତାକୁ ଏଭଳି ଉଚ୍ଛୃଙ୍ଖଳା, ଅରାଜକତା ଭିତରକୁ ଠେଲି ଦେଇ ନୀରବ ଦ୍ରଷ୍ଟାହୋଇ ରହି ପାରିବୁ ନାହିଁ ।

ମଧୁ ତା ବନ୍ଧୁର ଦିପ୍ତିମୟ ଆଖିକୁ ଅନାଇ, ତାର ଅନ୍ତର୍ନିହିତ ଭବକୁ ଉପଲବ୍ଧି କରି ପାରିଲା । ମଧୁ ପୁଣି ପ୍ରଶ୍ନକଲା, ଭଇ, ଦିନକୁ ଦିନ ଆମର ଅଶାନ୍ତି ବଢ଼ି ବଢ଼ି ଚାଲିଛି । ଏହାର ଯଦି ପରିସମାପ୍ତି ନ ଘଟେ ତେବେ ବିରାଟ ଜନ ବିସ୍ଫୋରଣ ଘଟି ସମାଜକୁ ଧ୍ୱଂସ ବିଧ୍ୱଂସ କରିଦେବ ।

ଅଶାନ୍ତି ସହ ଅଶାର ମଧ୍ୟ ଆଜି ଅନ୍ତ ନାହିଁ ।

ତପନ ତା ବନ୍ଧୁକୁ ଚାହିଁ କହିଲା ।

ଆୟ ତୁଳନାରେ ଅଧିକ ଖର୍ଚ୍ଚ କରିବା ପାଇଁ ଲୋକଙ୍କ ଭିତରେ ପ୍ରବଳ ବ୍ୟଗ୍ରତା ଦେଖା ଦେଇଛି । ଅନ୍ୟକୁ ଅନୁକରଣ କରିବାରେ ଆମେ ବ୍ୟାକୁଳ ହୋଇ ପଡ଼ୁଛୁ । ଆମ ପଡ଼ଶାଘରେ ରଙ୍ଗିନ ଟି:ଭି ଲାଗିଲାଣି, ଆମଘରେ କାହିଁକି ଲାଗିବ ନାହିଁ ତାଙ୍କ ଘରେ ବଜାଜ୍ ସ୍କୁଟର ଅଛୁ, ଆମର କାହିଁକି ଲୁନା ରହିବ ?

ଶିଳ୍ପଜାତ ଦ୍ରବ୍ୟ ଏବଂ କୃଷିଜାତ ଦ୍ରବ୍ୟ ମଧ୍ୟରେ ମଧ୍ୟ ବିରାଟ ପାର୍ଥକ୍ୟ ରହିଯାଇଛୁ । ଭରତୀୟ ଚାଷୀ କୃଷିଜାତ ଦ୍ରବ୍ୟରୁ ଯଥେଷ୍ଟ ଲାଭ ପାଇପାରୁନାହିଁ । ଅନେକ କ୍ଷୁଦ୍ର ଚାଷୀ, ନାମମାତ୍ର ଚାଷୀରୂପେ ପରିଗଣିତ ହେଲେଣି । ଦିନକୁ ଦିନ ସେମାନଙ୍କ ଆୟ କମି କମି ଯାଉଛୁ । ଏଣେ ପୁଅ,ଝିଅ ବଢ଼ି ବଢ଼ି ଯାଉଛନ୍ତି ଖର୍ଚ୍ଚ ମଧ୍ୟ ବଢ଼ି ବଢ଼ି ଚାଲିଛି ।

କୃଷି ଶ୍ରମିକ ବର୍ଷସାରା କାମ ପାଇ ପାରୁନାହାଁନ୍ତି । ତେଣୁ ଆଶାନ୍ତିର ସ୍ରୋତ ମଧ୍ୟ ବଢ଼ି ବଢ଼ି ଚାଲିଛି । ପ୍ରଗତୀ ହେଉଛି ମାତ୍ର ସମତା ରକ୍ଷା ହୋଇ ପାରୁନାହିଁ । ତେଣୁ ସମାଜରେ ବିଭ୍ରାଟ ଦେଖା ଦେଉଛି ।

ପୃଥିବୀରେ ଯେତେ ଅଶାନ୍ତି ଓ ବିଶୃଙ୍ଖଳା ଦେଖା ଦେଇଛି ତାରି ମୂଳରେ ରହିଛି ଦାରିଦ୍ର୍ୟ, ଅଭାବ, ଅସନ୍ତୋଷ । ଖାଦ୍ୟ ଉତ୍ପାଦନକୁ କେନ୍ଦ୍ର କରି ଆର୍ଥିକ ଅଭିବୃଦ୍ଧି ଘଟାଇ ଦାରିଦ୍ର୍ୟ ବିରୁଦ୍ଧରେ ଆନ୍ତରିକ ଉଦ୍ୟମ ହେବା ଉଚିତ । ଆଜି ପର୍ଯ୍ୟନ୍ତ ଆମର ମୌଳିକ ସମସ୍ୟା ସମାଧାନ ହୋଇ ପାରିଲା ନାହିଁ ?

ମଧୁ, ତାର ବନ୍ଧୁର କଥାଶୁଣି ଉତ୍ତେଜିତ ହୋଇ କହିଲା ।

ତେବେ ଏଥିପାଇଁ ଦାୟୀ କିଏ ?

ତପନ ମୁହଁରେ ଗମ୍ଭୀରତା ଫୁଟି ଉଠିଲା । ଟିକିଏ ସମୟ ଭାବି କହିଲା ।

ମଧୁ ତୁ ଭଲ ଭାବରେ ଜାଣୁ ଆଜି ଦେଶରେ ଆମେ ସମସ୍ତେ ଅନ୍ୟ ଜଣକ ଉପରେ ଦୋଷ ଲଦିଦେଇ ଆମ ନିଜ ଦାୟିତ୍ୱରୁ ଆମେ ଓହରି ଯାଉଛୁ । ଦୋଷ ଆମେ କାହା ଉପରେ ନଦେଇ ଆମେ ଆମର ସମସ୍ୟା ପ୍ରତି ସଚେତନ ହୋଇ ପାରିବା ଏବଂ ତାର ସମାଧାନ ପାଇଁ ଆନ୍ତରିକ ସହଯୋଗ କରିବା ତେବେ ଦେଶର ରୂପରେଖ ବଦଳିଯିବ ।

ଯେତେଦିନ ପର୍ଯ୍ୟନ୍ତ ପ୍ରତ୍ୟେକ ମଣିଷ ଆତ୍ମ ସଚେତନ ହୋଇ ପାରି ନାହାନ୍ତି ସେତେଦିନ ପର୍ଯ୍ୟନ୍ତ ଆମେ ଅନ୍ୟ ଉପରେ ଦୋଷ ଲଦିଦେଇ ନିଜକୁ ମୁକ୍ତ ରଖିପାରୁଁ ମାତ୍ର ବାସ୍ତବିକ ତାହା ଆମ ସମସ୍ୟାର ସମାଧାନର ପ୍ରକୃତ ପନ୍ଥା ନୁହେଁ ।

ତାହା ଏକ ପଳାୟନ ପନ୍ଥି ମନୋଭାବର ପରିଚୟ ହୋଇପାରେ ।

ତପନ ତା ବନ୍ଧୁର ସରଳ ସୁନ୍ଦର ମୁହଁକୁ ଚାହିଁ କହିଲା । ମଧୁ ତୁ ତ ନିଜେ ଦେଖିଲୁ ଘର ଘର ବୁଲି ବହୁ ଲୋକଙ୍କ ସହ ସାକ୍ଷାତ କରି ସେମାନଙ୍କ ଅକର୍ମଣ୍ୟ ଜମିସବୁ ସଂଗ୍ରହ କରି ଆଣିଲୁ । ସେମାନେ ମଧ୍ୟ କେତେ ଆଗ୍ରହରେ ଆମକୁ ଜମି ପ୍ରଦାନ କଲେ ସମୁହ ହିତ ପାଇଁ ।

ମଧୁ ତା ବନ୍ଧୁର ଉକ୍ତି ସହ ଏକମତ ହୋଇ କହିଲା, ସେଥିପାଇଁ ନେତୃତ୍ୱ ଏବଂ ପରିବେଶର ଆବଶ୍ୟକତା ରହିଛି. ତୁମେ କଣ ତାକୁ ନାହିଁ କରି ପାରିବ ?

ମୁଁ ମାନୁଛି, ତପନ କହିଲା ।

ଯେକୌଣସି କାର୍ଯ୍ୟ ସଫଳତା ପାଇଁ ବାତାବରଣର ମଧ୍ୟ ଆବଶ୍ୟକତା ରହିଛି ।ଆମ ପ୍ରତି ଲୋକଙ୍କ ବିଶ୍ୱାସ, ଆମକୁ ଆଗେଇବାରେ ସାହାଯ୍ୟ କରିଛି । ତେଣୁ ସମୁହ କାର୍ଯ୍ୟ

ସଂପାଦନ ପାଇଁ ଦୃଢ଼ତାର ସହ ଉପଯୁକ୍ତ ନେତୃତ୍ୱ ବଳରେ ପରିବେଶ ସୃଷ୍ଟି କରି ବହୁ ସମସ୍ୟାର ସମାଧାନ କରଯାଇ ପାରିବ । ତେବେ ଯାଇ ଦେଶର ଅର୍ଥନୈତିକ ରୂପ-ରେଖ ବଦଳିଯିବ । ଏଥିପାଇଁ ଆମକୁ ସକ୍ଷମତା ଏବଂ କଠୋରତା ଅବଲମ୍ବନ କରିବାକୁ ପଡ଼ିବ ।

ଲୋକଙ୍କ ମନରେ କାମ କରିବା ଉତ୍ସାହ ସୃଷ୍ଟି ନ ହେଲେ ବ୍ୟକ୍ତିଗତ ଜୀବନ କ୍ଷେତ୍ର ଅଥବା ସାମଜିକ ଜୀବନରେ କ୍ଷେତ୍ର ପ୍ରଗତୀ କେବେ ସମ୍ଭବପର ହୋଇପାରେ ନା ।

ପରିବର୍ତ୍ତନର ବେଗ ଦ୍ରୁତ ଗତିରେ ହୋଇ ଚାଲିଛି ।

ମାତ୍ର ଆମର ମନୋବୃତ୍ତି ପୂର୍ବଭଳି ଜଟିଳ ଏବଂ ସ୍ଥାଣୁ ଅବସ୍ଥାରେ ପଡ଼ି ରହିଛି । ତେଣୁ ଯୁଗ ଅନୁଯାୟୀ ତାଳ ଦେଇ ଗତିକରି ପାରୁ ନାହୁଁ । ଏହାହିଁ ଆମର ସବୁଠୁଁ ବଡ ଦୁର୍ଯୋଗ ।

ତପନର ମୁହଁ ଉଜ୍ଜଳ ଦେଖା ଦେଉଥାଏ ।

ତପନ ଗୋଟିଏ ପରେ ଗୋଟିଏ ଦାୟିତ୍ୱ ଆଜି ମୁଣ୍ଡାଇବାରେ ଲାଗିଛି । ତାର ପରିଶର ଦିନକୁ ଦିନ ବଢ଼ି ଚାଲିଛୁ । ଏ ସମସ୍ତ କାର୍ଯ୍ୟପାଇଁ ମନୋବଳ ଦରକାର । ତପନଠି ସେହିଶକ୍ତି ସେହି ମନୋବଳ ପରିଲକ୍ଷିତ ହୋଇଛୁ ।

ତେଣୁ ଦିନକୁ ଦିନ ତାପ୍ରତି ସମସ୍ତଙ୍କ ବିଶ୍ୱାଶ ବଢ଼ି ଚାଲିଛୁ । ଯେଉଁ ବ୍ୟକ୍ତିଠାରେ ଧୈର୍ଯ୍ୟ, ସୁକ୍ଷ୍ମଦୃଷ୍ଟି, ବୁଦ୍ଧି ଓ କୁଶଳତା ଥାଏ । ସେ କେବେ ଅକୃତ କାର୍ଯ୍ୟ ହୁଏନାହିଁ । ଠିକ୍, ସେହି ଭଳି ପୁରୁଷର ଦକ୍ଷତା ନେଇ ଆଜି ତପନ ଅଣ୍ଟା ଭିଡ଼ ବାହାରିଛୁ ।

ଯେଉଁଠି ଉଦ୍ଦେଶ୍ୟ ମହତ୍ ଏବଂ କାର୍ଯ୍ୟପନ୍ଥା ସମସ୍ତଙ୍କ ଗ୍ରହଣୀୟ ସେଠି ଉଦ୍ଦେଶ୍ୟ ସାଧନରେ କୌଣସି ପ୍ରତି ବନ୍ଧକ ଦେଖା ଦେଇନଥାଏ ।

ଯେଉଁଠି ଉଦ୍ଦେଶ୍ୟ ମହତ୍ ମାତ୍ର କାର୍ଯ୍ୟପନ୍ଥା ହୀନ ସେଠି ମହତ୍ ଉଦ୍ଦେଶ୍ୟ କେବେ ସାଧିତ ହୋଇନଥାଏ । ଯଦି ହୁଏ ତାହା କ୍ଷଣସ୍ଥାୟି ।

ତପନ ନିଃସ୍ୱାର୍ଥ ଭାବରେ ତାର କାର୍ଯ୍ୟପନ୍ଥାରେ ଆଗେଇ ଚାଲିଛୁ ।

ଯେଉଁମାନେ ତାକୁ ଅବିଶ୍ୱାସ ହେୟଜ୍ଞାନ କରୁଥିଲେ ଆଜି ସେମାନଙ୍କୁ ଏକାଠି କରି ଅଂଚଳର ସାମାଜିକ ଏବଂ ଅର୍ଥନୈତିକ ରୂପ ରେଖ ବଦଳାଇ ଦେଇ ପାରିଛୁ । ଯେଉଁ-ମାନେ ଦୋ ଦୋ ପାଞ୍ଚ ହେଉଥିଲେ ସେମାନେ ଆଜି ତା ସହିତ କାନ୍ଧକୁ କାନ୍ଧ ମିଳାଇ ଦେଇଛନ୍ତି ।

କି ଯୁବକ, କି ବୁଢ଼ା, ଗାଁ ତଥା ପାଖ ଆଖ ଗାଁର ଅଗଣିତ ଲୋକଆସି, ଦେଖି, ଶୁଣି ତାଙ୍କୁ ସାହାର୍ଯ୍ୟ ସହଯୋଗ କରି ପ୍ରଗତିର ମହାନ୍ ସ୍ରୋତରେ ମିଶିବା ପାଇଁ ମନ ତାଙ୍କ ବ୍ୟାକୁଳ ହୋଇ ଉଠିଛି ।

ସମସ୍ତଙ୍କ ସହଯୋଗ ସତ୍ତ୍ୱେ କେତେକ କ୍ଷେତ୍ରରେ ପ୍ରତିବନ୍ଧକ ମଧ୍ୟ ଦେଖା ଦେଉଛି । କେତେକ ଲୋକ ଏଭଳି କାର୍ଯ୍ୟକୁ ନାପସନ୍ଦ କରୁଛନ୍ତି । ଖଳ ଲୋକମାନେ ଲୋକଙ୍କ ଭୁଲାଇ ମତାଇ ତତାଇ ତପନ ବିରୁଦ୍ଧରେ କୁତ୍ସାରଟନ କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହେଉନାହାନ୍ତି । ଏମାନେ ସବୁ ଠକ, ଭଣ୍ଡ, !!!

ମଧୁ, ନବ ଏବଂ ଅନ୍ୟ ଯୁବକ ମାନେ ତାଙ୍କ କଥାକୁ ଭ୍ରୁକ୍ଷେପ ନ କରି, ଅବା ସେମାନଙ୍କ ପ୍ରତି ଅବଜ୍ଞାଭାବ ପ୍ରକାଶ କରି ଆଗେଇବାକୁ ବାହାରିଲେ, ତପନ ସେମାନଙ୍କୁ ବାଧା ଦେଉଛି ।

ତାର ବନ୍ଧୁମାନଙ୍କୁ ବୁଝାଉଛି, ବିରକ୍ତଭାବ ପ୍ରକାଶ ନ କରିବାପାଇଁ ପ୍ରବର୍ତ୍ତାଉଛି !!

ଆମେ କଣ ଭୁଲ କରୁଛୁ, ଯାହା ଫଳରେ ସେମାନେ ଆମପ୍ରତି ଅସନ୍ତୋଷ ହେଉଛନ୍ତି । ତାହା ଆମେ ବୁଝିବା ଦରକାର ।

ମଧୁ ମନରେ ଅସନ୍ତୋଷ ଭାବ ପ୍ରକାଶ କରି କହିଲା, ଯୁକ୍ତି କରି ଏମାନଙ୍କୁ ଏପରି ବୁଝାଇ ଚାଲିଥିବ, ତେବେ ଆମେ ଆଉ ଆଗେଇ ପାରିବା ନାହିଁ । ଆମେ ଯଦି ଆଗକୁ ବଢ଼ିବାର ଅଛି ତେବେ ଏଭଳି ନିନ୍ଦୁକ ଗୋଷ୍ଠିକୁ ଆଡ଼େଇ ଆଗେଇବାକୁ ପଡ଼ିବ ।

ମଧୁ ଟିକିଏ ବିଚଳିତ ହୋଇ ତନପକୁ କହିଲା ।

ମୋହନ ବାବୁ ଭଳି ଲୋକ କେବେ ଆମକୁ ସାହାର୍ଯ୍ୟ କରିବେ, କେବେ ଆମକୁ ସହଯୋଗ ଦେଇ ପାରିବେ ?

କାହିଁକି ନୁହେଁ ???

ଆମେ ତାଙ୍କୁ ବୁଝାଇବାକୁ ପଡ଼ିବ । ଆମେତ କାହାର ଅନିଷ୍ଟ କରୁନାହୁଁ ?

ତପନ ଏତକ କହି ତାର ବନ୍ଧୁର ମୁହଁକୁ ଚାହିଁଲା ।

ମଧୁ ମୁହଁରେ ତାଚ୍ଛଲ୍ୟ ଭାବ ଖେଳାଇ କହିଲା ।

ଜେଇଁ ଶୋଇଥିବ ଯିଏ, ତାକୁ ଉଠାଇବ କିଏ ?

ଏମାନେ ହେଉଛନ୍ତି ଅବୁଝା ଗୋଷ୍ଠି ।

ଯେତେ ବୁଝାଇଲେ ମଧ୍ୟ ସେମାନେ ବୁଝିବେ ନାହିଁ ।

ସେମାନେ ଯାହା କରନ୍ତ ସବୁ ଠିକ୍ । ସେମାନେ ଯାହା ଭବନ୍ତ ଅନ୍ୟମାନେ ଭବି ପାରିବେ ନାହିଁ । ପାପ ଅର୍ଜିତ ଧନ ଗର୍ଭରେ ସେମାନେ ମଦମତ୍ତ ।

ଟଙ୍କା ଋଣ, ଧାନ ଲଗାଣ ଆଜି ବନ୍ଧ ହୋଇଗଲା ପରେ ଆମ ଉପରେ ସେମାନେ ରକ୍ତ ଋଉଳ ଦେଖାଉଛନ୍ତ ।

ତପନ କିନ୍ତୁ ନିରାଶ ହେଲନାହିଁ ।

ମଧୁକୁ ଉତ୍ତେଜିତ ହୋଇ ପଡ଼ିଥିବା ଦେଖି ତାକୁ ଶାନ୍ତ୍ୱନା ଦେବା ଛଳରେ କହିଲା ।

ଏମାନଙ୍କ ମତବାଦ ପ୍ରତି ସହନଶୀଳ ହେବା ଆମର କର୍ତ୍ତବ୍ୟ ।

ଏଥିରେ ଆମର କ୍ଷତି ଅପେକ୍ଷା ଲଭ ଅନେକ ।

ଆଜି ଯେ ବୁଝିବାକୁ ପ୍ରସ୍ତୁତ ନୁହେଁ, କାଲି ଅବା ଆରଦିନ ବୁଝିବାକୁ ନିଶ୍ଚୟ ଚେଷ୍ଟା କରିବ ।

ସାପ ଛୋଟ ହେଉକି ବଡ଼ ହେଉ ସେ ଯେପରି ବିଷଧର, ସେହିଭଳି ଅର୍ଥଲୋଭି ସରକାର ଛୋଟ ହେଉ ଅବା ବଡ଼ ହେଉ ସେହିଭଳି ମାରାତ୍ମକ ।ସେଥିରେ କୌଣସି ପ୍ରଭେଦ ଦେଖିବାକୁ ମିଳିବ ନାହିଁ ।

ଶୋଷଣ ଅତ୍ୟାଚାରର ଏମାନେ ଗୋଟିଏ ଗୋଟିଏ ପ୍ରତୀକ ।

ସେମାନଙ୍କ ମନ ସଦା ପାପରେ ଭରା । ପରର ମଙ୍ଗଳ ସେମାନେ କେବେ ଋହାଁନ୍ତ ନାହିଁ ।

ମଧୁ ଏତକ ବିରକ୍ତ ଏବଂ ଘୃଣାରେ କହିଲା ।

ତା ମନ ମୋହନ ବାବୁଙ୍କ ପ୍ରତି କେତେ ଦୂର ଅସନ୍ତୋଷ, ତାଙ୍କ କାର୍ଯ୍ୟ କଳାପ ପ୍ରତି ଘୃଣାରେ ତାରି ମନ ଭରି ଯାଇଥାଏ ।

ଉଭୟ ବନ୍ଧୁ ଭବ ବିହ୍ୱଳ ହୋଇ ପଡ଼ିଥାନ୍ତ । କଥାର ସୁଅ ଭିତରେ ଅନେକ କଥା ଆସି ପଡ଼ଯାଇଥାଏ । ବହୁ ସମସ୍ୟା ସେମାନେ ବସିରହି ଚିନ୍ତା କରୁଥାନ୍ତ ।

ତପନ ଦିର୍ଘ ଆଲୋଚନାରୁ ତା ମନରେ ନାନା ଭବାନ୍ତର ସୃଷ୍ଟି ହୋଇଥାଏ ।

ତାର ସହନଶୀଳତା, ଧୈର୍ଯ୍ୟ ତାକୁ ଆଗକୁ ବଢ଼ିବାରେ କୌଣସି ପ୍ରତି ବନ୍ଧକ ସୃଷ୍ଟି କରୁ ନଥାଏ ।

ଦେଶର ସମସ୍ୟା ଚିନ୍ତା କରୁ କରୁ ସେମାନଙ୍କ ନିଜ ସମସ୍ୟାରୁ ମାୟା ଜାଲରେ ଛନ୍ଦହୋଇ ପଡ଼ୁଥାନ୍ତ ।

ତପନ ମନେ ମନେ ହସି, ମଧୁକୁ କହିଲା ଦେଶର ଯୋଜନା ପ୍ରଗତୀ ସବୁ ଆଲୋଚନା କରୁଁ କରୁଁ ଆମେ ଆସି କେଉଁଠି ପହଞ୍ଚି ଯାଇଛୁଁ ??

ମଧୁ ମନରେ ହସ ଖେଳାଇ କହିଲା ।

ଭଇ ଆମେ କଣ ଦେଶର ସମସ୍ୟାର ବାହାରେ ?

ନାଁ । !!

ତପନ ଏକ ସଂକ୍ଷିପ୍ତ ଉତ୍ତର ଦେଲା ।

ମଧୁ ନୀରବରେ ତା ମୁହଁରେ ଦେଖା ଦେଇଥିବା ଭାବନାକୁ ଅନାଇ ରହିଲା ।

ତପନ ଗମ୍ଭୀର ହୋଇ କହିଲା,

ଆମେ ଯାହା କରୁଛୁଁ ତାହା ଠିକ୍ ବୋଲି ଭାବୁଛୁଁ, କିନ୍ତୁ ତାହା ଠିକ୍ କି ନୁହେଁ ଅନ୍ୟମାନେ ଚିନ୍ତା କରୁଥିବା, ସମାଲୋଚନା କରୁଥିବା ସତ୍ତ୍ୱେ ଆମେ ଆମର ସମୀକ୍ଷା, ନିରୀକ୍ଷା କରୁନାହୁଁ । ତେଣୁ ଆମର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରୁନାହୁଁ ।

ଅନ୍ୟକୁ ଦୋଷ ଦେଇ ଆମେ ନିର୍ଦ୍ଦୋଷ ବୋଲି ଭାବୁଛୁ । ଆମର ଦୂରଦୃଷ୍ଟି ହୀନତା ଅନ୍ୟର ଦୃଷ୍ଟିକୁ ଆସୁଥିବା ବେଳେ, ଆମେ ତାହା ଉପଲବ୍‌ଧି କରିପାରୁ ନାହିଁ !!

ଏହାହିଁ ଆଜି ଆମର ମୂଳ ସମସ୍ୟା ହୋଇ ଦେଖା ଦେଇଛି ।

ମଧୁ ତା ବନ୍ଧୁର କଥା ଆଜି ସ୍ପଷ୍ଟ ଉପଲବ୍‌ଧି କରିପାରିଲା । ତା ମନ ଏବଂ ହୃଦୟ କେତେ ବିଶାଳ, କେତେ ଉଦାର ତାର ଗଭୀରତା ଅନୁମାନ କରି ପାରୁନଥାଏ । ସେ ଯେତେ ଯେତେ ଭାବିବାକୁ ଲାଗିଥାଏ ସେତେ ସେତେ ତା ପ୍ରତି ଭକ୍ତି, ଶ୍ରଦ୍ଧା, ବଢ଼ି ବଢ଼ି ଚାଲିଥାଏ । ତାର ଅକାଟ୍ୟ ଯୁକ୍ତିରେ ମୁଣ୍ଡ ତାର ଆପେ ଆପେ ନଇଁ ଯାଉଥାଏ ।

ତପନ ତାର ବନ୍ଧୁର ଭାବ ବିହ୍ୱଳ ମୁହଁକୁ ଅନାଇ, ମନରେ ଦୃଢ଼ତା ଫୁଟାଇ କହିଲା ।

ଶାସକର ଦୃଢ଼ ମନୋବଳ, ସଂକଳ୍ପବଦ୍ଧ କାର୍ଯ୍ୟ ପଦ୍ଧତି, ଏବଂ ଜାଗ୍ରତ ଜନମତ ଉପରେ ଆଜି ଆମେ ଏ ଦେଶର ରୂପ ରେଖକୁ ବଦଳାଇ ଦେଇ ପାରିବୁଁ !!

ସମୟ ଅତି ବାହୀତ ହୋଇ ନାହିଁ । ଜାତୀୟ ଲକ୍ଷ ପୂରଣ ଦିଗରେ ଏବେ ମଧ୍ୟ ସେ ସୁଯୋଗ ଆମ ହାତରେ ରହିଛୁ !!

ତପନର ମନ, ଏବଂ ବାକ୍ୟର ଦୃଢ଼ତା ଦେଖି ମଧୁ ଆଖି ଯୋଡ଼କ ଆନନ୍ଦରେ ବିସ୍ଫାରିତ ହୋଇଗଲା ।

ସମୟ ବହୁତ ହୋଇ ଯାଇଥାଏ । ଦୁଇ ବନ୍ଧୁଙ୍କ ମନରେ ଅନେକ ପ୍ରଶ୍ନ ସୃଷ୍ଟି କରିଥାଏ ।

ତପନ ବସିବା ସ୍ଥାନରୁ ଉଠିପଡ଼ି, ମଧୁକୁ କହିଲା ।

ଆଜି ସମୟ ହୋଇଗଲାଣି, ଆମକୁ ପାଖ ଗାଁକୁ ଯିବାକୁ ପଡ଼ିବ । ମଧୁ ବସିବା ସ୍ଥାନରୁ ଉଠି ପଡ଼ିଲା ।

ଦୁହେଁ ସାଥି ହୋଇ ଆଗକୁ ଆଗକୁ ପାଦ ବଢ଼ାଇଲେ ।

ଚିନ୍ତିତ ଏବଂ ବିଷାଦ ଗ୍ରସ୍ତ ମନରେ କନକ ବସି ଭାବି ଚାଲିଛୁ ।

କଣ ସେ କରିବ ?

ଏଣେ ମା'ର ଦେହ ଦିନକୁ ଦିନ ଖରାପ ହୋଇ ଚାଲିଚୁ ।

ଜ୍ୱର କମିବାକୁ ନାହିଁ !!

ଖଇଫୁଟା ଜ୍ୱର ।

କନକ ଘଣ୍ଟା ଘଣ୍ଟା ତା ମା' ମୁଣ୍ଡ ପାଖରେ ବସିରହି, ପଟିଆକୁ କାଟି, ପଥରରେ ଛେଚି କପାଳରେ ଦେଉଥାଏ । ଜ୍ୱର ବାଉଳାରେ ତା ମା କେତେ କଣ କହି ଯାଉଥାଏ ।

ଉନ୍ନତିର କୌଣସି ଲକ୍ଷଣ ଦେଖା ଯାଉନାହିଁ ।

ତେଣେ ସେ ତପନକୁ କଥା ଦେଇଛି ।

ସେ ଯାଇ ତାଙ୍କୁ ସାହାର୍ଯ୍ୟ କରିବ । ବିଭିନ୍ନ ଗାଁର ମା ଭଉଣୀଙ୍କୁ ଶିକ୍ଷା ଦେବ ସେବା କରିବ ।

ଏଣେ ତାର ଜ୍ବଲନ୍ତିମା ଜମିଦାର ।

ସାହୁକାର ଲୋକଙ୍କ ହାତରେ ଘନ ଘନ ଖବର ପଠାଉଛୁ ।

ତପନ କଥାରେ ନ ପଡ଼ିବା ପାଇଁ । ଲୋକଙ୍କୁ ଭୁଲାଇ ମତାଇ ସେ କ'ଣ ଲଗାଇଛି ଗୋଟିଏ ପାହ୍ଲା ।

ସେଠିକି ଗଲେ ତା ଜୀବନ ଉପରେ ଆଂଚ ଆସିବ । ତା ମାନ ମହତ୍ୱରେ କଳଙ୍କ ଲାଗିବ ।

ଏମିତି କେତେ କଣ ଧମକ ଦେଇ ଖବର ପଠାଉଛି । ସେ ସେଥିପାଇଁ ଦୁଃଖ କରୁନାହିଁ ।

ବହୁ କଥା ସେ ଦେଖିଛି ସହିଛୁ । ସାହୁକାରର ମନ କଥା ମଧ୍ୟ ବୁଝି ସାରିଛି ।

ସେ ଗୋଟିଏ ଭଣ୍ଡ ।

ତେଣୁ ସେ ଭୟ କରିବାର କିଛି ନାହିଁ ।

ଯେତେବେଳେ ସେ ତପନ ଭାଇକୁ କଥା ଦେଇଛି ସେ ନିଶ୍ଚୟ ଯିବ ।

ମାତ୍ର ଯିବ କିପରି ?

ମା ଦେହ ଦିନକୁ ଦିନ ଖରାପ ହୋଇ ପଡ଼ୁଛୁ । ବିଛଣା ଛାଡ଼ି ତଳକୁ ଓହ୍ଲାଇଲେ ଛାତିକୁ ଚିପି ଦେଲା ଭଳି ହେଉଛି । ଦେହ ଥରୁଛୁ ମୁଣ୍ଡ ବୁଲାଉଛୁ ।

ପାଖରେ ତାର କେହି ସାହା ଭରସା ନାହିଁ ।

ଖୁଡ଼ କେତେବେଳେ ଆସି ଦେଖି ଯାଉଛନ୍ତି ।

ବଉଳ କେତେବେଳେ କେମିତି ଆସି କଥାବୁଝି ଚାଲି ଯାଉଛନ୍ତି । ଖରା ବେଳଟାରେ କିଛି ସମୟ ବସି ଯାଉଛନ୍ତି । ସେ ବି ଏକୁଟିଆ । ଘର କାମ ସାରି ତାଙ୍କ ମାଲିକ ଘର କାମ ନ କଲେ ନ ଚଳେ ।

ପେଟ ନ ହେଲେ ପୋଷି ପାରିବେ ନାହିଁ । ବାପ ବୁଢ଼ା । ଭଇ ତାଙ୍କ କେଉଁ କାମକୁ ନାହିଁ !!

ଖଟିଖିଆ ଲୋକ । ନିତି ଦିନ ନ ଖଟିଲେ ପେଟ ଅପୋଷା ରହିଯିବ ।

ତେଣୁ ବଉଳ ଆସି ତା ସହିତ ଦୁଇପଦ କଥା ହୋଇ ଚାଲି ଯାଉଛନ୍ତି ।

ତାଙ୍କୁ ଯିବାକୁ ହେବ !!

ସେ ଆସୁଛନ୍ତି ତାର ଦୁଃଖ ସୁଖ ବୁଝି ଯାଉଛନ୍ତି ।

ସେତିକହିଁ ତାକୁ ଶାନ୍ତ୍ୱନା ଦେଉଛି ।

ଆଜକୁ କେତେ ରାତି ହେଲା ସେ ଶୋଇ ନାହିଁ, ଶୋଇ ପାରୁ ନାହିଁ ।

ଗାଁ ବୈଦ୍ୟ ଔଷଧ ଦେଇ ଯାଇଛନ୍ତି ।

ତାକୁ ଠିଖାରି ଠିଖାରି କହି ଯାଇଛି ।

ଚାରିଘଣ୍ଟା ଛାଡ ଥରେ ଔଷଧ ଦେବାକୁ ପଡ଼ିବ ।

ଛାତିରେ କଫ । ବୁଢ଼ୀ ଲୋକ ।

ସେବାଯତ୍ନ ନ ହେଲେ କେତେବେଳେ କେଉଁ କଥା !!

କନକ, ଗାଁ ବୈଦ୍ୟଠୁ ଏକଥା ଶୁଣିଲା ପରେ, ତାର ଛାତିରେ ଛନାକା ପଶିଲା ।

ମନ, ଆଶଙ୍କାରେ ମୁହଁ ତାର କଳା ପଡ଼ି ଯାଇଛି ।

ବଡ଼ ଡାକ୍ତର ଡକାଇବା ପାଇଁ ହାତରେ ପଇସା ନାହିଁ ।

ଗାଁ ବୈଦ୍ୟହିଁ ତାର ସାହାଭରସା ।

ମା ସର୍ବମଙ୍ଗଳା ।

ମୋର ମା ଦେହ ଭଲ କରି ଦିଅ ପ୍ରଭୁ ।

ତାର ଅଜାଣତରେ, ତାର ଦୁଇହାତ ଆପଣାଛାଏଁ ଗାଁ ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ଯୋଡ଼ ହୋଇଗଲା ।

ଭକ୍ତିରେ ଆପେ ଆପେ ମୁଣ୍ଡ ନଇଁଗଲା ।

ଅଜଣା ଆଶଙ୍କାରେ ଆଖି ଛଳ ଛଳ ହୋଇଗଲ ।

ଏଭଳି ଭାବ ବିହ୍ୱଳ ହୋଇ ଚିନ୍ତାରେ ବୁଡ଼ ରହିଥିବା ଅବସ୍ଥାରେ, ଶଙ୍କର କେତେ-ବେଳୁ ଆସି ତନ୍ମୟ ହୋଇ ବସିଥିବା କନକର ଯୌବନକୁ ଅନାଇ ରହିଛୁ । କନକ କିଛି ଜାଣି ପାରିନାହିଁ ।

ଶଙ୍କର ଯେତେବେଳେ ସନ୍ତର୍ପଣରେ ତାର ଅତି ନିକଟକୁ ଚାଲିଆସି ପ୍ରଲୁବ୍ଧ ନୟନରେ ତାର ମୁହଁକୁ ଅନାଇଛି, ସେତେବେଳେ ସେ ତାକୁ ଏଭଳି ଅବସ୍ଥାରେ ଦେଖି ଚମକି ପଡ଼ୁଛି । ତର ତର ହୋଇ ଛାତିରୁ ଖସି ପଡ଼ିଥିବା ଲୁଗାକୁ ସଜାଡ଼ ଛିଡ଼ା ହୋଇ ଦୂରକୁ ଘୁଞ୍ଚି ଯାଇଛୁ ।

ଶଙ୍କର ମୁହଁରେ କୁଟିଳ ହସ ଫୁଟାଇ ତାର ଶୁଖିଲ ମୁହଁକୁ ଅନାଇ କହିଛି ।

କଣ ମୋତେ ଦେଖି ଚମକି ଗଲୁକି ?

ଆଲେ, ତୁ କେମିତି ଅଛୁ, ତୋର ବୁଢ଼ୀମା କେମିତି ଅଛୁ ବୋଲି ଦେଖିବା ପାଇଁ ଚାଲି ଆସିଲିନା ।

କନକ ନୀରବରେ ଛିଡ଼ା ହୋଇଥାଏ ।

ଘର ଭିତରେ ତାର ମା ନିଦରେ ଶୋଇ ରହିଥାଏ ।

ତୋର ମା ବେମାର ପଡ଼ିଥିବା ଖବର ଶୁଣିଲ ପରେ ବାବୁ, ଥୟଧରି ରହିପାରିଲେ ନାହିଁ । ମୋ ହାତରେ କେତେ ଯନି ପରିବା, ଚାଉଳ ସବୁ ପଠାଇ ଦେଇଛନ୍ତି ।

ରୋଗୀଣା ମାଁ । ବୁଢ଼ୀକୁ ଖାଇବାକୁ ଦେଇ ସେବା ଯତ୍ନ କରିବା ପାଇଁ କହିଛନ୍ତି ।

କନକ ସବୁ ଶୁଣି କିଛୁ ନ ଶୁଣିଲି ଭଳି ଅନାଇ ରହିଥାଏ ।

ଶଙ୍କର ଟିକିଏ ଆତ୍ମର୍ମାନ କଲ ଭଳି କହିଲ ।

ଆଲେ, କିଛି କହୁ ନାହୁଁ ଯେ ।

ମୁଁ ତୋତେ ନିଜର ଭାବି ଦେଖିବି ବୋଲି ଚାଲି ଆସିଛୁ ।

ବାବୁ ସିନା ବଡ଼ ଲୋକ ।

ସେ ନ ଆସି ପାରିଲେ କଣ ହେଲା ?

ମୋ ହାତରେ କେତେ ଜିନିଷ ତୋ ପାଇଁ ପଠାଇଛନ୍ତି ।

ବାବୁ ସତେ କେତେ ଭଲ ଲୋକ ।

ପରଦୁଃଖ ବୁଝିବାରେ ଏକା ମଣିଷ ।

ଗାଁରେ ଏତେ ଲୋକ ଅଛନ୍ତି କିଏ ତୋ ଭଲମନ୍ଦ ବୁଝୁଛନ୍ତି ?
କିଏ ତୋତେ ଆଦ୍ରା କରିବାକୁ ପାଖକୁ ଆସୁଛନ୍ତି ?
ସେ ସେଭଳି ମଣିଷ ବୋଲି ସିନା ପର ଦୁଃଖରେ ଆଦ୍ରା କରିବାକୁ ଅଛନ୍ତି ।
ଏତକ କହି, ଶଙ୍କର ତା ଗାମୁଛାରୁ ବାନ୍ଧିଥିବା ଜିନିଷ ସବୁ କାଢି ଥୋଇଲା ।
କନକ ମୁହଁକୁ ଥରେ ଅନାଇ କହିଲା ।

ସତେ ଲୋ କନକ, ତୁ ଆଉ ବାବୁଙ୍କ ଘରକୁ ଯାଉନାହୁଁ ବୋଲି ବାବୁ ତୋତେ କେତେ ଖୋଜି ହେଉଛନ୍ତି ?

ତୁ ନଗଲେ ତାଙ୍କ ଘରକାମ ଆଉ କିଏ କରିବ ?

ଗାମୁଛାରୁ ଜିନିଷ କାଢୁଥିବା ଦେଖି, କନକ ବିରକ୍ତ ହୋଇ କହିଲା ।

ମୁଁ ତ ଆଉ ବାବୁଙ୍କ ଘରେ କାମ କରୁନାହିଁ ? ସେ କିଆଁ ଏସବୁ ପଠାଇଛନ୍ତି ?

ମୁଁ ଏସବୁ ରଖିବି ନାହିଁ । ତୁମେ ନେଇ ବାବୁଙ୍କୁ ଦେଇଦେବ ଆଉ କହିବ, କେବେ ଏସବୁ ପଠାଇବେ ନାହିଁ ।

ମୁଁହ ତାର ରାଗରେ ନାଲି ପଡ଼ି ଯାଇଥାଏ ।

ଶଙ୍କର ତା ମୁହଁକୁ ଆଶ୍ଚର୍ଯ୍ୟରେ ଚାହିଁ, କହିଲା । ଏ କି ଢଙ୍ଗ ଲୋ । ଏତେ ଦିନ ତାଙ୍କ ଅନ୍ନ ଜଳ ଖାଇ ବଂଚିଥିଲୁ ? ଆଜି············

ଶଙ୍କରା କଥା ତା ତୁଣ୍ଡରେ ଅଧା ରହିଗଲା ।
କନକ ରାଗି କହିଲା ।
ହଁ ହଁ ତାଙ୍କ ଅନ୍ନ ଜଳ ଖାଇଥିଲି ।
ଆମେ ଗରୀବ ବୋଲି କ'ଣ ଆମ ମାନ ମହତ ନାହିଁ ?
ତାଙ୍କ ବଡ଼ଲୋକି ତାଙ୍କଠି ଥାଉ ।
ଖଟୁଥିଲି, ମୂଲ ପାଉଥିଲି ।।
ଶଙ୍କରା କନକର ରାଗଦେଖି ଡରି ଯାଇଥିଲା ।
ମନରେ ସାହାସ ସଂଚୟ କରି କହିଲା ।
ଆଲୋ ମୁଁ ତୋ ଭଲପାଇଁ କହୁଛି । ପାଣିରେ ଥାଇ କୁମ୍ଭୀର ସଙ୍ଗେ ଲଗନା ।
ମୋର ସାନକୁହା ମାନି, ତାଙ୍କ ମନଲାଖି କାମ କରିଯା ।
ତୁ ଏ ଗାଁ ଛାଡ଼ି କୁଆଡ଼େ ଯାଆନା ।

ସତେ ଲୋ କନକ, ତୁ ଗାଁ ଛାଡ଼ି ଚାଲି ଯାଉଥିବା ଜାଣି, ବାବୁଙ୍କ ମନ ବଡ଼ କଷ୍ଟ ହେଉଛି । ମୋତେ ବି ଭଲ ଲାଗୁନି ଲୋ !!

କନକ ରାଗରେ ଆଖି ତାର ନାଲି ପଡ଼ଗଲା ।
ତମକୁ ଭଲରେ କହୁଛି ଏଠୁ ଚାଲିଯାଅ ?
କନକର ଏ ରୂପ ଦେଖି ଶଙ୍କର ଡରିଗଲା । ମନରେ ରାଗ ତାର ଚଢିଟି ଆସିଲା ।

ଆଳେ ତୋତେ ଭଲରେ କହିଲେ ତୁ ଶୁଣିବୁ ନାହିଁ ? ଫଲ ଭୋଗିବୁ । ବାବୁଙ୍କୁ ତୁ ଅପମାନ ଦେଉଛୁ ? ଶଙ୍କବାଠୁ ଏତକ ଶୁଣିଲା ପରେ ତା ମୁହଁକୁ ଘୃଣାରେ ଅନାଇ ରହିଲା ।

ଏ ଗୁଡାକ କୁକୁର ପ୍ରକୃତିର । ଅଇଣ୍ଠା ଖାଇବାରେ ଅଭ୍ୟସ୍ତ ।

ସଙ୍କର ତା ମୁହଁକୁ ଦେଖି ଭୟରେ ଶଙ୍କିଗଲା । କାଳେ କିଏ ଦେଖିନେବ ବୋଲି ଥରେ ଚାରିଆଡକୁ ଅନାଇ ନେଇ କହିଲା ।

ହଉ ହଉ ମୁଁ ଯାଉଛି ।

କିନ୍ତୁ କଥାଟା ଭଲ ହେଲା ନାହିଁ ।

ରାଗ ତମତମ ହୋଇ ଜିନିଷ ପତ୍ର ଧରି, ଦାନ୍ତମୂଳ କଡକଡ କରି ସେଠୁ ଚାଲିଗଲା ।

କନକ ମନରେ କେତେ ଯେ ଭାବନା, କେତେ ଯେ ଦୁଃଶ୍ଚିନ୍ତା ଖେଳିଗଲା । ସତେ ଯେପରି ସାତ ସମୁଦ୍ରର ତରଙ୍ଗ ଗୋଟି ଗୋଟି ହୋଇ ଲହଡ଼ି ଆକାରରେ କୂଳରେ ବାଡେଇ ହୋଇ, ପୁଣି ବିଷାଦ ମନରେ ଫେରି ଯାଇ, ନୂତନ ତରଙ୍ଗ ସୃଷ୍ଟି କରି ସମୁଦ୍ରକୁ ଘୋ ଘୋ ଶବ୍ଦରେ ଉଦ୍‌ବେଳିତ କରି ଦର୍ଶକ ମନରେ ଭୟ, ବିସ୍ମୟ ସଂଚାର କରୁଥିଲା ଭଳି କନକ ମନରେ ବିକ୍ଷୁବ୍‌ଧ ତରଙ୍ଗ ସୃଷ୍ଟି ହୋଇ ତା ମନର ସମୁଦ୍ରକୁ ଉଦ୍‌ବେଳିତ କରି ଚାଲିଥାଏ । ଅଶାନ୍ତ ଝଡ ଗୋଟି ଗୋଟି ସୃଷ୍ଟି ହୋଇ ଭୟ ବିସ୍ମୟରେ ମନ ତାର ଚହଲି ଯାଉଥାଏ ।

ସତେ ଯେପରି ତାର ଚତୁର୍ଦ୍ଦିଗ ଅନ୍ଧକାର ।

ଦିନକୁ ଦିନ ଏକ ଗୋଲକ ଧନ୍ଦା ଭିତରେ ଛନ୍ଦହୋଇ ଗଲାଭଳି ମନେ ହେଉଥାଏ । ଜୀବନ ନାଟିକା ତାର କ୍ଷୀଣରୁ କ୍ଷୀଣତର ହୋଇ ଗଲାଭଳି ମନେ ହେଉଥାଏ ।

ନାନା ଦୁଃଶ୍ଚିନ୍ତାରେ ମନ ତାର ଘାଣ୍ଟି ଚକଟି ହୋଇ ହା ହତାଶମୟ ହୋଇ ପଥ ବଣା ହେଲାଭଳି ଦୂର ଦିଗ୍‌ବଳୟକୁ ନିର୍ଲିପ୍ତ ନୟନରେ ଅନାଇ ରହିଥାଏ ।

ଘର ଅଗଣାରେ ଦୌଡ଼ଆ ଖଟରେ ମାଳତୀ ଆଉ ତାର ବୁଢ଼ୀ ମା ବସିଥାନ୍ତି । ଗୋବର ଲିପା ଅଗଣା ପରିଷ୍କାର ପରିଚ୍ଛନ୍ନ । ଅଗଣାରେ ତୁଳସୀ ଚଉରା । ଗଛ ଉପର ଦେଇ ଖପର ଛାତରେ କଖାରୁ ଡଙ୍କ ଲେଟେଇ ପଡ଼ିଥାଏ । ମାଳତୀ ତା ମା'ର ମୁଣ୍ଡ କୁଣ୍ଡାଇ ଦେଉଥାଏ । ତେଲ ଡବାରୁ ତେଲ ଆଣି ବୁଢ଼ୀର ପାଚିଲା ବାଳରେ ଘଷି ମାଲିସ କରୁଥାଏ । ବହୁଦିନ ହେଲା ମୁଣ୍ଡରେ ତେଲ ଲଗି ନଥାଏ । ମୁଣ୍ଡ ନୁଖୁରା ଦିଶୁଥିଲା ।

ମାଳତୀ ତା ମା'ଙ୍କୁ ପାଖରେ ବସାଇ ତାର ବାଳକୁ କୁଣ୍ଡାଇ ଦେଉଥାଏ, ବାରମ୍ବାର ମୁଣ୍ଡର ପାଚିଲା ବାଳ ପାନିଆରେ କୁଣ୍ଡାଇ ଦେଲେ ପୁଲଏ ଲେଖାଏ ବାଳ ପାନିଆରେ ଗଳି ଆସୁଥାଏ ।

ମାଳତୀ ତା ମାକୁ କୁଣ୍ଡାଇ, ପାନିଆର ବାଳ ମଇଳା ସଫାକରି ତା ମାର ମୁଣ୍ଡରେ ଛୋଟ ଝୁଡ଼ା ବାନ୍ଧ, ପାଖରେ ବସି ପାନିଆର ମଇଳା ସଫା କରୁଥାଏ ।

ତା ମା ମୁହଁକୁ ଅନାଇ ମାଳତୀ କହିଲା, କେତେଦିନ ହେଲା ମୁଣ୍ଡ କୁଣ୍ଡାଇ ନଥିଲୁ କେମିତି ଅସୁନ୍ଦର ଦିଶୁଥିଲୁ ।

ବୁଢ଼ୀ ଶୁଣିଲା ହସଟିଏ ହସି କହିଲା, ହଁ ଲୋ ଏତର ସୁନ୍ଦର ଦିଶିଲି ।

ଏତିକି ବେଳେ ଦ୍ୱାର ମୁହଁରେ ଦୁଇଜଣ ଅପରିଚିତା ଯୁବତୀଙ୍କୁ ଦେଖି, ମାଳତୀ ବିସ୍ମିତ ହୋଇ ତାର ମାକୁ ଅନାଇ କହିଲା,

ମା ଦେଖିଲୁ କିଏ ଆସିଛନ୍ତି ?

କନକ ଏବଂ ତାର ବଉଳ ପ୍ରଭତୀ ଦ୍ୱାର ମୁହଁରେ ଠିଆ ହୋଇଥାନ୍ତି ।

ଏଇ ସେଇ ଘର । ପିଲା ଦିନରେ କେତେ ଆସିଛି । ତପନ ଭାଇ ସହିତ ଖେଳିଛି । ମାଉସୀ ବଳେଇ ବଳେଇ କେତେ ପିଠା, କ୍ଷୀରି ଖାଇବାକୁ ଦେଇଛନ୍ତି । ନାଚି, କୁଦି ଦିନ ବିତି ଯାଇଛି ।

ଆଜି ସବୁ ଗୋଟି ଗୋଟି ମନେ ପଡ଼ ଯାଉଛି ।

ଏ ଝିଅଟି ନିଶ୍ଚୟ ମାଳତୀ । କେମିତି ଛନଛନ ହୋଇ ଅନାଇ ରହିଛି । ସେତେବେଳେ ସେ ଛୋଟ ଛୁଆଟିଏ ହୋଇଥିଲା । ଫ୍ରକପିନ୍ଧି ନାଚିବୁଲୁଥିଲା । ଆଜି କେତେ ବଡ଼ ହେଲାଣି । କଳା କଳା ସୁନ୍ଦର ଆଖି ଯୋଡ଼କ ବିସ୍ମୟରେ ତାକୁ ଅନାଇ ରହିଛି । ପିନ୍ଧିଛି ଖଣ୍ଡିଏ ରଙ୍ଗିନ ଛିଟ ଶାଢ଼ୀ । କଳା ବ୍ଲାଉଜ ଗୋରା ଦେହକୁ କେତେ ସୁନ୍ଦର ମାନୁଛି । ଖଟରେ ବସିଛନ୍ତି ମାଉସୀ । ତାକୁ ସେ ଅନାଇ ରହିଛନ୍ତି । ଚିହ୍ନି ପାରୁ ନାହାନ୍ତି ବୋଧହୁଏ ?

କେତେଦିନ କେତେବର୍ଷ ପରେ ସେ ଆଜି ଆସିଛି । କେତେ ପରିବର୍ତ୍ତନ ହୋଇ ଯାଇଛି ।

ଘରେ ବୋଧହୁଏ ତପନ ଭାଇ ନାହାନ୍ତି ।

କାହିଁ ତାଙ୍କ ପାଟିତ ଶୁଭୁ ନାହିଁ । ସେ କେଉଁଠି ଘରେ ରହିବା ଲୋକ ? କେତେ ଆଡେ କେତେ କାମ ଚାଲିଥିବ ।

ମାଳତୀ କଥାଶୁଣି ବୁଢ଼ୀ କନକକୁ କ୍ଷଣେ ଅନାଇ ରହିଲା । ଖଟରୁ ଉଠି ପାଖକୁ ଚାଲି ଆସିଲା ନିରେଖି ଦେଖି ଜାଣିବା ପାଇଁ ।

କନକ ଦେଖିଲା, ମାଉସୀ ବସିବା ଯାଗାରୁ ଉଠି ଆସୁଛନ୍ତି ।

ମାଳତୀ ପାଖରେ ଛିଡା ହୋଇ ଛନଛନ ଆଖିରେ ଅନାଇ ରହିଛି ।

ଭାଇ କହୁଥିଲେ କନକ ନାନୀ କଥା ।

ଏ କି ସେ କନକ ନାନୀ ??

ଯାହାପାଇଁ ଭାଇ ଦିନରାତି ହେତୁ କରୁଥାନ୍ତି ।

କେତେ ସୁନ୍ଦର ଦିଶୁଛନ୍ତି ।

ଶାଗୁଆ ରଙ୍ଗର ଶାଢ଼ୀକୁ ଶାଗୁଆ ବ୍ଲାଉଜ, ତାଙ୍କ ଗୋରା ଦେହକୁ କେତେ ସୁନ୍ଦର ମାନୁଛି । ମୁଣ୍ଡରେ ଦୁଇଟିଲମ୍ବା କଳାବେଣୀ ପିଠିରେ ପଡ଼ିଛି । ଆଖିରେ ସରୁ କଜ୍ଜଳଗାର ମୃଗନୟନୀ ।

ଆଖି ଯୋଡ଼କରେ ଭରି ରହିଛି ସୁନ୍ଦର ଗହାଣୀ । ତା ଆଡକୁ ଅନାଇ ମୁରୁକି ହସୁଛନ୍ତି ।

କନକ ଭବବିହ୍ୱଳ ହୋଇ ତାର ମାଉସୀ ମନର ସଂଶୟ ଦୂର କରିବା ପାଇଁ ପାଖକୁ ଚାଲିଆସି, ତଳକୁ ମୁଣ୍ଡ ନୁଆଇଁ, ପାଦ ଧରି ନମସ୍କାର କଲା ।

କନକର ପାଦ ସ୍ପର୍ଶରେ ବୁଢ଼ୀର ସର୍ବାଙ୍ଗ ଶିହରି ଉଠିଲା । କନକକୁ ତଳୁଉଠାଇ ବୁଢ଼ୀ ତାର ମୁହଁକୁ ଚେକି ଅନାଇଲା ।

ଆଖି ଛଳଛଳ ହୋଇଗଲା ।

ତାର ସୁନ୍ଦର ଗୋଲ ମୁହଁକୁ ଦେଖି ଚିହ୍ନିପାରି , ବୁଢ଼ି କହିଲା ମା, କନକ ଏତେ ଦିନକେ ତୋର ବୁଢ଼ୀ ମାଉସୀକୁ ମନେ ପଡ଼ଲା ॥

ଆବେଗରେ ବୁଢ଼ୀ ତାକୁ ତା ଛାତିକୁ ଆଉଜେଇ ଆଣି କୁଣ୍ଡାଇ ପକାଇଲା ।
କନକ ମନରେ ଆତ୍ମତୃପ୍ତି ଅନୁଭବ କଲା ।
ଏତେ ଦିନକେ ମାଉସୀର ଛାତିରେ ଆଉଜେଇ ହୋଇ ଉସ୍ତୁତା ଅନୁଭବ କଲା ।
ବୁଢ଼ୀ ତାକୁ ଛାତିରେ ଯାକି ଶକେଇ ଶକେଇ ବାହୁନି ହୋଇ କାନ୍ଦିଲା ।
ଏତେ ଦିନକେ ମୋର ଏ ବିଧବା ରୂପ ଦେଖିବାକୁ ମନେ ପଡ଼ଲା କିଲୋ ॥
କନକର ନୟନ ଯୁଗଳ ଲୋତକରେ ଭରିଗଲା ।
ବହୁ ଦିନର ସଂଚିତ ଅକୁହା ବେଦନା ଚକ୍ଷୁ ଯୁଗଳ ଦେଇ ବୋହି ଚାଲିଲା ।
କିଛିକ୍ଷଣ କଣ୍ଠ ତାର ବାଷ୍ପରୁଦ୍ଧ ହୋଇଗଲା ।

ବୁଢ଼ୀ ଛାତିରେ ଲେଟିଯାଇ ତାର ହୃଦୟ ବିଦାରିତ ହେଲାଭଳି ଲାଗିଲା ।ଅମାନିଆ ଲୁହ ଚକ୍ଷୁ ଯୁଗଳରୁ ବୋହି ତାର ଗଣ୍ଡଯୁଗଳକୁ ପ୍ଳାବିତ କରି ଚାଲିଥାଏ ।

ମାଳତୀ ଏବଂ ପ୍ରଭତୀ ପାଖରେ ଛିଡ଼ା ହୋଇ କୋହ ସମ୍ବରଣ କରି ଛଳଛଳ ନୟନରେ ଏ ଅପୂର୍ବ ମିଳନ ଦେଖୁଥାନ୍ତି ନୀରବ ନିଷ୍ଚଳ ହୋଇ ।

କିଛି କ୍ଷଣପରେ ବୁଢ଼ୀ କୋହ ସମ୍ଭାଳି ପଣତକାନିରେ ଆଖି ଲୁହ ପୋଛି କନକକୁ ଭଲକରି ଦେଖିନେଲା ।

ମୁହଁରେ ହସ ଫୁଟାଇ ବୁଢ଼ୀ କହିଲା ।

ମା' ମୋର ଏ ଭିତରେ କେତେ ବଡ ହୋଇଗଲାଣି । କେତେ ବର୍ଷ ପରେ ତୋତେ ଆଜି ଦେଖୁଛି । ମାଳତୀ ଦୂରରେ ଛିଡା ହୋଇଥିବା ଦେଖି ବୁଢ଼ୀ ତାକୁ କହିଲା ।

ଏଇ ତୋର କନକ ନାନୀ । ଚିହ୍ନିପାରୁନାହୁଁ ? ତୁ ଛୋଟ ଛୁଆ ହୋଇଥିଲୁ । ତୋତେ ସେ କେତେ ଗେହ୍ଲା କରୁଥିଲା । ତୋତେ କାଖେଇ ବୁଲୁଥିଲା ।

ଏତେ ଦିନପରେ ସେ ଆଜି ଆମ ଘରକୁ ଆସିଛି । ବୁଢ଼ୀ ଆନନ୍ଦରେ ଗଦ୍ ଗଦ୍ ହୋଇ ଏତିକ କହି ତାର ବଉଳକୁ ଅନାଇଲା ।

ଏ କିଏଲୋ, ମୁଁ ଚିହ୍ନି ପାରୁନାହିଁ ?

କନକ ପ୍ରଭତୀକୁ ଦେଖି କହିଲା ।

ସେ ମୋ ବଉଳ ।

ମା, ତୋ ନାଟି କଣ ? ବୁଢ଼ୀ ଗେହ୍ଲାରେ ତାକୁ ପାଖକୁ ଟାଣିଆଣି, ତାର ସୁନ୍ଦର ମୁହଁକୁ ଚାହିଁ ପଚାରିଲା ।

ବୁଢ଼ୀର ସେହି ସରଧାରେ ଲାଜେଇ ଯାଇ କହିଲା, ମୋ ନାଁ ପ୍ରଭତୀ ।

କନକ ମାଳତୀକୁ ସନ୍ତୁଷ୍ଟ ନୟନରେ ଆନାଇ ତାକୁ ପାଖକୁ ଭିଡ଼ ଆଣିଲା ।

ମାଳତୀ କନକ ଛାତିରେ ମୁହଁ ଗୁଞ୍ଜି ଦେଇ ଅପାର ଆନନ୍ଦ ଲାଭକଲା ।

ମାଳତୀ ଠୁଁ ସଂକୋଚ ଭାବ ଦୂର ହୋଇ ଯାଇଥାଏ ।

ଆପଣାର କନକ ନାନୀ । ସମସ୍ତଙ୍କର ପ୍ରୀୟ କନକ ନାନୀ ଆଜି ତାଙ୍କ ଘରକୁ ଆସିଛନ୍ତି ।

ମାଳତୀର ଆନନ୍ଦ କହିଲେ ନସରେ ।

ଯାହାକୁ ଏତେଦିନ ହେଲା ଦେଖିବ ଦେଖିବ ବୋଲି ମନ ତାର ଉଚ୍ଛନ୍ନ ହେଉଥିଲା, ସେହି କନକ ନାନୀ ତାଙ୍କ ଘରକୁ ଆସିଛନ୍ତି ।

ଭାଇକୁ ସେ କେତେଥର କହିଛି । ତମେମେତଗଲ ତାଙ୍କ ଘରକୁ ମୋତେ କାହିଁକି ସାଙ୍ଗରେ ନେଲନାହିଁ ?

ତାଭାଇ ଉପରେ ସେ କେତେ ଅଭିମାନ କରିଥିଲା ।

ତାଭାଇ ତା ମନ ବୁଝାଇବା ପାଇଁ ଆଶ୍ୱାସନା ଦେଇଥିଲା ।

ଦିନେ ତାକୁ ତାଙ୍କ ଘରକୁ ନେଇ ଯିବାପାଇଁ । ମାତ୍ର ସେଦିନ ଆଉ କେବେ ଆସିଲା ନାହିଁ ।

ଆଜି ସେହି କନକ ନାନୀ ଯାହାକୁ ଦେଖିବା ପାଇଁ ମନ ତାର ବ୍ୟାକୁଳ ହେଉଥିଲା, ମନ ତାର କେତେ ଛଟପଟ ହେଉଥିଲା, ସେହି କନକ ନାନୀ ଆସିଛନ୍ତି ।

ସତେ,ସେ କେଡେ ସୁନ୍ଦର ।

ବଳିଲା ବଳିଲା ବାହୁ ଯୁଗଳ । ମୁହଁ ଟିକିଏ ମଳିନ ପଡ଼ଯାଇଥିଲେ ମଧ୍ୟ, ତାର ସୁନ୍ଦର ମୁହଁକୁ ଅନାଇ ମନରେ ଅପାର ଆନନ୍ଦ ଉପଲବ୍ଧି କରୁଥାଏ ।

ମାଳତୀ ତମେ ଏଭିତରେ ସତେ କେତେ ବଡ ହୋଇଗଲଣି । ଫ୍ରକ ପିନ୍ଧ ଟିକିଝିଅ ଆଜି କେଡେ ସୁନ୍ଦର ଗୋଲଗାଲ ଯୁବତୀ ହୋଇଗଲଣି ।

ସଦା ହସ ହସ ମୁହଁ ।

ଦେଖିବାକୁ କେଡେ ସୁନ୍ଦର ।

ଆଖିରେ ଭରି ରହିଛି ଦୁଷ୍ଟାମିର ହସ ।

ଗୋରା ତକ୍ ତକ୍ ଦେହ । ଫୁରିଲା ଫୁରିଲା ଗାଲ, ବେଶ୍ ଢୋଲ୍ ଢାଲ ଚେହେରା ।

ଦେଖିଲେ ମନ ଖୁସି ଲାଗେ କିଛିକ୍ଷଣ ତନ୍ମୟ ହୋଇ କନକ ତାକୁ ଅନାଇ ରହିଲା ।

ମାଳତୀ ଦୁଷ୍ଟାମି ଭଙ୍ଗିରେ ହସି, ତାକୁ କହିଲା, ଏମିତି କଣ ଅନାଇ ରହିଛ, କିଛି କହୁ ନାହଁ ଯେ ।

ତମେ କହିବ ନା ମୁ କହିବି ?

ଏତେ ଦିନପରେ ଦେଖୁଛି । ମନ ପୁରାଇ ଦେଖିନିଏଁ ଆଗ । ପରେ କଥା କହିବି ନାହିଁକି ?

କନକ କଥା ଶୁଣି, ମାଳତୀ ଟିକିଏ ଲାଜେଇ ଗଲା । ମୁହଁ ଲୁଚାଇଦେଲା ତା ମା ପଛପଟେ ।

ବୁଢୀ ତାକୁ ଆଗକୁ ଭିଡ଼ଆଣି କହିଲା ।

ଆଲୋ, କନକକୁ ଏତେ ଲାଜ କରୁଛୁ କିଆଁ ?

ଆଲୋମା, ଆଜି ତୋ ମଉଷା ଥାନ୍ତେ, ଏଘର ଫାଟି ପଡୁଥାନ୍ତା ।

ମୋ ଘରକୁ ମା' ଲକ୍ଷ୍ମୀ ଆସିଛି ବୋଲି, ପାଟିକରି ଘର କମ୍ପାଉଥାନ୍ତେ ।

ବୁଢୀ ପୂର୍ବକଥା ହେତୁକରି ସମସ୍ତଙ୍କ ମୁହଁକୁ ଅନାଇ ରହିଲା । ଆଖି ତାର ଛଳ ଛଳ ହୋଇଗଲା ।

କନକ ସେ ଦିନର ଅଭୁଲା କଥାସବୁ ହେତୁକଲା । ମଉସା ତାକୁ କେତେ ଗେହ୍ଲା

କରୁଥିଲେ । ତାଙ୍କ ଘରକୁ ଅନେକ ଦିନଧରି ଆସି ନ ପାରିଲେ, ନିଜେ ଦୌଡ଼ ଯାଉଥିଲେ ଆମ ଘରକୁ ।

ପିପରମେଣ୍ଟ,ଚକଲେଟ,ବିସ୍କୁଟ ନେଇ ମୋତେ ଶରଧାରେ ଖାଇବାକୁ ଦେଉଥିଲେ ।

ମା'କୁ କହୁଥିଲେ,ମୋତେ ଦେଖିଯିବା ପାଇଁ ତୁମେ କଣ କନକକୁ ମନା କରିଛକି ?

ମା, ସବୁ ଶୁଣି ହସିଦିଏ ।

ମୁଁ କିଆଁ ମନା କରିବି ?

ତେବେ ଏତେଦିନ ହେଲା, ସେ ଆମ ଘରକୁ ଯାଉନାହଁ କାହଁକି ?

ଏମିତି କେତେ କଥା ପଡୁଥାଏ । ହସରେ ଘର ଉଛୁଳି ପଡୁଥାଏ ।

ଆଜି ସେ ସବୁ କଥା ସାତ ସପନ ଭଳି ମନେ ହେଉଛି । ହଜିଲା ଦିନର ଅଭୁଲା କଥା ଏମିତି ସମୟେ ସମୟେ ମନେ ପଡ଼ଯାଏ । କେତେ ଦିନର ପୁରୁଣା କଥା ଏଇ କାଲିପରି ମନେ ହେଉଥାଏ ।

ପୁରୁଣା ·କଥା ନୂଆରୂପ ନୂଆ ଭବରେ ମନରେ ଖେଳି ଯାଉଥାଏ । ସେ କଥା ଗୋଟି ଗୋଟି ମନେ ପକାଇଲେ ମନରେ ଦୁଃଖମିଶା ଆନନ୍ଦ ଆଜି ବି ଖେଳି ଯାଉଥାଏ । ଅତିତ ଯେତେ ସୁଖଃଦ ଅବା ଦୁଃଖଦ ହେଉ ପଛେ ତାର ସ୍ମୃତି ମଧୁର ହୋଇଥାଏ ।

ବୁଢ଼ୀ ଆକାଶର ସୂର୍ଯ୍ୟ ମଥାନକୁ ଉଠି ଆସୁଥିବା ଦେଖି ସମୟ ଗଡ଼ ଯାଉଥିବା ଜାଣି କନକକୁ କହିଲା, ଆ'ମା ଘର ଭିତରକୁ ଆ । ଏଠି ଖରଟାରେ ଆଉ କାହଁ ଛିଡ଼ା ହୋଇ ରହିବୁ ।

କନକ କହିଲା ।

ମାଉଣୀ ମା ଦେହ ତେଣେ ଖରପ । ପଡ଼ଶା ଘର ଖୁଡ଼ିଙ୍କୁ କହି, ମା ପାଖରେ ଛାଡ଼-ଦେଇ ଚାଲି ଆସିଛି ।

ଆସିବି ଆସିବି ବୋଲି, କେବେ ଆସି ପାରୁନଥିଲି । ଆଜି ବଉଳ ସାଙ୍ଗ ହେବାରୁ ଚାଲି ଆସିଲି ।

ବୁଢ଼ୀ ବ୍ୟସ୍ତହୋଇ ପ୍ରଶ୍ନ କଲା ।

ମା ଦେହ କ'ଣ ହେଲାଲୋ ?

ନାହିଁ ମାଉସୀ,ତିନି ଚାରିଦିନ ମାକୁ ଭୀଷଣ ଜ୍ୱର । ଗାଁ ବୈଦ୍ୟ ଔଷଧ ଦେଲାପରେ ଯଅବ ଦିନଠୁ ଭଲ ହୋଇଯାଇଛି । ଉଠି ବସି ପାରୁଛି । ଆଜି ଦୋରନ୍ଧା ଭାତ ଖାଇବାକୁ ଦେଇ ଚାଲି ଆସିଛି । ତେଣୁ ଶିଘ୍ର ଘରକୁ ଫେରିଯିବି ।

ଏତେ ଦିନକୁ ତୁ ଆମ ଘରକୁ ଆସିଛୁ । ଏମିତି କେମିତି ଚାଲିଯିବୁ । ମାଳତୀ ତା ପଣତ କାନି ଧରି ତାକୁ ଘର ଭିତରକୁ ଟାଣି ନେଇଗଲା ।

ବୁଢୀ କହିଲା, ମୋ ଘରକୁ ମୋ ଲକ୍ଷ୍ମୀ ମା ଆସିଛି, ଏଭଳି ଠିଆ ଠିଆ ଚାଲିଯିବ ? ଏ କେମିତି କଥା । ତୁ ବସି ମାଳତୀ ସାଙ୍ଗେ ଗପୁଥା । ମୁ ଏହିକ୍ଷଣି ଗଚ୍ଚେ ରାନ୍ଧି ଦେଉଛି । ଖାଇ ଚାଲିଯିବୁ । ଅଖିଆ ଛାଡଦେଲେ ତୋ ମା ବୁଢୀ ମୋତେ କଣ କହିବ ?

ଏତକ କହି ବୁଢୀ ରନ୍ଧାଘର ଭିତରକୁ ତର ତର ହୋଇ ଚାଲିଗଲା ।

ଏତେବେଳ ହେଲା ତପନକୁ ନ ଦେଖି କନକ ମନ ଚଞ୍ଚଳ ହୋଇ ଉଠୁଥାଏ ।

ତାଙ୍କୁ ଆଉ ଦେଖି ପାରିବ ନାହିଁକି ?

ଚାରିଆଡକୁ ତାର ଚକ ଚଞ୍ଚଳ ଆଖି ପକାଇ ନେଉଥାଏ ।

ମାଳତୀ ତା ମନକଥା ଜାଣିପାରି ହସିଦେଇ କହିଲା ।

ଯାହାକୁ ଖୋଜୁଛ ସେ ନାହିଁ ?

କନକ ଚମକିପଡ଼ ବିସ୍ମିତ ହୋଇ କହିଲା,

କାହିଁ ମୁତ କାହାକୁ ଖୋଜୁନାହିଁ !!

ପାଖରେ ତମେଅଛ ଆଉ ଖୋଜିବି କାହାକୁ ?

ତମ ମନ ଯେ ଖୋଜୁଛି ଆଉ ଜଣକୁ ?

ମାଳତୀ ଏତକ କହି ହସିଦେଲା ।

ତାହାହେଲେ ତମେ ଏଭିତରେ ଅନ୍ୟର ମନକଥା ଜାଣିବା ବିଦ୍ୟାବି ଶିଖିଗଲଣି !!

କନକ ତାର ଚିବୁକରେ ହାତ ମାରି ହସିଦେଲା ।

ଲାଜେଇ ଯାଇ ମାଳତୀ ଟିକିଏ ଘୁଞ୍ଚି ଯାଇ କହିଲା,

ତୁମେ ଯାହାକୁ ଖୋଜୁଛ, ସେ ପର ସଦାବେଳେ ତମକଥା ମୋତେ କହୁଥାନ୍ତି । ଆଖିର ଭୁଲତାକୁ ନଚାଇ ଦୁଷ୍ଟାମିର ହସି ହସି ଘରକୁ କଂପାଇ ଦେଲା ।

ସତେ !

କନକ ଆଗ୍ରହ ଦେଖାଇ ପୁଣି ପ୍ରଶ୍ନ କଲା ।

କଣ ସେ’ କହୁଥାନ୍ତି ?

ସେ କିଏ କି ?

ମାଳତୀ ଥଟ୍ଟାକରି କନକ ମୁହଁକୁ ଚାହିଁ ପୁଣି ପ୍ରଶ୍ନ କଲା ।

ମୁଁ ଅନ୍ଧା କେମିତି ଜାଣିବି । କନକ ହସି ହସି ଉତ୍ତର ଦେଲା ।

ତମ ମନକୁ ପଚାର ‘ସେ କିଏ’ କହିଦେବ ।

ମାଳତୀ ହସି ହସି କହିଲା ।

କନକ କହିଲା, ତୁମେ ପରା ମୋ ମନକଥା ଜାଣିଛ । ତୁମେ କହିଲ ସେ କିଏ ?

ଏଇନେ ତାହା ହେଲେ ମୋତେ କହିବାକୁ ପଡ଼ିବ । ମାଳତୀ ଏତକ କହି, କହିବା-ପାଇଁ କନକ ପାଖକୁ ଚାଲିଆସି ତା କାନରେ ତୁନି ତୁନି କହିଲା ।

କନକ ତା କଥା ଶୁଣି ଲାଜରେ ତାର ମୁଖ ମଣ୍ଡଳ ଲାଲ ପଡ଼ିଗଲା, ଦେହରେ ହୃତ୍-କମ୍ପନ ବୃଦ୍ଧି ପାଇବାକୁ ଲାଗିଲା ।

ଲାଜେଇ ଯାଇ କନକ କହିଲା ।

ଦେଖୁଛି ତମେ ଏ ଭିତରେ ବଡ଼ ଦୁଷ୍ଟ ହୋଇଯାଇଛ । ଏମାନଙ୍କ ଥଟ୍ଟା ଟାପରାକୁ ତାର ବଢ଼ିଲ ଦେଖି ଖୁସୀ ମନରେ ହସୁଥାଏ । ମୁହଁ ତାର ସତେଜ ଦେଖାଯାଉଥାଏ ।

କନକ ବସିବା ସ୍ଥାନରୁ ଉଠିପଡ଼ି ମାଳତୀକୁ କହିଲା, ଏଣେ ଆମେ ବସି ଗପୁଛୁ । ତେଣେ ମାଉସୀ ରୋଷାଘରେ କାମରେ ଲାଗିଛନ୍ତି । ଚାଲ ମାଉସୀ କଣ କରୁଛନ୍ତି ଦେଖି ଆସିବା ।

ମାଳତୀ କନକର ହାତ ଧରି ରୋଷାଘର ଭିତରକୁ ନେଇଗଲା । ସେହି ପୁରୁଣା ରୋଷାଘର । ଏଠି ବସି ମାଉସୀ ସହିତ କେତେ ରୋଷାବଢ଼ା କରିଛି ସେହିଘର କିଛି ପରିବର୍ତ୍ତନ ହୋଇନାହିଁ । ସବୁ ତାର ଗୋଟି ଗୋଟି ମନେ ପଡ଼ଯାଉଛି ।

ମାଉସୀ ପାଖକୁ ଯାଇ ହାତରୁ ଚଟୁ ନିଜ ହାତକୁ ନେଇ କହିଲା,

ତୁମେ ଟିକିଏ ବସ । ମୁଁ ରାନ୍ଧି ଦେଉଛି ।

ବୁଢ଼ୀ ଖୁସୀ ହୋଇ କହିଲା ।

ଏମିତି ସବୁଦିନ ମୋ କାମ କରି ନେଉଥିଲେ ମୁଁ କେତେ ଖୁସୀରେ ବସି ରହନ୍ତି । ଏ ବୁଢ଼ୀ ବୟସରେ କାମ କରିବାକୁ ବଳ ଅଛି ?

କନକ ଚଟ୍‌କିନା କହିଦେଲା ।

କାହିଁ ପୁଅକୁ ବୋହୂଟିଏ ନେଇ ଆସୁନାହଁ ?

କନକ ତା କଥାରେ ନିଜେ ଶଙ୍କିଗଲା ।

କହିସିନା ଦେଲା ମାତ୍ର ଲାଜରେ ତା ମୁହଁ ଲାଲ ପଡ଼ିଗଲା ।

ହଁ ଲୋମା, ସେତକ ମୁଁ ଆଉ କଣ ଚାହୁଁନାହିଁ ।

ଏ ବୁଢ଼ୀ ବୟସରେ କାମ କରିବାକୁ ମନ ଅଛି ନା ବଳ ଅଛି ?

କିନ୍ତୁ ମୋ କଥା ଶୁଣୁଛି କିଏ, ନା ମୋ ମନକଥା ବୁଝୁଛି କିଏ ?

କାହିଁ, ଘରେ ପର ମାଳତୀ ଅଛନ୍ତି ।

ସେ କଣ ତୁମକୁ ସହାର୍ଯ୍ୟ କରୁ ନାହାନ୍ତି ?

କନକ, ମାଳତୀକୁ ଦେଖି ଏତକ କହିଲା ।

ଝିଅ ଜନମ ପର ଘରକୁ ।

ଆଜି ଅଛି, କାଲି ଶାଶୁ ଘରକୁ ଗଲେ ମୋତେ ଆଉ କିଏ ସାହାର୍ଯ୍ୟ କରିବ ?

କନକ, କଥାର ସୁଅ ବଦଳି ଯାଇଥିବା ଦେଖି ଆଗ୍ରହ ହୋଇ ପଚାରିଲା ।

ମାଳତୀର ବାହା ପାଇଁ କେଉଁଠି ଦେଖା, ଦେଖି କଲେଣି କି ?

ମାଳତୀ ଏଭଳି କଥାଶୁଣି ଲଜର ହୋଇଗଲା ।

ମୁହଁ ତାର ରଙ୍ଗା ପଡ଼ିଗଲା ।

ଲାଜେଇ ଯାଇ ମୁହଁରେ କୃତ୍ରିମ ରାଗ ପ୍ରକାଶ କରି ଅଭିମାନରେ କହିଲା, ଏମିତି-ହେଲେ ମୁଁ ଏଠି ରହିବି ନାହିଁ ।।

କନକ ହସି ହସି କହିଲା, ସବୁଦିନ ଆଉ କଣ ଏଠି ରହନ୍ତ କି ?

ଦିନେତ ଫେର ତୁମକୁ ଶାଶୁ ଘରକୁ ଯିବାକୁ ହେବ ।

ମାଳତୀ ଗୋଡକୁ ଛାଟି, କୃତ୍ରିମ ରାଗରେ ନାନୀ............ବୋଲି କହି କନକ ପିଠିରେ ମୁହଁ ଗୁଞ୍ଜି ଦେଲା ।

କନକ ଆଉ ତା ବଉଳ ହସି ଉଠିଲେ ।

ନା ......ତୁମକୁ ପାରିହେଲାନାହିଁ ।

ଏତକ କହି ମାଳତୀ ଲଜରେ ପଦାକୁ ଦୌଡ଼ ପଳାଇଲା ।

ବାହାରକୁ ଆସି ମାଳତୀ ଦେଖିଲା ।

ତପନ, ସାଇକେଲରୁ ଓହ୍ଲାଇ, ଘରଚଳରେ ସାଇକେଲକୁ ଆଉଜେଇ ଦେଇ ଦ୍ୱାରରେ ପଡ଼ିରହିଥିବା ଖଟିଆରେ ବସି ହାଲିଆ ହୋଇ ଥକାମାରି ବସିବାକୁ ଯାଉଥାଏ ।

ପାଖକୁ ଚାଲିଆସି, ଆନନ୍ଦ ଗଦ୍ ଗଦ୍ ହୋଇ, କାନରେ ଫୁନି ଫୁନି କହିଲା ।

ଭାଇ ଆସ, ଦେଖିବ ଆମ ଘରକୁ ଆଜି ନୂଆ ଲୋକ ଆସିଛନ୍ତି ।

ତପନ, ତା ଭଉଣୀର ଏପରି ଛନ ଛନିଆ ଢଙ୍ଗ ଦେଖି କହିଲା ଆରେ କିଏ ଆସିଛନ୍ତି, କହୁନାହୁଁ ।

ନା, ମୁଁ କହିବି ନାହିଁ !!

ତୁମେ, ତାଙ୍କୁ ଚିହ୍ନି ମୋତେ କହିବ ।

ମୁଁ କିଛି ଜାଣିନାହିଁ !!

ତୋର ଆଜି ଏକି ଢଙ୍ଗଲୋ ।

ଆରେ ଆରେ ଏକଣ ?

ମାଳତୀ ତା ଭାଇର ହାତ ଧରି ଏକା ବେଳକେ ରୋଷଘର ଭିତରକୁ ଟାଣି ଟାଣି ନେଇଗଲା ।

ଭିତରକୁ ଯାଇ ତପନ ଯାହା ଦେଖିଲା ନିଜକୁ ନିଜେ ବିଶ୍ୱାସ କରି ପାରିଲା ନାହିଁ ।

କନକ ଘର ଭିତରେ ମାଙ୍କୁ ରାନ୍ଧିବାରେ ସାହାଯ୍ୟ କରୁଛି ।

ନିଆଁ ଝାସରେ ତା ମୁହଁରେ ବିନ୍ଦୁ ବିନ୍ଦୁ ଝାଳ ଫୁଟି ତା ଗୋରା ମୁହଁରେ ଅତି ସୁନ୍ଦର ଦେଖା ଯାଉଛି ।

ତପନକୁ ଦେଖି କନକ ଲାଜେଇ ଗଲା ।

ମୁହଁରେ ହସ ଫୁଟାଇ ଯୋଡ଼ ହସ୍ତରେ ନମସ୍କାର କଲା ।

ତପନର ହାତ ଦୁଇଟି ଆପଣା ଛାଏଁ ଯୋଡ଼ ହୋଇଗଲା ।

ତୁଣ୍ଡରୁ କଥା ବାହାରିଲା ନାହିଁ । ଆଖି ଯୋଡ଼ିକ ଆଶ୍ଚର୍ଯ୍ୟରେ ବିସ୍ଫାରିତ ହୋଇଗଲା ।

ମାଳତୀ, ପାଖରେ ଛିଡ଼ା ହୋଇ ଭାଇର ପଲକ ବିହୀନ ଚକ୍ଷୁ ଯୁଗଳକୁ ସ୍ଥିର ହୋଇ ରହିଥିବା ଦେଖି, ହାତକୁ ହଲାଇ କହିଲା କେତେବେଳୁ କନକ ନାନୀ, ଆଉ ତାଙ୍କ ବଉଳ ଆସି ତୁମକୁ ଅପେକ୍ଷା କରି ରହିଛନ୍ତି । ଏଣେ ତୁମର ଦେଖା ନାହିଁ ?

କୁଆଡେ ଯେ ଥିଲ ଏତେବେଳ ଯାଏ ?

ଏଁ, କଣ କହିଲୁ ?

ତପନ, ତା ଭଉଣୀର କଥା ନ ଶୁଣିଲା ଭଳି ତାକୁ ମନେ ହେଲା ।

ଖରାଟାରେ ଆସିଛନ୍ତି । ତେଣୁ ପାଟି ଶୁଖି ଶୁଖି ଯାଉଛି ।

ଭଉଣୀ ଚନ୍ଦନକୁ ହସାଇ କହିଲା ।

ଭାଇ, ପାଣି ଆଣି ଦେବି ?

ମାଳତୀର ଏଭଳି ଥଟ୍ଟା କଥାରେ କନକ ହସି ଦେଲା ।

ତପନ ଅପ୍ରସ୍ତୁତ ହୋଇ କହିଲା ।

ଆରେ ତୁତ ଥିଲୁ । ତାର ତ କିଛି ଅସୁବିଧା ହୋଇ ନଥିବ ?

ତପନ କନକକୁ ଅନାଇ ତା ଭଉଣୀ ମୁଣ୍ଡରେ ଗେହ୍ଲାରେ ହାତ ମାରିଲା ।

ମାଳତୀ ଚଟ୍‌କିନା ଖତେଇ ହୋଇ, ତା ଭାଇକୁ କହିଲା । ମୁଁ ଥିଲେ କଣ ହେଲା । ସେ କଣ ମୋ ପାଖକୁ ଆସିଛନ୍ତି ? କନକ ଦେଖିଲା, ମାଳତୀ କଥାକୁ ନେଇ କେଉଁଠି ଥୋଇବ । ସେ ତତ୍‌କ୍ଷଣାତ୍ କହିଦେଲା ।

ଆଜିକାଲି ମାଳତୀ ବଡ ଦୁଷ୍ଟ ହେଲେଣି । ପିଲାଦିନର ମାଳତୀଠୁଁ, ଆଜିର ମାଳତୀ କେତେ ଚଲାଖ । କଥାର ଢଙ୍ଗ କେତେ ମନମତାଣିଆ ।

ଶୁଣିଲେ ଶୁଣୁଥା ପରି ମନ ଲାଗୁଥାଏ ।

ମାଳତୀ, କନକ ପାଖକୁ ଚାଲିଯାଇ କହିଲା ।

ତୁମେ ଆମ ଘରେ ରହିଯାଅ । ମୁଁ ତୁମକୁ ଏମିତି ମଜା ମଜା କଥା କହି ଶୁଣାଉଥିବି ।

ମାଳତୀର ଏହି ପଦକ କଥାରେ କନକ ଛାତିରେ ଛନକା ପଶିଲା ।

ସେ ତପନକୁ କଣେଇ କରି ଅନାଇଲା ।

ଦୁହିଙ୍କର ଚାରି ଚକ୍ଷୁର ମିଳନ ହେଲ: ।

ଛାତିରେ ସ୍ପନ୍ଦନ ସୃଷ୍ଟି ହେଲା ।

ତପନ କନକକୁ ଅନାଇ ରହିଲା । ତା ଭଉଣୀର କଥାରେ କନକ ମନର ପ୍ରତିକ୍ରିୟା ଜାଣିବାକୁ ଚେଷ୍ଟା କଲା ।

କନକ ଲାଜରେ ମୁହଁ ତଳକୁ କରି, ଗୋଡର ବୁଢା ଆଙ୍ଗୁଠିରେ ମାଟିରେ ଗାର ଟାଣିଲା ।

ତା ମନ ଏବଂ ହୃଦୟରେ ଅପାର ଆନନ୍ଦ ଜାତ ହେଲା ।

ମନ ଚାହୁଁଛି ଯାହା, ତାହା କେବେ ସମ୍ଭବ କି ?

ମଣିଷ, ଯାହା ଇଚ୍ଛାକରେ ତାହା କଣ ସହଜରେ ପାଇପାରେ କି ? ଏଭଳି ଅନେକ ପ୍ରଶ୍ନ ଦୁହିଙ୍କ ମନରେ ଦେଖା ଦେଲା ।

ଭବନା ସ୍ରୋତରେ ମନ ଘୂରି ବୁଲିଲା ।

ବୁଢୀର ଡାକରେ ସେମାନଙ୍କ ତନ୍ମୟ ଭାଙ୍ଗିଲା ।

ବୁଢୀ ରନ୍ଧାବଢା ଶେଷକରି, ତପନକୁ କହିଲା ।

ବୁଲି ବୁଲି ତୋ ମୁହଁଟି ଶୁଖିଯାଇଛି । ଗଲୁ ବାପ ଗୋଡ ହାତ ଧୋଇଆ ।

ଏକାଠି ବସି ଖାଇବ । କେତେ ଦିନପରେ କନକ ଆଜି ଆମ ଘରକୁ ଆସିଛି । ଘରେ ତା ମା ଦେହ ଭଲ ନାହିଁ । ଚାଲି ଯାଉଥିଲା । ମୁଁ କେତେ କହିଲା ପରେ ରହିଯାଇଛି ।

ତପନ ଭବନା ରାଜ୍ୟରୁ ଫେରି ଆସିଲା ।

କନକର ମା ଦେହ ଭଲ ନାହିଁ ?

ସେ କଥା ସେ ଜାଣେ ନାହିଁ ?

ତା ମନରେ କେତେ ମାନ ଅଭିମାନ ଦେଖା ଦେଇଥିଲା ।

କନକ କଥା ଦେଇ ଆସିଲା ନାହିଁ ।।

ସେ ତା କଥାରେ ବିଶ୍ୱାସ କରେ ନା ।

ତେଣୁ ତା ଉପରେ ଯେଉଁ ବିରାଟ ଦାୟିତ୍ୱ ଦେବାକୁ ଯାଉଥିଲା, ତା ଅଧାପନ୍ତର ହୋଇ ପଡ଼ିରହିଛି ।

ଯେ କଥା ଦେଇ କଥା ରଖି ପାରେନା, ସେ କି ଦାୟିତ୍ୱ ନେବ ?

ମିଛଟାରେ ସେ ତା ପାଖକୁ ଦୌଡ଼ ଯାଇଥିଲା ।

ତା ମନରେ କନକ ପ୍ରତି କେତେ ରାଗ ଅଭିମାନ ଦେଖା ଦେଇଥିଲା ।

ମାକୁ ଭୀଷଣ ଜ୍ୱର । ଦୁଇ ଦିନ ହେବ ଜ୍ୱର କମିଛି । ଏକୁଟିଆ ଲୋକ ।

ଗାଁ ବୈଦ୍ୟ ଔଷଧ ଦେଲାପରେ ଭଲ ହୋଇଯାଇଛି । ଆଜି ଘରେ ପଡ଼ଶା ଖୁଡ଼ୀଙ୍କୁ ଜଗାଇ ଦେଇ ବଉଳ ସହିତ ଚାଲି ଆସିଛି । କନକ ଏତକ କହି ତପନ ମୁହଁକୁ ଅନାଇଲା ।

ତପନ ତା କଥା ଶୁଣି ଲଜ୍ଜିତ ହେଲା । କନକର ମା ଦେହ ଖରାପ ଅଥଚ ସେ କିଛି ଜାଣି ପାରିଲାନାହିଁ ?

ଅଥଚ କନକ ଆସିଲା ନାହିଁ ବୋଲି ତା ଉପରେ ସେ ରାଗି ଅଭିମାନ କରି ରହିଥିଲା ।

ସେ ଅବା କେମିତି ଆସି ପାରିଥାନ୍ତା ?

ଏକୁଟିଆ ମଣିଷ । ଘରେ ଆଉ କେହି ନାହିଁ । ମାକୁ ଛାଡ଼ି ଏଭଳି ଅବସ୍ଥାରେ ଆସିବା ସମ୍ଭବ ନୁହେଁ ।

ତଥାପି ସେ ଆଜି ଆସିଛି ।

କନକ ପ୍ରତି ତା ମନରେ ସମବେଦନା ଭରିଗଲା ।

ରାଗ ଅଭିମାନ କ୍ଷଣକେ କୁଆଡ଼େ ଉଭେଇ ଗଲା ।

ଶ୍ରଦ୍ଧାରେ, ଆଗ୍ରହରେ ଅନାଇ ରହିଲା ।

ଏ ଭିତରେ କନକର ଦେହ ଗଠନ କେତେ ସୁନ୍ଦର ହୋଇଛି ଦେଖିଲେ ମନ ଲାଖି ଯାଉଛି ।

ମୁହଁ ଟିକିଏ ଉଦାସ ଦେଖାଯାଉଛି ।

ବିଚରି କଣ କରିବ ?

ବୁଢ଼ୀମାର ସେବା ଦିନ ରାତି କରିବାକୁ ପଡୁଛି ।

ନ ହେଲେ ମୁହଁ ଏମିତି ଶୁଖିଲା ହୋଇ ନଥାନ୍ତା । ଓଠରେ ହସ ଲାଖି ରହିଛି । ସତେ କନକ କେତେ ସୁନ୍ଦର ।

ତପନ ତନ୍ମୟ ହୋଇ ତାକୁ ଅନାଇ ରହିଥାଏ ।

ଏଭଳି ତନ୍ମୟ ଅବସ୍ଥାରେ ତାକୁ କହିଲା, ମୁଁ ଏଣେ ଗାଁ କାମରେ ବ୍ୟସ୍ତ । ଢର୍ଶିଗାଈ ପାଇଁ କୁଣ୍ଡା, ପିଢ଼ଆ, ମକାଗୁଣ୍ଡ, ବିରିଚୂନି ଦରକାର ତାର ବ୍ୟବସ୍ଥା, ତେଣେ ପୋଟଳ, କପା, ପନିପରିବା ଚାଷପାଇଁ ସାର, ପୋକମରା ଔଷଧ ଦରକାର । ଏଭଳି କାମରେ ବ୍ୟସ୍ତ ରହିଥିବା ଯୋଗୁଁ ମାଉସୀଙ୍କ ବେମାର ଖବର କିଛି ଜାଣି ପାରିଲି ନାହିଁ । ସେ ଅନୁତପ୍ତ ହୋଇ କହିଲା ।

କନକ ମୁହଁରେ ହସ ଫୁଟାଇ କହିଲା ।

ତମେତ ଦିନରାତି ଗାଁ କାମରେ ବ୍ୟସ୍ତ, ତମେ ଜାଣିବ ଅବା କେମିତି ? ଭାବିଲେ ମୋ ଉପରେ ରାଗିଥିବ ସେଥି ପାଇଁ ଚାଲି ଆସିଲି ।

କନକର ଏହି ପଦକ କଥାରେ ତା ମନରେ ହସ ଚହଟି ଆସିଲା । କନକର କଥା ମହତ୍ଵ କେତେ ସେ ସ୍ପଷ୍ଟ ବୁଝିପାରିଲା ।

ସତେ ଭାଇ, ଗାଁର ରୂପ ବଦଳେଇ ଦେଇଛ ।

କନକ ଆନନ୍ଦରେ ଗଦ୍ ଗଦ୍ ହୋଇ ଏତକ କହି ତାର ପ୍ରତିକ୍ରିୟା ଜାଣିବା ପାଇଁ ଅପେକ୍ଷା କଲା ।

ସବୁ କାମତ ଅଧା ହୋଇଯାଇଛି । ଯାହା ତୁ ପୂରଣ କରିବୁ ସବୁ ତୋରି ଅପେକ୍ଷାରେ ଅଛି । ତୁ ଆସି କାମରେ ଲାଗିଗଲେ ଆମର ଅନେକ କାମ ହାଲକା ହୋଇଯିବ ।

ତପନ ଏତକ କହି, କନକର ଆଖିରେ ଆଖି ରଖି ତାଠୁଁ ପଦଟିଏ ଶୁଣିବ ବୋଲି, ତା ମୁହଁକୁ ଅନାଇ ରହିଲା ।

ଭଲ ।

ମୁଁ ଯାହା ଦେଖିଲି, ନିଜକୁ ନିଜେ ବିଶ୍ୱାସ କରିପାରୁ ନାହିଁ । କି ଥିଲା ଏ ଗାଁ କି ହୋଇଛି ଆଜି । ରାସ୍ତା କେତେ ଚୌଡ଼ା ହୋଇଛି । ସମସ୍ତଙ୍କ ଘର ଲିପା ପୋଛା ହୋଇ ପରିଷ୍କାର ପରିଚ୍ଛନ୍ନ । ସବୁ ପିଲାଙ୍କ ମୁହଁରେ ହସ ଫୁଟି ଉଠୁଛି । ଗାଁରେ ପାଠାଗାର । ଯୁବକମାନେ ସଦା କାର୍ଯ୍ୟରତ । ଏସବୁ ଦେଖିଲେ ମୁଁ ନ ଆସିବା ପାଇଁ ମନ ଥିଲେ ମଧ୍ୟ, ଆସିବା ପାଇଁ ମନ ହେବ । କନକ ହସି ହସି ତପନକୁ ଅନାଇ ଏତକ କହିଲା ।

ତପନ ଭାବ ବିହ୍ୱଳ ହୋଇ କନକଠୁଁ ଏତକେ ଶୁଣିଲାକ୍ଷଣି ତା ଦେହରେ ରୋମାଞ୍ଚ ସୃଷ୍ଟି ହେଲା । ମନରେ ଅପୂର୍ବ ଆନନ୍ଦର ଲହରୀ ଖେଳିଗଲା ।

ତା ମୁହଁକୁ ଅପଲକ ନୟନରେ ଚାହିଁ ରହି କହିଲା, ତୁ ଆସି, ମହିଳା ସମିତି ଦାୟିତ୍ୱ ନେଲେ ମୋ ମୁଣ୍ଡରୁ ବିରାଟ ବୋଝ ଖସିଯିବ ।

ଘର ଭିତରୁ ମାଳତୀ ପାଟି କଲା, ଉଠ ହାତ ଧୁଅ, ଭାତ ବଢ଼ା ହେଲାଣି । ଖାଇବ ପରା ।

ମାଳତୀ ଡାକରେ ଦୁହେଁ ସଚେତନ ହୋଇ ପଡ଼ିଲେ ।

ଗୋଡହାତ ଧୋଇ କନକ ଏବଂ ତପନ ଆସି ପିଣ୍ଡାରେ ପଡ଼ିଥିବା ପିଢାରେ ବସି ପଡ଼ିଲେ ।

କନକ ପ୍ରଥମେ ତପନ ପାଖରେ ବସିବା ପାଇଁ ଲାଜ ଲାଜ ହେଉଥିଲା ।

ବୁଢ଼ୀ ଦୁଇ ହାତରେ ଦୁଇଟି କଂସା ଥାଳିରେ ଭାତ ଧରି କହିଲା ।

ବସ୍ ମା ବସ୍ । ଏଠି ବସ୍ ।

ତୋ ତପନ ଭାଇକୁ ଏତେ ଲାଜ କଣ ?

କେତେ ବରଷ ପରେ ତୁ ଆଜି ଆମ ଘରକୁ ଆସିଛୁ ।।

କନକ ଲଜ ଲଜ ହୋଇ ମାଉସୀ କଥାରେ ତପନ ପାଖରେ ଆସି ବସି ପଡ଼ିଲା ।

ଭିତରୁ ମାଳତୀ ଡାକିଲା । ଆମେ ସବୁ ଏଇଠି ବସି ଖାଉଛୁଁ ।

ବୁଢ଼ୀ କେତେ ସଉକରେ ପରସୁ ଥାଏ ।

ମନ ତାର ଆନନ୍ଦରେ ନାଚି ଉଠୁଥାଏ ।

ମୁଗଡାଲି, କଖାରୁବଡ଼ି ଡଉ କାନ୍ଦୁଲ ମହୁର ।

ବାଇଗଣ, ପିଆଜ, ଫୁଲବଡ଼ି ପଡ଼ ଶାଗ ଖରଡା ।

ଟଟକା ଶାଗର ଗରମ ବାସନା ଚହଟି ଆସୁଥାଏ ।

କଂଞ୍ଚାମରିଚ, ମୂଳା, ପିଆଜ, ପାଟଳଘଣ୍ଟା କଟା ହୋଇ ପ୍ଲେଟରେ ଥୁଆ ହୋଇଛି । ଲୁଣ ଅଲଗା ଡାଟିଆରେ । ଦୁହେଁ ଆଜି, ଅନେକ ଦିନ ପରେ ପାଖରେ ବସି ଖାଉଛନ୍ତି ।

ଭାତ ଥାଳିରୁ ଭାତ ସରୁ ନାହିଁ ।

ଡାଲି ଗୋଳା ହୋଇ ସେମିତି ରହିଛି ।

ଭବନାର ସୁଅରେ ଦୁହେଁ ଭାସି ଯାଇଛନ୍ତି ।

କେତେ ଦିନର କେତେ କଥା ଆଜି ମନେ ପଡ଼ଯାଉଛି ।

ଏମିତି କେତେ ଦିନ ସେମାନେ ଏକାଠି ଗୋଟିଏ ଥାଳିରେ ଖାଉଥିଲେ । ଦୁହେଁ ଦୁହିଙ୍କୁ ଖୁଆଇ ଦେଉଥାନ୍ତି, ପାଟି କରୁଥାନ୍ତି । ତା ଭାତ ଗୁଣ୍ଡାକୁ ସେ ଛଡାଇ ନେଇ ପାଟିରେ ପୁରାଇ ଦେଉଥିଲା ।

ସେ ଦିନ, ଆଉ ଆଜି ଭିତରେ କେତେ ତଫାତ୍ ।

ଆଜି ଦୁହିଙ୍କ ପାଇଁ ଦୁଇଟି ଥାଳି ।

ପାଖେ ପାଖେ ଦୁଇଟି ପିଢ଼ାରେ ଦୁହେଁ ବସିଥିଲେ ମଧ୍ୟ କେତେ ସଙ୍କୋଚ କେତେ ସାବଧାନତା ।

ତପନ କିଛି କ୍ଷଣ, କନକକୁ ଅନାଇ କହିଲା ।

ତୁ ଖାଉନାହୁଁ ଯେ । କଣ ଭାବୁଛୁ ?

କନକ ଚମକି ପଡ଼ି ତପନକୁ ଚାହିଁଲା ।

ତା ଭାତ ଥାଳିକୁ ଦେଖି କହିଲା ।

ତମେ ବିତ କିଛି ଖାଇ ନାହିଁ ଯେ ?

ନାଁ ତ, ମୁଁ ଖାଉଛି ।।

ତପନ ଏତକ କହି ଭାତ ଥାଳିରେ କାନ୍ଦୁଳ ମହୁର ଗୋଳି ବଡ ବଡ ଗୁଣ୍ଡା କରି ଖାଇବାକୁ ଲାଗିଲା ।

ତା ଖାଇବାର ଢଙ୍ଗ ଦେଖି, କନକ ହସି ଦେଲା ।

ତୁ କାହିଁ ହସୁଛୁ ?

ତପନ ଆଶ୍ଚର୍ଯ୍ୟ ହୋଇ କନକକୁ ପଚାରିଲା ।

କନକ ହସି ହସି କହିଲା ।

ତୁମେ ଯେମିତି ଖାଉଛନା, ତଣ୍ଟିରେ ଭାତ ଲାଗିଯିବ ।

କିଏ ମନେ ପକେଇଲେ ପରା ତଣ୍ଟିରେ ଭାତ ଲାଗେ ?

ତପନ କନକକୁ ଚାହିଁ କହିଲା ।

ଏଇନେ ଆଉ ତମକୁ କିଏ ମନେ ପକାଇବ କି ?

କନକ ତା ମୁହଁକୁ ଚାହିଁ ହସି କହିଲା ।

ତପନ ଉଲ୍ଲାସରେ ପ୍ରଶ୍ନ କଲା ।

ଆଚ୍ଛା ତୋତେ, ତଣ୍ଟିରେ କେବେ ଭାତ ଲାଗିଛି ନା ନାହିଁ ?

କନକ ଚଟ୍ କିନା କହିଲା ।

ହଁ, ଏମିତି କେତେ ଥର ତଣ୍ଟିରେ ଭାତ ଲାଗିଯାଇଛି ।

ସେତେବେଳେ ତୋତେ କିଏ ମନେ ପକାଉଥାଏ ?

ତପନ ତା ମୁହଁକୁ ଚାହିଁ ଏକ ଦୁଷ୍ଟାମି ହସ ହସି କହିଲା ।

କନକ ଦେଖିଲା, ତା କଥାରେ ସେ ଧରା ପଡ଼ିଯାଇଛି ।

ସେତେବେଳେ ସେ କହିଲା ।

ମୋତେ କିଏ କାହିଁକି ମନେ ପକାଇବ ?

ଏତକ କହି ମୁହଁ ପୋତି ଖାଇବାକୁ ଭାତରେ ହାତ ବୁଲାଇଲା ।

ତୋତେ ମନେ ପକାଇବାକୁ କିଏ ନାହିଁ ବୋଲି ତୁ କେମିତି ଜାଣିଲୁ ? ତପନ କହିଲା ।

ଏତେ ଦିନ ତ ......

ଆଉ କହି ପାରିଲା ନାହିଁ । ତାର କଣ୍ଠରୋଧ ହୋଇଗଲା ।

କାହିଁକି ତୁନି ପଡ଼ିଗଲୁ ? କହୁନୁ ।

କନକର ମନେ ହେଉଥିଲା କହିଦେବା ପାଇଁ ।

ଏତେ ଦିନ ତ ମୋତେ ଭୁଲି ଯାଇଥିଲ । କେମିତି ଅଛି, ଭଲରେ ନା ମନ୍ଦରେ ହେତୁ କରୁ ନଥିଲ, ମାତ୍ର ସେ କହି ପାରିଲା ନାହିଁ । ମନର କଥା ମନରେ ରହିଗଲା ।

ଏତିକି ବେଳେ ବୁଢୀ, ତରକାରୀ, ଭାତ ଧରି ଦୁଅର ଦେବା ପାଇଁ ଆସି ଦେଖିଲେ, ଭାତ ଥାଳିରେ ଭାତ ରହିଛି ।

ଗୋଲା ହୋଇ ରହିଛି । ଭାତ ସରିନାହିଁ ।

ଆଲୋ! ଏ କି କଥା କିଛି ଖାଇ ନାହିଁ ଯେ ।

ଦୁହେଁ ଲାଜରେ ସରମି ଗଲେ ।

ଝାଉଛୁଁ କହି ବଡ ବଡ ଗୁଣ୍ଡା କରି ଖାଇବାକୁ ଲାଗିଲେ ।

ମାଳତୀ ଆସି ଦେଖି କହିଲା, ଆମେ ଖାଇ ସାରିଲୁଣି, ତମେ ସବୁ ଭାତ ଥାଳିକୁ ଅନେଇଛ ନା... .. ।

ତପନ ବଡ ବଡ ଗୁଣ୍ଡାକରି ଖାଇବାକୁ ଲାଗିଥାଏ ।

ମାଳତୀ ସେମାନଙ୍କ ଖାଇବା ଭଙ୍ଗ ଦେଖି ହସୁଥାଏ ।

ମହିଳା ସମିତିରେ ଗଢ଼ାଳି ଲାଗିଛି ।

କନକ ନାନୀ ଆସିବେ, ତପନ ଭାଇ ଖବର ପଠାଇଛନ୍ତି ।

ଗାଁର ଏମୁଣ୍ଡରୁ ସେମୁଣ୍ଡ ମା, ଭଉଣୀ, ବୋହୂମାନଙ୍କ ମୁହଁରେ ହସ ଚହଟି ଯାଇଛି ।

କେତେ ଦିନରୁ ସେମାନଙ୍କ ମନରେ କେତେ କଥା ଖେଳି ଯାଇଛି ।

ଗାଁରେ ଏତେ କାମ ହେଉଛି, ସେମାନେ ଦେଖୁଛନ୍ତି, ବୁଝୁଛନ୍ତି ମାତ୍ର ସେମାନେ କେଉଁଥିରେ ମିଶି ପାରୁନାହାନ୍ତି ।

ତପନ ଭାଇ କହୁଛନ୍ତି, ମହିଳାମାନଙ୍କ ଭିତରେ ଜାଗରଣ ନହେବ, ଗାଁର ସବୁ କଥାରେ ନ ମିଶିଲେ, ନ ଜାଣିଲେ ସମସ୍ତେ ଆଗେଇ ପାରିବେ ନାହିଁ ।

ଅଧେ ପୁରୁଷ, ଅଧେ ସ୍ତ୍ରୀ । ଅଧେ କାମରେ ଲାଗିବେ ଅଧେ ଘର କୋଣରେ ବସି ରହିବେ ତେବେ ସେମାନେ ଆଗେଇ ପାରିବେ କିପରି ?

ତେଣୁ ସମସ୍ତଙ୍କୁ ମିଳି ମିଶି କାମ କରିବାକୁ ପଡ଼ିବ ।

ଯୁଗ ବଦଳିଛି ।

ତା ସହିତ ତାଳ ମିଳାଇ ନ ପାରିବା ତେବେ ଆମେ ପଛରେ ପଡ଼ିଯିବା ।

ଅପାଠୁଆ ବୁଢ଼ାବୁଢ଼ୀମାନେ ପାଠ ପଢ଼ିବେ । ଶିକ୍ଷିତ ହେବେ । ଘର ହିସାବ କରି ଜାଣିବେ । ପୁଅ ଝିଅଙ୍କୁ ପାଠ ପଢ଼ାଇ ଶିକ୍ଷିତ କରିବେ । ନିଜ କଥା ନିଜେ ବୁଝି ପାରିବେ । ଭଲ,ମନ୍ଦ ବିଚାର କରିପାରିବେ ।

ପାଞ୍ଚ ଲୋକଙ୍କ ସହ ମିଶି କଥା ହେବେ । ଦେଶ ବିଦେଶ କଥା ଜାଣିବେ । ତେବେ-ଯାଇ ସବୁ କଥା ବୁଝିପାରିବେ ।

ମା ଶିକ୍ଷିତ ହେଲେ ପୁଅଝିଅମାନେ ମଧ୍ୟ ଶିକ୍ଷିତ ହେବେ । ତେବେଯାଇ ଘର ସଂସାର ଠିକ୍ ଚଳାଇ ପାରିବେ । ପୁଅ,ଝିଅ ମାଠୁ ଶିକ୍ଷି ବଡ଼ ହେବେ ।

ମା ତାର ପ୍ରଥମ ଗୁରୁ । ତେଣୁ ମା ମାନଙ୍କୁ ଶିକ୍ଷିତ ହେବାକୁ ପଡ଼ିବ ।

ଦିନ ବେଳେ ଖାଇସାରି ଅଳସ ସମୟରେ କାମକଲେ କେତେ କାମ କରିହେବ । ସେଥିରେ ଲାଗିଲେ ହାତକୁ ଦୁଇ ପଇସା ଆସିବ । ଘର ସଂସାର ଚଳାଇବାରେ ମା ମାନଙ୍କ ବିରାଟ ଦାୟିତ୍ୱ ରହିଛି । ଘର ସୁଖରେ ଚଳିବ ।

ହାତକୁ ଟଙ୍କା ଆସିବ ।

ଏମିତି କେତେ କଥା ତପନ ଭାଇ ବୁଝାଉଛନ୍ତି ।

ତାଙ୍କ ହାତ ଲାଗି ଗାଁର ରୂପ ବଦଳି ଯାଇଛି ।

ଗାଁ ପିଲାଏ ମଧ୍ୟ ମାତି ଯାଇଛନ୍ତି ।

ଆଗେ ଗାଁ ପିଲାଏ ତାସ ଖେଳ, ଜୁଆଖେଳ, କା ବନ୍ଧରୁ ମାଛ ଚୋରିକରିବା, କା ବାଡରୁ କାକୁଡ ଚୋରିକରିବା ଏମିତି କୁ କର୍ମରେ ମାତି ବାଳୁଙ୍ଗା ଭଳି ଦିନ କାଟୁଥିଲେ ।

ମଦପିଇ ମାତାଲ ହୋଇ ଗାଁ ଦାଣ୍ଡରେ ଲଙ୍କାକାଣ୍ଡ ସୃଷ୍ଟିକରି କା ମୁଣ୍ଡ ଫଟାଇ ରକ୍ତର ସୁଅ ଛୁଟାଉଥିଲେ ।

ମାତ୍ର ଆଜି ଆଉ ସେ ସବୁ ସାତ ସପନ ଭଳି ମନେ ହେଉଛି ।

ସେଦିନ ଆଜିଦିନ ଭିତରେ କେତେ ତଫାତ । ସେଇଗାଁ ସେଇମାଟି, ସେଇଲୋକ ମାତ୍ର କେତେ ପରିବର୍ତ୍ତନ । ନ ଶୁଣିଲେ ନ ଦେଖିଲେ କିଏ ବିଶ୍ୱାସ କରିବ ନାହିଁ ।

ମନର ମୂଳେ ସବୁ । ମନ ବୁଝିଲେ ଦୁନିଆ ଠିକ୍ ।

ମଣିଷର ମନ ଆୟତ୍ତ ହେଲେ, ସେ ହୁଏ ଅମୃତର ସନ୍ତାନ ।

ସେହି ମଣିଷ ଅଣ ଆୟତ୍ତ ହେଲେ, ପଶୁଠୁ ବି ହୀନ ହୋଇଯାଏ ।

ବିଚିତ୍ର ଏ ଦୁନିଆ । ତାଠୁ ବିଚିତ୍ର ଏ ମଣିଷ ମନ ।

ଘର କୋଣରେ, ଚୁଲିମୁଣ୍ଡରେ ଲୁଚିଥିବା ଘର ବୋହୂ ମଧ୍ୟ ପାଦ ବଢାଇଛି, ମହିଳା ସମିତିରେ ବସିବା ପାଇଁ ।

ଦୁଇପଦ କଥା ଶୁଣିବା ପାଇଁ । ବାହାର ଦୁନିଆକୁ ଦେଖିବା ପାଇଁ । ଭଲ ମନ୍ଦ ଜାଣିବା ପାଇଁ ଏତେ ଦିନ ପରେ ଅନ୍ଧାର ଘରୁ ପଦାକୁ ବାହାରିଛି ।

ଶୁଳୁଶୁଳିଆ ପବନ ଦେହରେ ବାଜି ପୁଲକ ସୃଷ୍ଟି କରୁଛି ।

ମନ ପୂରିଉଠୁଛି । ମୁହଁରେ ହସ ଚହଟି ଯାଉଛୁ ।

ଗାଁର ବୁଢୀ ମାଇପେ ତାଟକା ହୋଇ ଅନାଇ ରହିଛନ୍ତି ।

ଗାଁର ଏ ପରିବର୍ତ୍ତନ ଦେଖି ସେମାନେ କାବା ହୋଇ ଯାଉଛନ୍ତି ।

ମନ କିନ୍ତୁ ଧୀରେ ଧୀରେ ବୁଝି ଗଲାଣି ।

ନୂଆ ଯୁଗ ।

ନୂଆ କଥା ଶୁଣିଲେଣି ।

ନୂଆ ନୂଆ ଜିନିଷ ଜାଣିଲେଣି, ଦେଖିଲେଣି ।

ଯାହା ତାଙ୍କୁ ଦିନେ ସାତ ସପନ ମନେ ହେଉଥିଲା, ଆଜି ହାତ ପାହାନ୍ତାରେ

ପାଇଲେଣି, ଭୋଗ କଲେଣି ।

ଆଗେ ଘର ମରଦ ମଦପିଇ, ସେମାନଙ୍କ ଉପରେ ଯୁଲମ କରି ମାଡମାରି, ଲହୁ ଲୁହାଣ କରି ପକାଉଥିଲେ । ଭତ ହାଣ୍ଡି ଭାଙ୍ଗି ଭୋକ ଉପାସରେ ରାତି କଟାଉଥିଲେ ।

ଭୋକ ଉପାସରେ ପୁଅ ଝିଅଙ୍କ ବିକଳ କ୍ରନ୍ଦନ ସହି ହେଉନଥିଲା ।

ହଁ,ସେଦିନ କଥା କାଲି ପରି ଲାଗୁଛି ।

ନୂଆ ଭୁଆଶୁଣି, ତା ମରଦର ମାଡ ସହି ନପାରି, ରାତିରେ କୂଅଁରେ ଡେଇଁ ପ୍ରାଣ ବିସର୍ଜନ କରି ଦେଇଥିଲା ।

ତାରି ଯୌବନର କେତେ ଆଶା, କେତେ ସ୍ୱପ୍ନ ଏକା ଥରକେ କୂଅଁ ଭିତରେ ମିଳାଇ ଗଲା । ଏଭଳି କେତେ କଥା ।

ମାତ୍ର ଆଜିର ମରଦ ହାତରେ ପଇସା ନେଇ ଘରକୁ ଆସୁଛି । କେତେ ସୁଆଗିଆ କଥା କହୁଛି । ମୁହଁରେ ହସ ଚହଟି ଯାଉଛି । ମନ ପୂରି ଯାଉଛି । ହସ ଖୁସିରେ ରାତି ପାଇଯାଉଛି । ଏତେକ ଆଗ ସାତ ସପନ ହେଉଥିଲା । ଆଜି ତା ପେଟ ପୁରୁଛି,ମନ ପୁରିଛି ।

ଭଲ ଲୁଗା ଖଣ୍ଡେ ଦେହରେ ପିନ୍ଧି ପାରିଛି । ଆଗ ସାତ ଛିଣ୍ଡାକନା ଦେହରେ ଲାଜ ଘୋଡାଇବାପାଇଁ ମଧ୍ୟ ଅଣ୍ଟୁ ନଥିଲା । ଏତେ ଦେଖି, ଶିଖି ଭୋଗିଲା ପରେ କେଉଁ ବୁଢୀ ଅବା ତାର ଝିଅ,ବୋହୂକୁ ମନା କରି ପାରିବ ?

ଯେ ମନା କରୁଛି ସେ ଆଖି ବନ୍ଦ କରି ଜାଣି ନ ଜାଣିଲା ଭଳି ହେଉଛି । ବିରାଡି ଆଖି ବନ୍ଦ କରି ଦୁଧ ପିଇଲା ଭଳି । କେତେ ମାଇପି କେତେ ଟାହି ଟାପରା କରି କଥା ହେଉଛନ୍ତି ।

ହଁ ତ, ସେଦିନ ସୁରିମା କେତେ କଥା କହୁଥିଲା ଘର ଝିଅ ବୋହୂ ପଦାକୁ ଗଲେ କେତେବେଳେ କେଉଁ କଥା । ଲାଜ ସରମ ଉଭେଇ ଗଲା ଭଳି, ଘର ଝିଅ, ଭୁଆଶୁଣୀ-ବୋହୂ, ପୁଅମାନଙ୍କ ସଙ୍ଗେ ମିଶିକରି, ହେଁ ହେଁ ପେ ପେଁ ହେଉଛନ୍ତି ।

ଏକି ଅଲାଜୁକି କଥା ।

ତାର ମୁଖର ସ୍ୱଭାବକୁ ସମସ୍ତଙ୍କ ଡର । ତା ଗାଳି ଭୟରେ ସମସ୍ତେ ତାଠୁଁ ଦୁରେଇ ରହନ୍ତି । ଯଦି କିଏ ହାବୁଡରେ ପଡ଼ିଗଲେ ତାର ନିସ୍ତାର ନାହିଁ । ସକାଳୁ ଉଠି କେତେ ମାଇପ ଭଗବାନଙ୍କୁ ମୁଣ୍ଡିଆ ମାରନ୍ତି ତା ହାବୁଡରେ ନ ପଡ଼ିବା ପାଇଁ ତାଙ୍କୁ କେତେ ଭୟ । ଭୟ କେମିତି ନ କରିବ ?

ରାଗିଲେ ତାର ଭୟଙ୍କର ମୂର୍ତ୍ତି ଦେଖି ହୁଏ ନାହିଁ । ଲୁଗାପଟା ବିବସ୍ତ୍ର ହୋଇଯାଏ । ମୁଣ୍ଡର ବାଳ ପବନରେ ଫର ଫର ଉଡୁଥାଏ । ଆଖିଡୋଳା ବଡ ବଡ ହୋଇ ଲାଲ ଦିଶୁଥିବ । ସତେକି ଆଖିରୁ ନିଆଁ ହୁଳା ଧାଇଁବ ପୋଡ଼ି ଜାଳିଦେବ ।

ସେ ଭୟଙ୍କର ରୂପ ଗାର ଛୋଟ ଛୁଆମାନେ ଆକସ୍ମାତ ଦେଖି ଦିଅନ୍ତି ଭୟରେ ଛାତି ଥରିଯିବ । ହଠାତ୍ ଭୟରେ ଦେହ ତାତି ଉଠିବ । ଜ୍ୱର ବେମାରରେ ଛୁଆମାନେ ପଡ଼ିଯିବେ ବୋଲି ମା'ମାନେ ଦାଣ୍ଡରୁ ଛୁଆମାନଙ୍କୁ ଟାଣି ନିଅନ୍ତି ଘରଭିତରକୁ ।

କେଉଁ ମା ତା ଛୁଆକୁ ଟାଣିନିଏ ତା ପଣତକାନି ତଳକୁ । କେତେ ଇଷ୍ଟ ଦେବତାକୁ ସେ ସ୍ମରଣ କରୁଥାଏ । ହେ ମା ତୋତେ କଳା ବୋକା ଦେବି ।

ମୋ ଛୁଆ ଉପରେ ତାର ଆଖି ନ ପଡୁ ।

ସେ ଅତି କଟୁ ଭାଷାରେ ଗାଳି ଦେବ ।

ତା ଗାଳି ଅଶ୍ରାବ୍ୟ ।

ତୋର ବଂଶବୁଡୁ । ତୋ ପୁଅ ମୁଣ୍ଡଖା ।

ଅଳ ପେଇସା, ତୋର ହାତ ଗୋଡ ଛିଣ୍ଡିପଡୁ ।

ତୋର ଘଇତାକୁ ବାଘ ଖାଉ । ତୁ ରାଣ୍ଡ ହୋଇଯା ।

ଏମିତି କେତେ କଥା କଟୁ କଥା ପାଟିକରି ଗାଁ ଦାଣ୍ଡ କମ୍ପାଉଥିବ । ତାର ଦମ ଦମ ଚାଲିରେ ଗାଁ ଦାଣ୍ଡ ଧୂଳିଉଡ଼ ଧୂଳିମୟ ହୋଇ ଯାଉଥିବ ।

ଆଗରେ କିଏ ପଡ଼ିଲେ ଦାନ୍ତ କଡମଡ କରି ଚୋବାଇ ଖାଇଯିବ ବୋଲି ପାଟିକରି ମାଡ଼ି ଆସିବ ।

ତାର ଏଭୟଙ୍କର ରୂପ ଦେଖି ମରଦ ପିଲାରଛାତି ପାଣି ଫାଟିଯିବ । ଡରି ଡରି ଅତର୍କିଆ ହୋଇ ଦୌଡ଼ ପଳାଇବ ।

କିନ୍ତୁ ସେଦିନ ନବ ମଧୁକୁ ଦେଖି ତାର ସେ ଭୟଙ୍କର ରୂପ ଆଉ ପ୍ରକାଶ କଲାନାହିଁ । ସାପ ମୁହଁରେ ଗଦ ପଡ଼ିଲାଭଳି ନୀରବରେ ବସି ରହିଲା ।

ଗାଁ ମାଇପେ କବାଟ କୋଣରେ ଆଶ୍ଚର୍ଯ୍ୟ ହୋଇ ତାର ଏସ୍ୱଭାବ ଦେଖୁଥାନ୍ତି ।

ମାତ୍ର ସେ ମନରେ ରାଗ ରଖି ଗର୍ ଗର୍ କରି ବସି ଶୁଣୁଥାଏ ।

ନବ,ମଧୁ ତାକୁ କେତେ ବୁଝାଇଲେ । ମହିଳା ସମିତିକୁ ଯିବାପାଇଁ ।

ବୁଢ଼ୀ ସବୁ ଶୁଣି ଗୁମ୍ ମାରି ବସିଗଲା ।

ସେମାନେ ତାଙ୍କ କାମରେ ଚାଲିଗଲେଣି କେତେବେଳୁ ।

ପୂରିମା, ମନକୁ ମନ କହିଲା ।

ଅଖା ଧୋଉଥିବ ଗୁଣ ଗାଉଥିବ ଲୋ ପୁଅ ।

ସେତେବେଳେ ମୋତେ ମନେ ପକାଉଥିବ ।

ମନ ବୁଝିଲେ ସବୁ ଠିକ୍ ।

ମନ ଯଦି ଅବୁଝା ହୁଏ ଭଲ ବି ମନ୍ଦ ହୋଇଯାଏ ।

ସୁଖ ବି ଦୁଃଖ ହୋଇଯାଏ । ମନର ମୂଳେ ସବୁ ।

କଳିକାଳ । ଘର କୋଣର ମାଇପି ପଦାକୁ ଗୋଡ କାଢ଼ବ ?

ହଁଲୋ, ସବୁ ଦେଖୁଛି । ଏତକ କହି ମୁହଁ ଛିଞ୍ଚାଡ଼ ଘର ଭିତରକୁ ଚାଲିଗଲା ।

ଘନ ଅଢ଼ାର ଆଗ୍ରହ କହିଲେ ନସରେ ।

କନକକୁ ଏଦାର୍ଯ୍ୟିଦ୍ଧ ଦେବାପାଇଁ ସେ ହିଁ ପ୍ରଥମ ପ୍ରସ୍ତାବ ଦେଇଥିଲେ ।

ମହିଳା ସମିତିର କାର୍ଯ୍ୟ ଆଗେଇବା ପାଇଁ ଆଜି ସେହି ଶୁଭ ମୁହୂର୍ତ୍ତ ଆସି ପହଞ୍ଚିଛି ।

ଡକା ହକା ଚିତ୍କାରରେ ଗାଁ ଦାଣ୍ଡ କମ୍ପୁଥାଏ ।

ମହିଳାମାନଙ୍କ ମନରେ ଆନନ୍ଦର ସୁଅ ଛୁଟି ଚାଲିଥାଏ ।

କିଏ ତା ସଖୀକୁ ଡାକୁଛି, ଆସ ଶିଘ୍ର ଆସ ।

କିଏ ତା ସଙ୍ଗାତକୁ ଡାକୁଛି ।

କିଏ ତାର ବଉଳକୁ ଡାକୁଛି । ବଉଳ ଆସିଗଲା ପରେ ତାର ହସ ହସ ମୁହଁକୁ ଦେଖି କହୁଛି, ଆଜି ତୁମକୁ ଏ ଶାଢ଼ୀ ସୁନ୍ଦର ମାନିଛି । ତା ହସରେ ଗାଁ ଦାଣ୍ଡ ଉଚ୍ଛୁଳି ପଡୁଛି ।

କିଏ ମକରକୁ ଡାକୁଛିତ, କିଏ ତାର ଗଙ୍ଗାମୁଗକୁ ଡାକୁଛି । କିଏ ତାର ମରିଚକୁ ଡାକୁଛି । କିଏ ତାର କଣି କାକୁଡ଼କୁ ଡାକୁଛି ।

ଝିଅମାନଙ୍କର ଡାକ ହାକରେ ଗାଁ ଦାଣ୍ଡରେ ଆନନ୍ଦର ଲହରି ଖେଳି ଯାଉଥାଏ ।

ଝିଅ ବୋହୂମାନେ ଆଗରେ ତର ତର ହୋଇ ଚାଲିଯାଉଥିବା ଦେଖି ପଛରୁ ହେମା ଡାକିଲା ।

ଗଡ଼ାମୁଗ ମୋତେ ଟିକିଏ ଜଗ !!

ଓଠରେ ନାଲିଅଳତା ଲଗାଇ, ଶପୁର ପାଟିକଲ ।

ବେଗି ଆସ ଗଡ଼ାମୁଗ । ହେଇଟି ଗୋଟି ଗୋଟି ହୋଇ ସମସ୍ତେ ଚାଲିଗଲେଣି ।

ଝିଅ ବୋହୂଙ୍କ କଳକୋଳରେ ଗାଁ । ଦାଣ୍ଡ ହସି ଉଠୁଥାଏ ।

କିଏ ତାର ସାଙ୍ଗକୁ ପଛରୁ ଡାକୁଛି ।

ଏ ଅଲେଇଚ, ଏତେ ତର ତର ହୋଇ କିଆଁ ପଳେଉଛୁ ।

କିଏ କହୁଛି, ଆଗୋ ମକର, ଏତେ କିଆଁ ହର ବର ।

ନୂଆକରି ଗାଁକୁ ଆସିଥିବା ନୂଆ ବୋହୂଟିଏ ସାଙ୍ଗ ମେଳରେ ଧୀର ପାହୁଣ୍ଡ ପକାଇ ମୁଣ୍ଡ ପୋତି ଚାଲିଛି ।

ନୂଆବୋହୂ ଲଜକୁଳୀଲତା ଭଳି ଲାଜେଇ ଯାଉଛି ।

ଦେହରେ ପିନ୍ଧିଛି ନାଲିକନା । ପାଦରେ ନାଲି ଅଳତା । ମୁଣ୍ଡରେ ବାନ୍ଧିଛି କେତେ ବଡ଼ ଖୋସା । ଖୋସାରେ ମାରିଛି ମଲ୍ଲି ଫୁଲରମାଳ । କପାଳରେ ଲଗାଇଛି ନାଲି ସିନ୍ଦୂର ଟୋପା । ମୁଣ୍ଡ ତଳକୁ ପୋତି ଅଣ୍ଟା ଦୋହଲାଇ ଚାଲିଛି ମହିଳା ସମିତି ସଅଁକୁ ।

ମୁହଁରେ ଖେଳି ଯାଇଛି ଆନନ୍ଦ ଲହରୀ ।

ସଖୀ ସଙ୍ଗାତମାନଙ୍କ କଳହାସ, ପରିହାସରେ ଗାଁ ଆଜି ଉଚ୍ଛୁଳି ପଡୁଛି ।

ଗାଁ ମାଇପିଙ୍କୁ ଆଜି ସବୁ ନୂଆ ନୂଆ ଲାଗୁଛି ।

ଦେହ ଓ ମନ ଆଜି ଘର କୋଣରୁ ବାହାରକୁ ଚାଲିଆସିଛି । ଅନ୍ଧାରରୁ ଆଲୋକକୁ ଆସିଛନ୍ତି । ଗାଁର ମାଇପି ଦଳ ଦଳ ହୋଇ ସମସ୍ତେ ନୂଆ ମହିଳା ସମିତିଘରେ ଠୁଳ ହେବାରେ ଲାଗିଥାନ୍ତି ।

ମଧୁ ମା, ଭଉଣୀମାନଙ୍କୁ ଘର ଭିତରେ ବସାଇ ଅନ୍ୟ ସାଙ୍ଗ ମାନଙ୍କୁ ପରାମର୍ଶ ଦେଉଥାଏ ।

ମଧୁର ଆଗ୍ରହ କହିଲେ ନସରେ ।

କନକର ନାନୀ ସନ୍ଧ୍ୟା, ତପନର ମା ଅହଲ୍ୟ ଦେବୀ, ମାଳତୀ ହାରିକା ଆସୁଛନ୍ତି ।

କନକ ପ୍ରଥମେ ଆଜି ଆସିବାକୁ ମଙ୍ଗୁନଥିଲା ।

ପରେ ଅନ୍ୟ ଏକ ଦିନରେ ଆସିବ ବୋଲି ଟାଳି ହେଉଥିଲା । ମାତ୍ର ତପନର ମା ଅହଲ୍ୟା ଦେବୀ, ଯେତେବେଳେ ତୋତେ ଗାଁଟି ସାରା ମା, ଭଉଣୀ ଜଗି ରହିଛନ୍ତି । ତୁ

ଆମ ଗାଁକୁ ଆସିଥିବା ଜାଣିଲା ପରେ, ସମସ୍ତେ ଆଜି ତୋତେ ଦେଖିବେ ବୋଲି ଢଗି ବସିଛନ୍ତି ।

ଏ ଗାଁ ବି ତୋର୍ ।

ଏ ଗାଁ ମାଟି ପାଣି ପବନରେ ତୁ ହସିଛୁ ଖେଳିଛୁ ।

ଏ ଗାଁ ମା, ଉଉଣୀ ସବୁ ତୋର ଆପଣାର ।

ସେମାନଙ୍କ କଥା ଏବଂ ଆଶାକୁ ଆଉ ଅଡେଇ ଦେନାଲେ । କେତେ ସରଧାରେ ସେମାନେ ତୋ ବାଟକୁ ଅନାଇ ରହିଛନ୍ତି ।

ବୁଢ଼ୀ ଏତକ କନକ ମୁହଁକୁ ଉହିଁ କହିଲା ।

ତା ମନରେ ବିଶ୍ୱାସ ଦେବା ପାଇଁ ବୁଢୀ କହିଲା ।

ହଁ ଲୋ ମୁଁ ବି ତୋ ସହିତ ଯିବି !!

ବୁଢୀଠୁ ଏତକ ଶୁଣିଲା ପରେ କନକ ଆନନ୍ଦ ବିସ୍ମୟରେ ତାଙ୍କୁ ଅନାଇ ଥରିଲା କଣ୍ଠରେ କହିଲା ।

ମାଉସୀ.........

ହଁ ଲୋମା, ମୁଁ ଅଛି ତୋ ପାଖେ ପାଖେ ।

ବୁଢୀ କନକ ମୁହଁକୁ ତା ଛାତିରେ ଆଉଜେଇ ଆଣିଲା ।

ତପନ, ମାଳତୀ ଆଶ୍ଚର୍ଯ୍ୟ ହୋଇ ତାଙ୍କ ବୁଢ଼ୀମାକୁ ଅନାଇ ରହିଲେ ।

ଆନନ୍ଦରେ ତପନର ଛାତି କୁଣ୍ଢେମୋଟ ହୋଇଗଲା ।

ତା ମା ଆଜି ମହିଳା ସମିତିକୁ ଯିବ !!

ତାର କାର୍ଯ୍ୟ ଦେଖିବ, ବୁଝିବ ।

ସଦାବେଳେ ପୁଅକୁ ବାୟା ଭୂତଙ୍କ ଭଳି ବୁଲୁଛି ବୋଲି ଯେ କହୁଥିଲା, ସେହି ମା ଆଜି ତା କାମ ଦେଖିବାପାଇଁ ଯିବ । କନକକୁ ସାଙ୍ଗରେ ନେଇଯିବ । ମା ଗଲେ ମାଳତୀ ଦୌଡ଼ିବ । ସମସ୍ତେ ଆଜି ମହିଳା ସମିତିକୁ ଯିବେ ।

ତପନ ଆନନ୍ଦ ଏବଂ ବିସ୍ମୟରେ ସମସ୍ତଙ୍କୁ ଅନାଇ ନେଉଥାଏ ।

ଗାଁରେ ହରି ପଡ଼ଯାଇଛି ।

ତପନର ମା ଆସୁଛନ୍ତି, ମାଳତୀବି ସାଙ୍ଗରେ ଆସୁଛି । ତେଣୁ ଗାଁର ବୁଢ଼ୀମାନେ ବୋହୂଝିଅ ଆଉ ଘରେ କିଏ ରହୁଛି ?

ସମସ୍ତେ ଆଜି ଏକ୍ଯୁଟ୍ । ସମସ୍ତଙ୍କ ମନ ଆଜି ଏକ୍ ।
ପୁଷ ମାସ ।

ଦୂର ପାହାଡରୁ ଶୀତଳ ପବନ ବହୁଛି । ପର୍ବତରେ ନାନା ପ୍ରକାର ବୃକ୍ଷଲତା ଭରପୁର ହୋଇ ଅତୀବ ରମଣୀୟ ଦେଖାଯାଉଛି । ସୂର୍ଯ୍ୟ ମଥାନ ଉପରକୁ ଉଠି ତଳକୁ ଖସୁଛନ୍ତି । ଖରା ତେଜ ମଧ୍ୟ କମି କମି ଆସୁଛି ।

ନୀଳ ଆକାଶର କଳା ଧଳା ବଉଦ ଭାସି ଚାଲିଛି । ପୌଷ ମାସର ସୁନେଲି ଖରା ପାଚିଲା ଧାନ କ୍ଷେତରେ ବିଛେଇ ହୋଇ ପଡ଼ୁଛି । ଧଳା ଧଳା ବଗ ବଗୁଲି ଏ କ୍ଷେତରୁ ସେ କ୍ଷେତକୁ ଉଡ଼ି ବୁଲୁଥାନ୍ତି ।

ତପନ ସମସ୍ତଙ୍କ ସାଥିରେ ଗଢ଼ୀଡ଼ା ବିଲ ପାର ହୋଇ ଗାଁ ଭିତରକୁ ଆଗେଇଥାନ୍ତି ।

କନକ ଗାଁର ରମଣୀୟ ଶୋଭା ଦେଖି ଦେଖି ଚାଲିଥାଏ । ବୁଢ଼ୀ ମାଳତୀ କାନ୍ଧରେ ହାତ ରଖି ଧୀରେ ଧୀରେ ପାହୁଣ୍ଡ ପକାଇ ଚାଲିଥାଏ ।

କନକ ମନ ଚଞ୍ଚଳ ହୋଇ ଉଠିଲା । ଏତେ ଲୋକଙ୍କ ଆଗକୁ ସେ ଯିବ । ସମସ୍ତେ ତାର ଅପରିଚିତ । କିଏ କଣ କହିବ ?

ଆଶା ଆଶଙ୍କାରେ ମନ ତାର ଉତ୍ତେଜିତ ହୋଇ ଉଠିଲା । ମନ ଭିତରେ କେତେ ଯେ ଝଡ ବୋହି ଚାଲିଲା ।

ତାର ଶିରରେ ରକ୍ତ ଜୋରରେ ପ୍ରବାହିତ ହେବାକୁ ଲାଗିଲା । ମନ ତାର ଚଞ୍ଚଳ ହୋଇ ଉଠିଲା ।

ଏମିତି ଅନେକ ଚିନ୍ତା କରି କରି ଆସୁଥିବା ଭିତରେ ସେ ଆସି ପହଞ୍ଚି ଯାଇଛି ।

ଘନ ଅଜା ଦ୍ୱାର ମୁହଁରେ ଛିଡ଼ାହୋଇ ସେମାନଙ୍କ ଆସିବା ବାଟକୁ ଅନାଇ ରହିଥାନ୍ତି ।

କନକ ପ୍ରଥମେ ଘନ ଅଜାଙ୍କୁ ଦେଖି, ତାଙ୍କ ପାଖକୁ ଚାଲିଯାଇ ପାଦଧୂଳି ନେଇ ନମସ୍କାର କଲା । ଗାଁର ଅନେକ ବୟସ୍କ ଚିହ୍ନା, ଅଚିହ୍ନା ଲୋକଙ୍କୁ ହାତ ଯୋଡ଼ି ନମସ୍କାର କଲା ।

ତାକୁ ଦେଖିବା ପାଇଁ ଗାଁର ଅନେକ ଲୋକ ବାରଣ୍ଡାରେ ରୁଣ୍ଡ ହୋଇଥାନ୍ତି । ଅନେକ ସ୍ଥାନ ଅଭାବରୁ ବାହାରେ ଛିଡା ହୋଇ ନୀରବରେ ସବୁ ଦେଖୁଥାନ୍ତି ।

ଗାଁ ମାଇପେ ହୁଳହୁଳି ଦେଇ ସ୍ୱାଗତ ଜଣାଇଲେ ।

ମାଇପିଙ୍କ ହୁଳହୁଳି ଶବ୍ଦରେ ଗାଁ କମ୍ପି ଉଠୁଥାଏ ।

କନକ ଆଶ୍ଚର୍ଯ୍ୟ, ଚକିତ ହୋଇ ସେମାନଙ୍କ ମୁହଁକୁ ଅନାଇ ରହିଥାଏ । କନକର ବଉଳ ଏତେ ଲୋକଙ୍କୁ ଏକାଠି ଦେଖି ତା ମନ ବିସ୍ମୟରେ ଅଭିଭୂତ ହୋଇ ଯାଇଥାଏ ।

ତା ବଉଳକୁ ଦେଖିବେ ବୋଲି ଆଜି ଗାଁରେ ଯାତ୍ରା ହେଉଛି ।

ତା ବଉଳକୁ ଲୋକଙ୍କ କେତେ ଆଦର । ଛୋଟମାନେ ତାଙ୍କୁ ନମସ୍କାର କରୁଛନ୍ତି । ବଡମାନେ ଆଶୀର୍ବାଦ କରୁଛନ୍ତି । ତା ବୟସର ଝିଅମାନେ, ବୋହୂମାନେ ପାଖକୁ ଆସି ଖୁସିରେ ମୁରୁକି ହସି ଦେଇ ଚାଲିଯାଉଛନ୍ତି ।

କନକ ତନ୍ମୟ ହୋଇ ଯାଇଥାଏ ।

ଏତେ ଲୋକଙ୍କ ଗହଣରେ ସେ ନିଜର ଅସ୍ତିତ୍ୱ ଭୁଲିଯାଇଥିଲା । ମନରେ ଏକ ଅଦ୍ଭୁତ ଆନନ୍ଦ ହୃଦୟ ର ନିଭୃତ କୋଣରେ ଉପଭୋଗ କରୁଥିଲା ।

ମଧୁ, ଲମ୍ବାହଲର ସାମନାକୁ ଚାଲିଆସି, ସମସ୍ତଙ୍କୁ ପାଟି ଗୋଳ ନ କରିବା ପାଇଁ କହିଲା ।

ମଧୁକୁ ଆଗରେ ଦେଖି ଗା ମାଇପେ ତୁନି ହୋଇଗଲେ । ନିଜ ନିଜ ମଧ୍ୟରେ ହେଉଥିବା କଥାବାର୍ତ୍ତା ବନ୍ଦ ହୋଇଗଲା । କିଛି ସମୟ ସମସ୍ତଙ୍କୁ ଦେଖି ନେଇ ମଧ କହିଲା ।

ମା, ଭଉଣୀମାନେ,

ଆଜି ଆମର ଏକ ଶୁଭଦିନ ।

ତାର କଥା ଶୁଣି ସମସ୍ତେ ହୁଳହୁଳି ଦେଇ ତାକୁ ସ୍ୱାଗତ କଲେ ।

କିଛି ସମୟ ପରେ ପରିବେଶ ଶାନ୍ତ ହୋଇଗଲା ।

ଗାଁର ପ୍ରାୟ ସମସ୍ତ ମହିଳା ଏକାଠି ବସିଥାନ୍ତି । ଲମ୍ବାହଲ, ତଳେ ବସିବା ପାଇଁ ଦରି ପଡିଛି । ଛୋଟ ଛୋଟ ଛୁଆମାନେ ଇଏ ତା ମୁହଁକୁ ସେ ତା ମୁହଁକୁ ଅନାଇ ହସୁ-ଥାନ୍ତି । ସେମାନଙ୍କୁ ଆଜି ନୂଆ ନୂଆ ଲାଗୁଥାଏ । ମନରେ କୌତୁହଳ ।

ମଧୁ ପୁଣି କହିବା ପାଇଁ ଆରମ୍ଭ କଲା ।

ଆଜି ଗାଁଟି ଯାକର ସମସ୍ତେ ଏକାଠି ବସିଛୁଁ । ଗାଁର ସମସ୍ତେ ମିଳିମିଶି ସଭିଙ୍କ

ଉନ୍ନତି ପାଇଁ ଆମେ ଲାଗିଛୁଁ । ତେଣୁ ଗାଁର ମା ଭଉଣୀମାନେ ମଧ୍ୟ ଏକାଠି ଲାଗିବା ପାଇଁ ଆଜି ଆମେ ଏକତ୍ରିତ ହୋଇଛୁଁ ।

ଗାଁର ସମସ୍ତେ ଶିକ୍ଷିତ ହେବେ । ସମସ୍ତେ ଉପର୍ଜନ କରି ଭଲରେ ଚଳିବେ । ସମସ୍ତେ ମିଳିମିଶି ଚଳିଲେ ଗାଁର ଶ୍ରୀ ବଢ଼ିବ ।

ସମସ୍ତଙ୍କ ଆଡକୁ ଥରେ ଆଖି ବୁଲାଇ ଆଣି ମଧୁ କହିଲା ।

ଆମ ଦେଶ ହେଉଛି ଗୋଟିଏ ଗାଁ,ଗହଳୀର ଦେଶ । ତେଣୁ ଗାଁର ଉନ୍ନତି ହେଲେ ଦେଶର ଉନ୍ନତି ହେବ । ଗାଁରେ ଯେତେ ଅନାବନା ଜମିଥିଲା ତାକୁ ଏକାଠି କରି ନୂଆ ପଦ୍ଧତିରେ ଋଷକରି ଦୁଇଗୁଣ ତିନିଗୁଣ ଫସଲ ଉତ୍ପାଦନ କରିବା ପାଇଁ କାର୍ଯ୍ୟ ହାତକୁ ନିଆ ଯାଇଛି । ଦୁଧିଆଳି ଗାଈ ରଖି ଲୋକଙ୍କୁ ପୁଷ୍ଟିକର ଖାଦ୍ୟ ଯୋଗାଇବା ସଙ୍ଗେ ସଙ୍ଗେ ଲୋକଙ୍କ ଆର୍ଥିକ ଉପାର୍ଜନ ବୃଦ୍ଧି କରଯାଉଛି ।

ଏ ସମସ୍ତ ମୂଳରେ ଆମର ପ୍ରିୟ ଅତି ଆପଣାର ତପନ ଭାଇର ନିର୍ଦ୍ଦେଶରେ ସବୁ ଋଲିଛି ।

ତପନର ନାଁ ଶୁଣୁ ଶୁଣୁ ଗାଁ ମାଇପେ ଆନନ୍ଦରେ ହୁଳହୁଳି ଦେଇ ତାକୁ ଏବଂ ତା କାର୍ଯ୍ୟକୁ ଅନୁମୋଦନ ଜଣାଇଲେ ।

ହୁଳହୁଳି ଶବ୍ଦରେ ସ୍ଥାନଟି ମୁଖରିତ ହେଇ ଉଠିଲା ।

କନକ ନୀରବରେ ବସି ତପନ ଭାଇ ପ୍ରତି ଗାଁ ଲୋକଙ୍କ କେତେ ଶ୍ରଦ୍ଧା ସେ କଳନା କରିପାରୁ ନ ଥାଏ ।

ମଧୁ ପୁଣି କହିବାକୁ ଲାଗିଲା ।

ଆଜି ଆମ ଗହଣରେ ତାଙ୍କ ମା ଆମ ସମସ୍ତଙ୍କର ମାଉସୀ ମଧ୍ୟ ଆସି ଆମକୁ ଆଶୀର୍ବାଦ କରି ଆମ ଗହଣରେ ବସିଛନ୍ତି ।

ମହିଳା ସମିତିର ଦାୟିତ୍ୱ ଆମ ସମସ୍ତଙ୍କର ଆଦରର ଅପା, ଘନ ଅପାଙ୍କ ପରାମର୍ଶରେ ଋଲିଛି । ଆଜିଠୁଁ ତୁମେ ଯାହାଙ୍କୁ ଏତେଦିନ ହେଲା ଦେଖିବ ଦେଖିବ ବୋଲି ଅପେକ୍ଷା କରିଥିଲ ସେହି କନକ ନାନୀଙ୍କ ହସ୍ତରେ ଅର୍ପଣ କରୁଛୁଁ ।

କନକର ନା ଶୁଣିବା କ୍ଷଣି ମହିଳାମାନେ ଆନନ୍ଦରେ ହୁଳହୁଳି ଦେଇ ସ୍ଥାନଟିକୁ କମ୍ପାଇ ଦେଲେ ।

ଗାଁ । ଲୋକଙ୍କ ହରିବୋଳ ହରିବୋଳ ଶବ୍ଦରେ କମ୍ପି ଉଠିଲା ।

ଘନ ଅଜାଙ୍କର ମୁହଁରେ ଆନନ୍ଦର ଝଲକ ଖେଳି ଯାଉଥାଏ । ଆଖି ଛଳ ଛଳ ହୋଇ ଉଠିଲା ।

ଆନନ୍ଦରେ ତାଙ୍କ ହୃଦୟ ଅସ୍ଥିର ହୋଇଗଲା ।

କନକ ଉପରେ ଗାଁଟି ଯାକର ସମସ୍ତଙ୍କ ଦୃଷ୍ଟି ନିବଦ୍ଧ ହୋଇ ରହିଥାଏ । ଲୋକଙ୍କ ଏଭଳି ଶ୍ରଦ୍ଧାରେ ସେ ଆତ୍ମ ବିସ୍ମୃତ ହୋଇ ଯାଇଥାଏ ।

ତପନ ପାଖକୁ ଆସି ସମସ୍ତ ସ୍ତ୍ରୀ ଲୋକମାନଙ୍କ ସହିତ କନକକୁ ପରିଚିତ କରାଇ ଦେଲା ।

ଏ ହେଉଛି ଶମ୍ଭୁର । ସେ ... ରେବ ।

ସେ ହେଉଛି ଚେମିବଉ ।

ଏମିତି ଗୋଟି ଗୋଟି ସମସ୍ତଙ୍କ ସହିତ ପରିଚିତ କରାଇ ଦେଉଥାଏ । କନକ ସମସ୍ତଙ୍କ ସହ ପରିଚିତ ହେଉଥାଏ ।

ବୁଢା ବୁଢୀମାନେ ଆଶୀର୍ବାଦ କରୁଥାନ୍ତି । ସମବୟସୀମାନେ ନମସ୍କାର କରୁଥାନ୍ତି । ନୂଆ ବୋହୂମାନେ ହସି ହସି କହୁଥାନ୍ତି,କନକ ନାନୀ ଆମର,ଦେଖିବାକୁ କେତେ ସୁନ୍ଦର ।

ସେମାନଙ୍କ କଥା ଶୁଣି ଲଜ୍ଜାରେ ମୁହଁ ତାର ରଙ୍ଗା ପଡ଼ି ଯାଉଥାଏ ।

ଛୋଟ ଛୋଟ ଛୁଆମାନେ ତାକୁ ଘେରିଯାଇ ତା ମୁହଁକୁ ଅନାଉଥାଆନ୍ତି ।

କନକ ସେମାନଙ୍କ ଗାଲ, ମୁଣ୍ଡ ଆଉଁସି ହସି ଦେଉଥାଏ ।

ସେଥିରେ ପିଲାମାନଙ୍କ ମନ ଆନନ୍ଦରେ କୁରୁଳି ଉଠୁଥାଏ ।

ଦେଖା ସାକ୍ଷାତ କୋଳାହଳ ମଧ୍ୟରେ ସ୍ଥାନଟି ମୁଖରିତ ହୋଇ ଉଠୁଥାଏ ପିଲା-ମାନଙ୍କ ପାଟି ତୁଣ୍ଡରେ କାନ ଅତଡ଼ା ପଡ଼ଯାଉଥାଏ ।

ତପନ ମାଳତୀକୁ ଡାକି କହିଲା ।

ତୁ,ମାକୁ ନେଇ ଘରକୁଯା । ମୁଁ ଏବଂ ମଧୁ, କନକ ଏବଂ ତାର ବଉଳକୁ ନେଇ ଗାଁରେ ଛାଡ଼ି ଆସିବୁଁ । ମାଉସୀଙ୍କୁ ମଧ୍ୟ ଦେଖି ଆସିବି । ଅନେକ ଦିନ ହେଲା ଦେଖିନାହିଁ ।

ତପନର ମାବୁଢୀ କନକ ପାଖକୁ ଆସି, କନକର ମୁହଁକୁ ଚାହିଁ କହିଲା । ଆଜି

ମୋତେ କେତେ ଖୁସୀ ଲାଗୁଛି ଗାଁଟି ସାଙ୍ଗ ଆଜି କେତେ ଖୁସୀ ।

ତୁ ଘରକୁ ଗଲେ, ମାକୁ କହିବୁ, କେବେ ସୁବିଧା ଦେଖି ମୁଁ ଯାଇ ଭେଟି ଆସିବି । ଅନେକ ଦିନ ହେଲା ଦେଖିନାହିଁ ।

ମାଉସୀ ତମକୁ ମା ଦେଖିଲେ ସତରେ କେତେ ଖୁସୀ ହୁଅନ୍ତା । କନକ ଆଗ୍ରହରେ ବୁଢୀ ମୁହଁକୁ ଚାହିଁ କହିଲା, ହଉମା, ଦିନ ଆସିବ ମୁଁ ଯାଇ ତୋ ମାକୁ ଭେଟିବି ।

ବୁଢୀ ହସି ହସି କନକକୁ ଆଶୀର୍ବାଦ କରି କହିଲା ।

ମାଳତୀ ପାଖକୁ ଆସି କନକର ମୁଁହକୁଚାହିଁ କହିଲା, ତମ ଆସିବା ବାଟକୁ ଏଥର ଅନାଇ ରହିଥିବି ।

କନକ ମାଳତୀ ମୁହଁକୁ ଚାହିଁ ହସିଦେଲା ।

କନକ ସମସ୍ତଙ୍କଠୁଁ ମେଳାଣି ନେଇ ତପନ ସହ ଯିବାପାଇଁ ବାହାରିଲା ।

ଘନ ଅଜା ପାଖକୁ ଆସି, କନକ ମୁଣ୍ଡରେ ହାତରଖି ଆଶୀର୍ବାଦ କରି କହିଲେ ।

ଏଥର ତୋର ଦାୟିତ୍ୱ ଆସିଗଲା । ତୋର ହାତ ବାଜିଲେ ସବୁ ଠିକ୍ ହୋଇଯିବ ।

ସେ ବିଶ୍ୱାସ ମୋର ଅଛି !!

କନକ ଅଜାଙ୍କ ମୁହଁକୁ ଚାହିଁ ହସିଦେଇ ବିଦାୟନେଲା ।

ସମସ୍ତେ ଧୀରେ ଧୀରେ ଆଗକୁ ଚାଲିଯାଉଥାନ୍ତି ।

ବୁଢା ସେମାନଙ୍କ ଯିବା ବାଟକୁ ଅନାଇ ରହିଥାଏ ।

କନକ ମା ଧାଣ୍ଡ ପିଣ୍ଡାରେ କାନ୍ଥକୁ ଆଉଜେଇ ବସି, କନକ ଆସିବା ବାଟକୁ ଅନାଇ ରହିଛି ।

ପାଖରେ କନକର ଖୁଡୀ ବସି କଥା ହେଉଛି, ସେବି ତାର ଫେରିବା ବାଟକୁ ଅନାଇ ରହିଛି ।

ଆସିଲେ ସେ ଘରକୁ ଯିବ । ବୁଢୀକୁ ଦେହରେ ତେଲ ମାଲିସ କରି ମୁଣ୍ଡ କୁଣ୍ଡାଇ ଦେଇଛି । ବୁଢୀ ମନ ବି ଫୁର୍ତ୍ତି ଲାଗୁଛି, ଦେହରେ ବଳ ଆସିଛି, ଦୁର୍ବଳ ଦିଶୁଥିଲେ ମଧ୍ୟ ମନ ସତେଜ ଦେଖାଯାଉଛି ।

ରିଷ୍ଟ କଟିଯାଇଛି । ଜମ ତାକୁ ନେବାକୁ ଆସିଥିଲା । ନନେଇ ତାକୁ ଛାଡ଼ିଦେଇ ଯାଇଛି, ସେଥିରେ ବୁଢୀ ଆନନ୍ଦିତ ।

ସଂସାରର ମାୟା ମଣିଷ ଏତେ ସହଜରେ ଛାଡ଼ି ପାରେନା !

କନକର ମନ ଉଚ୍ଛନ୍ନ ହୋଇ ଉଠୁଛି । ମାକୁ ଛାଡ଼ି ଏତେବେଳ ହେଲା ସେ ଚାଲି ଆସିଛି । ଆଜି ତପନ ଭାଇ ତାକୁ ଛାଡ଼ିଦେବା ପାଇଁ ଆସୁଛନ୍ତି । ଏକାଠି ଦୁହେଁ ପାଦକୁ ପାଦ ମିଳାଇ ଆଗେଇ ଚାଲିଛନ୍ତି । ଦୁହିଁଙ୍କ ତୁଣ୍ଡରେ କଥା ନାହିଁ । ମାତ୍ର ମନରେ ଖେଳି ଯାଉଛି ଅନେକ ଭାବନା ।

ପଚ୍ଛରେ ତାର ବଉଳ ଚାଲିଛି ।

ମଧୁ ରାସ୍ତା କଡରେ ଶୋଭା, ଦୂର ପାହାଡ଼ର ଶୋଭା ଦେଖି ଦେଖି ଚାଲିଛି, ଦୂର ପାହାଡର ଶୋଭା ତପନକୁ ଆକୃଷ୍ଟ କରି ରଖିଛି । ସେ ତନ୍ମୟ ହୋଇ ଯାଇଛି ।

ଦୂରରୁ ସ୍ତ୍ରୀ ଲୋକମାନେ ମୁଣ୍ଡରେ କାଠ ବୋଝ ରଖି ତର ତର ହୋଇ ଘରକୁ ଫେରୁଥାନ୍ତି ।

ଛେଳି ଗୋଠ ସବୁ ଜଙ୍ଗଲରେ ଚରି ଲେଉଟି ଆସୁଥାନ୍ତି ।

କନକ ତପନର ନୀରବତା ଦେଖି ତା ଆଡକୁ ଥରେ ଅନାଇ ଦେଇ କହିଲା ।

କିଛି କହୁ ନାହଁ ଯେ !

ତପନ ତାର ହସିଲା ମୁହଁକୁ ଦେଖି ହସିଦେଲା ।

କନକ ମୁହଁ ତଳକୁ କରି କହିଲା, ହସିଲଯେ !

ତପନ କହିଲା, ତୋତେ ଦେଖିଲେ ମୋ ମୁହଁରେ ହସ ଚହଟି ଯାଏଲୋ !!

ସତେ ?

କନକ ପୁଲକିତ ହୋଇ ଏତିକ କହିଲା ।

ଦୁହିଁଙ୍କ ଭିତରେ ଅସରନ୍ତି ଘଟଣାର ସ୍ରୋତ ଖେଳି ଚାଲିଛି ।

ଭାବନାରେ ଧକ୍କା ଲାଗିଲା ।

ବଉଳ ପଛରୁ ଡାକି କହିଲା ।

ଦାଣ୍ଡ ଆଡକୁ ଦେଖ । ମାଉସୀ ବସି ଆମ ଆସିବା ବାଟକୁ ଅନାଇ ରହିଛନ୍ତି !!

କନକ ଭାବନା ରାଜ୍ୟରୁ ଫେରିଆସି ତା ବୁଢ଼ୀମାକୁ ଦୂରରୁ ଦେଖିଲା । ପାଦ ତର ତର କରି ଚାଲିଆସି କ୍ଷଣିକ ଭିତରେ ମା ପାଖରେ ପହଞ୍ଚିଗଲା ।

ମାଗୋ, ତୋତେ ଦେଖିବା ପାଇଁ ତପନଭାଇ, ମଧୁଭାଇ ଆସିଛନ୍ତି ।

ତପନ ପାଖକୁ ଆସି ତା ମାଉସୀର ପାଦଛୁଇଁ ନମସ୍କାର କଲା ।

ବୁଢ଼ୀ ତପନକୁ ଦେଖି ପାଖରେ ବସାଇ ଆନନ୍ଦରେ କହିଲା ।

ଯମପୁରିରୁ ଫେରି ଆସିଲି ପୁଅ, ତୁମମାନଙ୍କୁ ଦେଖିବି ବୋଲି ।

ମଧୁ ପାଖରେ ବସି, ତା ମାଉସୀକୁ କହିଲା ।

ଆମକୁ ଛାଡ଼ି କୁଆଡେ ଯାଇପାରିବ ମାଉସୀ !!

ହଁ ଲୋ ପୁଅ, ଛାଡି ଯିବାକୁ ମନ ହେଉନାହିଁ । ବୁଢ଼ୀ ସମସ୍ତଙ୍କୁ ଦେଖି ଆନନ୍ଦରେ ଏତକ କହିଲା ।

ପ୍ରଭାତୀ ପାଖକୁ ଚାଲିଆସି ଆନନ୍ଦ ଗଦ୍ ଗଦ୍ ହୋଇ କହିଲା । ମାଉସୀ ଗୋ, ଆଜି ବଉଳକୁ ଗାଁଟି ଯାକର ସ୍ତ୍ରୀ ଲୋକମାନେ ଯେଭଳି ହୁଳହୁଳି ଦେଇ ପାଛୋଟିନେଲେ ମୁଁ ଦେଖି କାନ୍ଦି ହୋଇଗଲି । ମୋ ବଉଳକୁ ଲୋକେ କେତେ ଶରଧା କରୁଛନ୍ତି । ତାଙ୍କୁ ଗାଁଟି ଯାକର ମାଇପେ ନିଜର କରି ନେଇ ସାରିଛନ୍ତି ।

ଆଜି ତପନ ଭାଇଙ୍କ ମା, ତାଙ୍କ ଭଉଣୀ ମାଳତୀ ଗାଁଟି ଯାକର ଝିଅ, ବୋହୂ, ବୁଢ଼ୀ ଛୁଆପିଲା ବସି ସଖ୍ୟକରି ବଉଳ ଉପରେ ମମତା ଅମିଠିର ଦାୟିତ୍ୱ ଦେଲେ ।

ତପନ ଭାଇ ସମସ୍ତଙ୍କ ସହ ଭେଟ କରାଇ ଦେଲେ ।

ସତେ ମାଉସୀ, ନ ଦେଖିଲେ ବିଶ୍ୱାସ କରି ହେବ ନାହିଁ ।

ଆଉ ସେଗାଁ, ଗାଁ ହୋଇ ରହିନାହିଁ । ସତେ ଯେପରି ଗାଁଟି ଫୁଲ ଫଳର ଏକ ବଗିଚା ମଣ୍ଡନ ହେଉଛି ।

ପ୍ରତ୍ୟେକ ଘର ଅଗଣାରେ ଫୁଲଗଛ, ବାଡ଼ରେ ଲେମ୍ବୁ, ଅମୃତଭଣ୍ଡା, ସଜନାଗଛ । କେତେଯେ ପନିପରିବାରେ ବାଡ଼ ହସି ଉଠୁଛି । ଘର ଲିପାପୋଛା ହୋଇ ପରିଷ୍କାର ପରିଚ୍ଛନ୍ନ । ଗାଁ ଦାଣ୍ଡ କେତେ ସାଫ୍ ସୁତରା ହୋଇ ଓସାରିଆ ହୋଇ ଯାଇଛି ।

ବଉଳଲୋ, ଆମେବି ଆମ ଗାଁକୁ ସଜାଇବୁ । ମୁଁ ମୋର ଭାଇକୁ କହିବି ଯାଇ ଥରେ ତପନ ଭାଇଙ୍କ ଗାଁକୁ ଦେଖିଆସୁ !!

ପ୍ରଭାତୀର କହିବା ଢଙ୍ଗ ଆନନ୍ଦରେ ବୁଢ଼ୀ ତାଟକା ହୋଇ ତାକୁ ଅନାଇ ରହି ସବୁ ଶୁଣୁଥାଏ ।

କନକ ତା ବଉଳର ଆନନ୍ଦକୁ ଦେଖି, ତା ମନ ଜୁଡ଼ାଇଲି ଉଠିଲା ।

ବଉଳ କେବେ ଆନନ୍ଦିତ ହୋଇଥିବା ସେ ଦେଖିନାହିଁ । କିବା ଏତେ କଥା କହିବା ଶୁଣିନାହିଁ ।

କନକର ମା, ତପନ ମୁଣ୍ଡରେ ହାତ ଅଇଁସି କହିଲେ ।

ମୋ ପୁଅ ଯେଉଁ କାମରେ ହାତ ଦେବ ସବୁ ସୁନ୍ଦର ହେବ ଲୋ ।

ତପନ ଏବଂ ମଧୁ ପ୍ରଭାତୀର ଆନନ୍ଦ ଦେଖି ମନେ ମନେ ଅପାର ଆନନ୍ଦ ଅନୁଭବ କରୁଥାନ୍ତି ।

ଏତିକି ବେଳେ ବାହାରୁ ଡାକ ଶୁଭିଲା ।

କନକ, ମା ଘରେ ଅଛି ?

ବାହାରେ କାହାର ଡାକ ଶୁଣି କନକ ମା ଉଠି ଅନାଇଲେ । ଘର ଭିତରକୁ ମୋହନବାବୁ, ଶଙ୍କର ହସି ହସି ପଶିଆସିଲେ ଏଇରାସ୍ତା ଦେଇ ଯାଉଥିଲୁ । କେମିତି ଅଛ ?

ଜ୍ୱର ତମର କମିଲା କି ନାହିଁ ବୋଲି ଟିକିଏ ଦେଖି ଦେବି ବୋଲି ଚାଲିଆସିଲି ।

କନକ ମା ବାବୁଙ୍କୁ ଦେଖି ବ୍ୟସ୍ତ ହୋଇପଡ଼ କହିଲା ।

ଆସ ବାବୁ ଆସ, ଘରକୁ ଆସ, ଆଜି ମୋର କେତେ ଭାଗ୍ୟ । ମୋ ଘରକୁ ବଡ଼ବାବୁ ଆସିଛନ୍ତି ।

ବୁଢ଼ୀ ଘର ଭିତରକୁ ଚାଲିଗଲେ ମସିଣା ଆଣିବାକୁ ।

ତପନ, ମଧୁକୁ ସେଠି ଦେଖି ଆଶ୍ଚର୍ଯ୍ୟ ହୋଇ ମୋହନବାବୁ ପ୍ରଶ୍ନ କଲେ ।

ଆରେ ତମେସବୁ କେତେବେଳେ ?

ଏଇତ ଆସୁଛୁ । ତପନ କହି ନମସ୍କାର କଲା ।

ହଁ ହଁ ଭଲକଲ ବାବୁ । ତମକୁ ମଧ୍ୟ ବହୁଦିନ ହେଲା ଦେଖି ନଥିଲି ।

କେମିତି ଅଛ ? ତମ ବାପା ମଲା ଦିନଠୁ ତମ ଘରକୁ ଯିବି ଯିବି ବୋଲି ଭାବୁଛି । କେତେବେଳେ ସମୟ ହେଉ ନାହିଁ ଯାଇପାରୁ ନାହିଁ ।

ସେତକ ମୋ ଭାଗ୍ୟରେ ହେଲା ନାହିଁ । ଆପଣଙ୍କ ପାଦଧୂଳି ଟିକକ ମୋ ଘରେ ପଡ଼ିଥିଲେ ମା ମୋର କେତେ ଖୁସୀ ହୋଇଥାନ୍ତା ।

ହଁ, ହଁ ତାନୁହେଁ ତ ଆଉ କଣ । ମୁହଁରେ କୁଟିଳ ହସ ଖେଳାଇ ମୋହନବାବୁ ଏତକ କହିଲେ ।

ଶଙ୍କର ମୁହଁକୁ ଗମ୍ଭୀର କରି ପାଖରେ ଛିଡ଼ା ହୋଇଥାଏ ।

କନକକୁ ଛିଡ଼ା ହୋଇଥିବା ଦେଖି ମୋହନବାବୁ କହିଲେ ।

ତୋର ତ ଆଜି କାଲି ଅନେକ କାମ, ଗାଁ ଗାଁ ବୁଲି ମହିଳା ସମିତି ଗଠନ କରୁଛୁ ବୋଲି ଶୁଣିଲି । ନାରୀ ଜାଗରଣ କରିବୁ, ଗାଁ ଗଣ୍ଡା ମହିଳାମାନେ ପାଠେଇ ହେବେ । ଗୀତ, ନାଚ ଶିଖିବେ, ଶୁଆଙ୍କ ରଚିବେ । ଏମିତି କେତେ କଣ ବୋଲି ଶୁଣୁଛି !!! ଏତକ କହି ହେଁ ହେଁ ହୋଇ ହସି ଉଠିଲେ ।

ମଧୁ ମୋହନବାବୁଙ୍କ କଥା ଶୁଣି ଟିକିଏ ଚିଡ଼୍ ଚିଡ଼୍ ହୋଇ କହିଲା ।

ଲୋକେ ଶିକ୍ଷିତ ହେଲେ, ଭଲ ନା ମନ୍ଦ ।

ମଧୁର ମନ୍ଦ ଡ଼ାକ ତାଙ୍କୁ କେମିତି ଅବାଗିଆ ଲାଗିଲା ।

ହଁରେ ଭଲ, ନୁହେଁ ତ କଣ ?

ଯେଉଁଠି ପୁରୁଷପିଲା ପାଠ ପଢୁନାହାନ୍ତି, ସେଇଠି ମାଇକିନାପିଲା ପାଠ ପଢ଼ିଲେ

ଦେଶ ଟେକି ଦେବେନା ?

ଗାଁର ମାଇପିମାନେ ଶିକ୍ଷିତ ହେଲେ ବଳେ ପୁରୁଷମାନେ ଶିକ୍ଷିତ ହେବେ ।

ତପନ ଆଗ୍ରହରେ ଏତକ କହିଲା ।

ଶଙ୍କର ପାଟି ଖଡ ବଡ ହେଉଥିଲା ।

କନକକୁ ଟିକିଏ ଚାହିଁଦେଇ କହିଲା ।

ହଁ ହଁ ରାଧାକୃଷ୍ଣ ଲୀଳା ଦେଖିବାକୁ ବାକି ରହିଲା ।

ସେ ବେଳକୁ ଅପେକ୍ଷା କରି ରହିଛୁଁ ।

ତାର ଇଙ୍ଗିତ ଏବଂ କଥାର ଭଙ୍ଗି ଶୁଣି କନକ ମୁଖମଣ୍ଡଳ ଲଜ୍ୟାରେ ନଇଁ ଆସିଲା ।।

ମଧୁ ଆଖି ନାଲକରି ଶଙ୍କରକୁ ଅନାଇଲା ।

ପରିସ୍ଥିତିକୁ ସମ୍ଭାଳି ନେଇ ଚତୁର ମୋହନବାବୁ କହିଲେ ।

ଆରେ ଶଙ୍କର ତୁ'ଟା କିଛି ବୁଝୁନାହୁଁ ?

ଦେଖୁନୁ ତପନ ଗାଁଟା ସାରା ସମସ୍ତଙ୍କୁ ଏକା କରି କେତେ କାମରେ ହାତ ଦେଇଛି ।

ସର୍ବେ ହୋଇବେ ଏକାକାର
ନଥିବ ଭେଦର ବିଚାର

ତେଣୁ ପୁଅ ଝିଅ,ସ୍ତ୍ରୀ,ପୁରୁଷ ସମସ୍ତେ ଏକ୍ ହୋଇଯିବେ ।।

ବାଃ ସୁନ୍ଦର । ଅତି ସୁନ୍ଦର ।

ମୋହନବାବୁ ସମସ୍ତଙ୍କୁ ଚାହିଁ ପରିସ୍ଥିତିଟାକୁ ସମ୍ଭାଳି ନେଇଛନ୍ତି ବୋଲି ଭାବି ଆତ୍ମତୃପ୍ତି ଅନୁଭବ କରୁଥାନ୍ତି ।

ଏତିକି ବେଳେ କନକ ମା ମସିଣାଟିଏ ଆଣି ପାରିଦେଇ ବସିବା ପାଇଁ କହିଲେ ।

ଥାଉ କନକ ମା, ତୁମକୁ ଟିକିଏ ଦେଖିବି ବୋଲି ଚାଲିଆସିଲି । ବାବୁ ମାନଙ୍କ ସଙ୍ଗେ ଭେଟ ବି ହୋଇଗଲା । ବସିଲେ ଆଉ ହେବ ?

ତେଣେ ମୋର କେତେ କାମ ।

ମଧୁ ମୁହଁରେ ରାଗ ଖେଳିଯାଇଥାଏ । କ୍ରୋଧ ଓ ହିଂସାରେ ମୁହଁ ରକ୍ତାକ୍ତ ହୋଇ ଉଠିଲା । ମାତ୍ର ମୁହଁରେ ଭାଷା ପାଇଲା ନାହିଁ ତାକୁ ପ୍ରକାଶ କରିବା ପାଇଁ ।

ସେମାନଙ୍କ ଅଭଦ୍ର ପରିହାସ ତା ମନକୁ କ୍ଷୁର୍ଣ୍ଣକଲା ।

ସୁକୁମାରୀ କନକକୁ ମଧ୍ୟ କଥାଟା ବାଧିଲା ।

ତା ମୁହଁର ଚଞ୍ଚଳତା କ୍ଷଣକେ ଲିଭିଗଲା ।

କନକକୁ ଟିକିଏ ଅନାଇ ଦେଇ ଶଙ୍କରକୁ ନେଇ ମୋହନବାବୁ ଚାଲିଗଲେ ।

ଅଶୁଭ ଗ୍ରହ ଭଳି ପଶିଆସି, ବାତାବରଣକୁ କଳୁଷିତ କରି ଚାଲିଗଲେ ।

ତପନ ଗମ୍ଭୀର ହୋଇ ବସିଯାଇଥାଏ ।

କନକ ମା, ସମସ୍ତଙ୍କୁ ନୀରବ ହୋଇ ବସିଥିବା ଦେଖି ସେ କିଛି ବୁଝି ପାରିଲେ ନାହିଁ ତାଙ୍କରି ଅଜଣାରେ ଶଙ୍କର କଥା ଏବଂ ମୋହନବାବୁଙ୍କ ଇଙ୍ଗିତ ଭାଷା,ସେମାନଙ୍କୁ ତାତ୍ପର୍ଯ୍ୟ ତାହା କନକ ମା, ଜାଣି ପାରିଲେ ନାହିଁ ।

ଚାହା ତିଆରି କରିବାପାଇଁ କନକ ଘର ଭିତରକୁ ଚାଲିଗଲା । ତା ସହିତ ତା ବଉଳ ମଧ୍ୟ ଚାଲିଗଲା ।

ମଧୁ ମନା କରୁଥାଏ, ଡେରି ହେବ ଆଉ ଚାହା ତିଆରି କରନାହିଁ ।

କନକ କିନ୍ତୁ ମାନିଲା ନାହିଁ ।

ଏ କେମିତି କଥା । ଆଜି ଦିନ ତମାମ୍ କାମ କରି କରି ଥକି ଗଲଣି । ଚାହା ଟିକିଏ ନ ପିଇ କେମିତି ଚାଲିଯିବ ?

ମୁଁ ଏହିକ୍ଷଣି, ଚଞ୍ଚଳ ଚାହା ତିଆରି କରି ନେଇ ଆସୁଛି ।

ମୋହନବାବୁ ଚାଲିଗଲା ପରେ କନକକୁ ଟିକିଏ ହାଲୁକା ଲାଗିଲା । ତାଙ୍କୁ ଦେଖିବାକ୍ଷଣି ତା ମୁହଁରେ ସରସତା ଟିକିକ ଲିଭି ଯାଇଥିଲା ।

ଏହି ଅନିଷ୍ଟ ଗ୍ରହ, ତାର ଅନିଷ୍ଟ କରିବା ପାଇଁ ତାର ପିଛା ଲାଗିଛି । ତାଙ୍କୁ ଦେଖିଲେ ତା ପ୍ରତି ଘୃଣା ବିରକ୍ତଭାବ ତା ମନରେ ଦେଖାଦିଏ ।

ଅକସ୍ମାତ ଆଜି ତାଙ୍କୁ ଦେଖି ମନେ ମନେ କେତେ ଦୁଃଶ୍ଚିନ୍ତା ଖେଳି ଯାଇଥିଲା । ମଣିଷଖିଆ ବାଘ ଯେପରି ମଣିଷର ଗନ୍ଧ ଶୁଙ୍ଘି ଶୁଙ୍ଘି ମଣିଷକୁ ଆକ୍ରମଣ କରିଥାଏ ଠିକ୍ ସେଭଳି ସେ ତାର ଗତିବିଧି ଜାଣି ସେ ଘରେ ଥିବା ନଥିବା ଖବର ଜାଣି ଠିକ୍ ସମୟରେ ଆସି ତପନ ଭାଇଙ୍କୁ ଆଘାତ ଦେବାପାଇଁ ସୁଯୋଗ ଖୋଜି ରହିଥିଲା ।

ତପନ ଭାଇ ମନେ କଣ ଭାବିଥିବେ ?

ଛି,ଛି କେଡ଼େ ନିର୍ଲଜ୍ଜା କାଥ ସବୁ କହିଗଲ ।

ଏମିତି କେତେ କଥା ତା ମନରେ ଖେଳି ଯାଉଥାଏ ।

ଏମାନେ ନାରୀକୁ କେବଳ ଭୋଗ୍ୟବସ୍ତୁ ରୂପେ ଦେଖନ୍ତି ।

ଦୁଇ ବଉଳ ଶିଘ୍ର ଚାହା ତିଆରି କରି ନେଇ ଆସିଲେ ।

ତପନ ଚାହା ପିଉ ପିଉ କହିଲା ।

କାଲିଠୁ ତୋର କାମ ଏବଂ ଦାୟିତ୍ୱ ବଢ଼ିଗଲା ।

କନକ ଆଗ୍ରହର ସହିତ କହିଲା ।

ମୁଁ ମୋ କାମରେ ଟିକିଏ ବି ହେଳା କରିବି ନାହିଁ ।

ତୁମେ ନିଶ୍ଚିନ୍ତ ରହ ।

କନକଠୁ ଏତକ ଶୁଣିଲା ପରେ, ତପନ, ଏବଂ ମଧୁ ମୁହଁରେ ହସ ଚହଟି ଆସିଲା ।

କିଛିକ୍ଷଣ ପୂର୍ବରୁ ମନ ତାର ବିଷର୍ଣ୍ଣ ହୋଇ ଉଠିଥିଲା । ହଠାତ୍, କନକର ଏଭଳି ଉତ୍ତର ଶୁଣି ତା ମୁହଁ ଝଲସି ଉଠିଲା ।

ସତେ ଯେପରି କିଛି ଘଟିନାହିଁ ।

କନକକୁ ସେ ତନ୍ମୟ ହୋଇ ଚାହିଁରହିଲା ତାର ଉଜ୍ଜ୍ୱଳ ମୁହଁରେ ଏକ ଜ୍ୟୋତି ନିର୍ଗତ ହେଉଥିଲା ଭଳି ତାକୁ ମନେ ହେଲା ।

ପ୍ରଭତୀ ଟିକିଏ ଥଟ୍ଟାକରି କହିଲା ।

ଭାଇ ମୋତେ କିଛି କାମ ଦେଇଯାଉ ନାହଁ ଯେ ?

ତପନ ହସି କହିଲା ।

ତୁ ପର ଗାରେ ତୋ ଭାଇକୁ କହି, ଆମଗାଁ ଯେପରି ଅଛି ସେପରି କରିବୁ ବୋଲି କହିଲୁ ।।

ସତେତ ମୁଁ ପୋଡ଼ାମୁହାଁ ଏତକ ଭୁଲି ଯାଉଛି ବୋଲି କହି ହସି ଦେଲା ।

ଆଜିଠୁ ତମେବି ଆମ ସମିତି ସହିତ ସାମିଲ ହୋଇଗଲ । ଜନସେବା ନୀଳୟର ତୁମେ ମଧ୍ୟ ସଭ୍ୟା ହୋଇଗଲ ।

ମଧୁ ଏତକ ହସି ହସି କହିଲା ।

ବୁଢ଼ୀ ସେମାନଙ୍କ ହସଖୁସୀ ଦେଖି କହିଲା ।

ମୁଁ ଅଉ ବାକୀ ରହିଗଲି କାହିଁକି ?

ତମେତ ମାଉସୀ, ଆମର ପ୍ରଥମ ସନ୍ଧ୍ୟା ହୋଇସାରିଛି ।

ଯେଉଁଦିନ କନକକୁ ଆଶୀର୍ବାଦ କରିସାରିଛ ।

ତପନ ଏତକ କହି ବୁଢ଼ୀକୁ ଅନାଇ ରହିଲା ।

ବୁଢ଼ୀର ମୁଁହରେ ଆତ୍ମତୃପ୍ତି ଖେଳିଗଲା । ମୁହଁରେ ହସ ଚହଟି ଆସିଲା ।

ଗୋଧୂଳିର ମ୍ଳାନଛାୟା ଧରା ପୃଷ୍ଠେ ବିଛାଇ ହୋଇଯାଉ ଥାଏ ।

ସୂର୍ଯ୍ୟଦେବ ପଶ୍ଚିମ ଆକାଶରେ କେତେବେଳୁ ଲୁଚିଗଲେଣି । ଅନ୍ଧାର ଧୀରେ ଧୀରେ ମାଡ଼ ଆସୁଥାଏ । ଆକାଶରେ ପକ୍ଷୀ କଳରବ କରି ନିଜ ନିଜ ନୀଡ଼ ଅଭିମୁଖେ ଫେରି ଆସିଥାନ୍ତି ।

ଗାଁ ଦାଣ୍ଡରେ ଗାଈ,ଗୋରୁ ଧୂଳି ଉଡ଼ାଇ କେତେବେଳୁ ଅସି ନିଜ ନିଜ ଗୁହାଳରେ

ବିଶ୍ରାମ କରି ସାରିଥାନ୍ତି ।

ପଲ୍ଲୀଗାଁ ।

ଦାଣ୍ଡର ଲୋକ ଗହଳି ଧୀରେ ଧୀରେ କମି ଆସୁଥାଏ ।

ଲୋକଙ୍କ ଚଳପ୍ରଚଳ ଆଉ ନାହିଁ ।

ପତ୍ର ଗହଳି ମଧ୍ୟ ଦେଇ ଅନ୍ଧକାର ଗାଁରେ ବିରାଜମାନ କରି ଗାଁଟିକୁ ନୀରବ ନିସ୍ତବଧ କରି ଦେଇଥାଏ ।

ସତେ ଯେପରି ଅନ୍ଧକାର ଗାଁଟିକୁ ଧୀରେ ଧୀରେ ଗ୍ରାସ କରି ଦେବାରେ ଲାଗିଛି ।

ଛୋଟ ଛୋଟ କୁଡ଼ିଆଘରେ କାଁ ଭାଁ ସଞ୍ଜଦୀପ ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ ।

ଅନ୍ଧକାରକୁ ଦୂର କରିବା ପାଇଁ ଏ ଏକ କ୍ଷୀଣ ପ୍ରୟାସ କରି ଚାଲିଥାଏ ।

ତପନ ଏବଂ ମଧୁ ମାଉସୀର ସ୍ୱାସ୍ଥପ୍ରତି ଖୁଡ଼ୀଙ୍କୁ ଦାୟିତ୍ୱ ଦେଇ କନକକୁ ପରାମର୍ଶ-ଦେଇ ବିଦାୟ ନେଇ ଚାଲିଆସିଲେ ।

ଦୂରରୁ କନକ ସେମାନଙ୍କ ଫେରିଯିବା ରାସ୍ତାକୁ ଅନାଇ ରହିଥାଏ । ଆଗକୁ ଆଗକୁ ସେମାନେ ବଢ଼ି ଚାଲିଥାନ୍ତି ।

ଯେତେବେଳ ପର୍ଯ୍ୟନ୍ତ ସେମାନଙ୍କ ଛାୟା ଅନ୍ଧାରର କ୍ଷୀଣ ଆଲୁଅରେ ବାରି ହେଉଥାଏ, ସେତେବେଳ ପର୍ଯ୍ୟନ୍ତ ନିର୍ନିମେଷ ନୟନରେ ଅନାଇ ରହିଥାଏ ।

କନକ ଗାଁ ଗାଁ ବୁଲି ମହିଳା ସମିତିର କାର୍ଯ୍ୟ ଆଗେଇ ନେଇ ଚାଲିଥାଏ । ଗାଁ ମାନଙ୍କରେ ଖେଳି ଯାଇଥାଏ ଏକ ଅପୂର୍ବ ଉନ୍ମାଦନା । ନୂଆ ଜାଗରଣ । ପାଖ ଆଖ ଗାଁରେ କି ଯୁବକ କି ବୁଢ଼ା, କି ବୁଢ଼ୀ ଗାଁର ଝିଅ ଭଉଣୀ ବୋହୂମାନଙ୍କ ମନରେ ଆନନ୍ଦର ଲହରୀ ଖେଳି ଯାଉଥାଏ । ସତେ କି ଏତେ ଦିନ ଧରି ସେମାନେ ଅନ୍ଧକୂପ ଭିତରେ ପଡ଼ିଥିଲେ । ସେମାନଙ୍କୁ କନକନାନୀ ଉଦ୍ଧାର କରିଛନ୍ତି ।

କନକର କାର୍ଯ୍ୟ ଦିନକୁ ଦିନ ବଢ଼ିଯାଇଥାଏ । ଗାଁକୁ ଗାଁ ବୁଲି ସ୍ତ୍ରୀଲୋକମାନଙ୍କୁ ଘର ପରିଷ୍କାର, ପୁଅ ଝିଅମାନଙ୍କ ଯତ୍ନ, ସେମାନଙ୍କୁ ନିୟମିତ ପାଠ ପଢ଼ାଇବା ପାଇଁ ସ୍କୁଲ ପଠାଇବା ଏ ସମସ୍ତ କାର୍ଯ୍ୟ ପ୍ରତି ବୁଝାଇ ସେମାନଙ୍କ ମଧ୍ୟରେ ଗୋଟିଏ ଉତ୍ସାହ ସୃଷ୍ଟି କରି ପାରିଥାଏ । ଗାଁର ଜଣେ ବି ଛୁଆ, ଯେପରି ସ୍କୁଲ ଶିକ୍ଷାରୁ ବଂଚିତ ନ ହୁଏ ସେଥିପ୍ରତି ଯୁବକ ସଂଘ ଜରିଆରେ ତାର ଦେଖା ରଖା କରିବ ଏଭଳି ଅନେକ କାମ ଚାଲିଥାଏ । ଛୋଟ ଛୋଟ ପୁଅ ଝିଅ କନକନାନୀକୁ ଦେଖିଲେ ସେମାନଙ୍କ ଆନନ୍ଦ କହିଲେ ନସରେ ।

ଦୂରରୁ ଦେଖିଲେ, ଖେଳ ଛାଡ଼ି କନକ ପାଖକୁ ଦୌଡ଼ିଯାଇ କେତେ କଥା କହି ଚାଲିଥାନ୍ତି । ସତେ କି ମନରେ ସଂଚିତ ରଖିଥିବା କଥା ଗୋଟି ଗୋଟି ଥଙ୍ଗେଇ ଥଙ୍ଗେଇ କହି ଚାଲିଥାନ୍ତି । କନକ ଆଗ୍ରହରେ ସେମାନଙ୍କ କଥା ଶୁଣି, କା ମୁଣ୍ଡକୁ ଆଉଁସି କା ନାକରୁ ସିଙ୍ଘାଣି ପୋଛି, କା ଦେହରୁ ଧୂଳି ଝାଡ଼ିଦେଇ କାହାକୁ କାଖେଇ ଗୋଟି ଗୋଟି ସମସ୍ତଙ୍କୁ ଗେହ୍ଲା କରି ସବୁ ଶୁଣୁଥାଏ । ଘରର ଝିଅ ବୋହୂମାନେ ତାକୁ ଦେଖିଲେ ଘରକାମ ଛାଡ଼ିଦେଇ ତାକୁ ଘେରି ଯାଆନ୍ତି । ସେମାନଙ୍କଠୁ ସମସ୍ତ କଥା ଆଗ୍ରହରେ ଶୁଣେ । କାହା ଘରେ ଚୂଲି ଜଳିନାହିଁ । ଏତକ ଜାଣିଲା ପରେ ପଢ଼ଶାଘରୁ ସାହାର୍ଯ୍ୟ ମାଗି, ତା ମୁହଁରେ ଆଧାର ନେବା ବ୍ୟବସ୍ଥା କରାଇଦିଏ । କାହାକୁ ଜ୍ୱର ହେଇଛି ତାକୁ ଦେଖି ମୁଣ୍ଡ ଆଉଁସି-ଦେଇ ଔଷଧ ବ୍ୟବସ୍ଥା କରେ । କେଉଁ ସ୍ତ୍ରୀଲୋକ ତାର ଛୋଟ ଛୁଆକୁ ଘରେ ଶୁଆଇ‌ଦେଇ ପଢ଼ଶାଘର ସ୍ତ୍ରୀଲୋକକୁ କହି ମୂଳ ଲାଗିବାପାଇଁ ଚାଲିଯାଇଥାଏ । ଉପାର୍ଜନ କରି ଘରକୁ ଆଣିଲେ ରୋଗୀଣୀ ସ୍ୱାମୀ, ଛୁଆ ମୁହଁରେ ଆଧାର ଦେବ । ମା ଫେରିବା ଡେରିହେଲେ ଛୁଆ ଗଳାଧରି କାନ୍ଦୁଥିବ । କନକ ପାଖକୁଯାଇ ତାକୁ କାଖେଇ, ଶାନ୍ତ୍ୱନା ଦେଇ ବୁଝାଇ ସୁଝାଇ ଶୁଆଇ ଦିଏ ।

ସମସ୍ତଙ୍କ କଥା ଶୁଣି ସେମାନଙ୍କ ଘର ଘର ବୁଲି ସେମାନଙ୍କୁ, ବୁଝାଇ, କାହାକୁ ପରାମର୍ଶ ଦେଇ ଆର ଗାଁକୁ ଚାଲିଯାଏ ।

ଏଭଳି କନକ ଦିନ ତମାମ ଘର ଘର ବୁଲି ପ୍ରତ୍ୟେକଙ୍କ ଭଲମନ୍ଦ ବୁଝି ଅଞ୍ଚଳରେ ବେଶ୍ ଜଣାଶୁଣା ହୋଇ ଯାଇଥାଏ । ତାକୁ ଦେଖିଲେ ପ୍ରତ୍ୟେକ ତାଙ୍କ ଘରର ଜଣେ ବୋଲି ଧରି ନେଇଥାନ୍ତି । କନକ ମଧ୍ୟ କାହାକୁ ମଉଷା, କାହାକୁ ଭାଇ, କିଏ କକା,ମାନ୍ୟ

କରି ସେମାନଙ୍କ ସ୍ନେହ ଶ୍ରଦ୍ଧାରେ ଭଜନ ହୋଇପାରିଥାଏ ।

ଝିଅ, ବୋହୂ, ବୁଢା, ବୁଢୀମାନଙ୍କୁ ମଧ୍ୟ ଯଥାମାନ୍ୟ କରି ସେମାନଙ୍କ ସ୍ନେହ ଶ୍ରଦ୍ଧା ପାଉଥାଏ ।

ସେହି ଲାଜକୁଳି କନକ ଆଜି ଅଞ୍ଚଳର୍ ବେଶ୍ ଜଣାଶୁଣା ଅତି ଆପଣାର କନକନାନୀ ରୂପେ ପରିଚିତ ହୋଇଯାଇଥାଏ ।

କନକ ମଧ୍ୟ ଗାଁ ଗାଁ ବୁଲିବା ଲୋକଙ୍କ ଭଲମନ୍ଦ ବୁଝିବା ତାର ଅତି ନିତିଦିନିଆ କାର୍ଯ୍ୟ ତାକୁ ଅପାର ଆନନ୍ଦ ଦେଉଥାଏ । କାମ କରିବାରେ ପରିଶ୍ରମ କରିବାରେ ଲୋକଙ୍କ ସହ ମିଶିବାରେ ଏତେ ଆନନ୍ଦ ସେ କେବେ ଅନୁଭବ କରି ପାରିନଥିଲା ।

ତେଣୁ ଏତେ ପରିଶ୍ରମ ସତ୍ତ୍ୱେ ସେ କେବେ କ୍ଲାନ୍ତ ଅନୁଭବ କରିନଥାଏ । ପରିଶ୍ରମ କଲେ ମନରେ ଫୁର୍ତ୍ତି ଆଣି ଦେଇଥାଏ । ତେଣୁ ଅଧିକ କାମ କରିବା ପାଇଁ ଉତ୍ସାହ ସୃଷ୍ଟି କରିଥାଏ । ଏହାହିଁ ପରିଶ୍ରମର ବିଶେଷତ୍ୱ, ସେ ସ୍ୱଷ୍ଟ ଆଜି ଉପଲବ୍ଧି କରିପାରୁଥାଏ ।

ପ୍ରତିଦିନ ତା ମାବୁଢୀ ପାଇଁ ଖାଇବା ବ୍ୟବସ୍ଥା କରି ଦିନ ତମାମ ଗାଁ ଗାଁ ବୁଲି ସନ୍ଧ୍ୟାକୁ ସେ ଘରକୁ ଫେରି ଆସୁଥାଏ । ତେଣୁ ତାର ଅନୁପସ୍ଥିତିରେ ତାର ଖୁଡୀ ଦେଖା ରଖା କରି ତାର ମାର ଯତ୍ନ ନେଉଥାଏ । ତେଣୁ ବୁଢୀର ମଧ୍ୟ କିଛି ଅସୁବିଧା ହେଉନ-ଥାଏ ।

କନକ ଘରକୁ ଫେରିଆସିଲେ ତା ମା ପାଖରେ ବସି କେତେ କଥା, କେତେ ଲୋକଙ୍କ ଭଲମନ୍ଦ ଗୋଟି ଗୋଟି ବୁଢୀକୁ ଶୁଣାଏ । ବୁଢୀ ତା'ଠୁ ଶୁଣି ଆଶ୍ଚର୍ଯ୍ୟ ହୋଇ କହେ ।

ତୁ ଏତେ ଗାଁ ଯାଉଛୁ. ଏତେ ଲୋକଙ୍କୁ କେମିତି ଭେଟି ପାରୁଛୁ ? ଆଶ୍ଚର୍ଯ୍ୟ ହୋଇ ତା ମୁହଁକୁ ଅନାଇ ରହେ । ହଁ ମା ମୋର କିଛି ଅସୁବିଧା ହେଉନାହିଁ । ଗାଁକୁ ଗଲେ ଗାଁର ଝିଅ, ବୋହୂ ଏକାଠି ଆସିଯାଆନ୍ତି । ମୁଁ ସେମାନଙ୍କୁ ସବୁ ବୁଝାଇ ଦିଏଁ । ସେମାନେ ତାଙ୍କ କଥା ଗୋଟି ଗୋଟି ମୋତେ କହନ୍ତି । ମୁଁ ସବୁ ଶୁଣେ । ତାର ପ୍ରତିକାର କରେଁ । ସମସ୍ତେ ମୋତେ ତାଙ୍କ ଅତି ଆପଣାର ଲୋକ ବୋଲି ସମସ୍ତ କଥା କହନ୍ତି । ଲୁଚ ଛପା କିଛି କରନ୍ତି ନାହିଁ ।

ବୁଢୀ ତନ୍ମୟ ହୋଇ ତା ଝିଅ ମୁହଁକୁ ଅନାଇ ଶୁଣୁଥାଏ ।

ଗାଁ ମାନଙ୍କରେ ମହିଳା ସମିତି ଜରିଆରେ ଅନେକ ନୂଆ ନୂଆ କଥା ଘଟିବାକୁ ଯାଉଛି । ଗାଁରେ ଆଉ କିଏ ଅଶିକ୍ଷିତ ହୋଇ ରହିବେ ନାହିଁ । କି ପୁରୁଷ, କି ସ୍ତ୍ରୀ ସମସ୍ତେ

ଉପାର୍ଜନ କ୍ଷମ ହୋଇ ପାରିବେ । ଝିଅ ବୋହୂମାନେ ମଧ୍ୟ ଘରେ ଘରେ ନିଜ ଘରକାମ ସାରି କିଏ ସିଲାଇକରି, କିଏ ସୂତା କାଟି କିଏ କୁସ୍ କାମ କରି କିଏ ବାଉଁସରେ ଡିଆରି ଟୋକେଇ, କୁଲା, ତାଟିଆ କାମ କରି, ଏଭଳି ଅନେକ କାମ ହାତକୁ ନେଇ ଅଧିକା ଉପ୍ର୍ଜନ କରି ପାରିବେ । ବାଳକ ସମୟ ମଧ୍ୟରେ ପରିଶ୍ରମ କରି ଅଧିକା ଉପାର୍ଜନ କରି ଘର ଚଳାଇବେ । ଅଧିକ ଦୁଇ ପଇସା ହାତକୁ ଆସିବ । ଘରର ଅଭାବ ମେଣ୍ଟିବ । ପୁଅ, ଝିଅ, ପାଇଁ ପେଣ୍ଟ, କୁରୁତା, ଫ୍ରକ୍ କିଣି ପିନ୍ଧାଇ ପାରିବେ । ଘରର ଅଭାବ ମେଣ୍ଟିଯିବ । ସୁଖରେ ଚଳିବେ । ଘରର ଆର୍ଥିକ ପରିସ୍ଥିତିରେ ଉନ୍ନତି ଘଟିବ ।

କିଏ କାହିଁକି ମନା କରିବ ??

ତେଣୁ ସମସ୍ତେ ଗାଁ ମାନଙ୍କରେ ମାତି ଯାଇଛନ୍ତି । ଗୋଟିଏ ଟ୍ରେଣ୍ଡ ଆସିଯାଇଛି । ଗାଁରେ ବେକାର ହୋଇ କିଏ ରହିବେ ନାହିଁ । ଅଳସୁଆମିରେ ଦିନ କାଟିବା ମହାପାପ । ଦିନରାତି ପରିଶ୍ରମ କରି ଅର୍ଥ ଉପାର୍ଜନ କରି ପରିବାରକୁ ସୁଖରେ ରଖିବା ଏକ ପୁଣ୍ୟ ବୋଲି ଏବଂ ଏହା ନିଜର ଦାୟିତ୍ୱ ବୋଲି ଲୋକେ ବୁଝିବାକୁ ଆରମ୍ଭ କଲେଣି । ତେଣୁ ଆଜି ସମସ୍ତଙ୍କ ମୁହଁରେ ହସ ଚହଟି ଯାଉଛି । ସମସ୍ତେ ଭଲରେ ଗଣ୍ଡିଏ ଖାଇ, ଭଲରେ ଖଣ୍ଡିଏ ପିନ୍ଧି ନିଜ ନିଜ କାମରେ ଲାଗିପଡ଼ିଛନ୍ତି ।

ତେଣୁ ଆଜି ଏକ ବିରାଟ ପରିବର୍ତ୍ତନ ଦେଖା ଦେଇଛି । ପ୍ରତି ଗାଁରେ ସମବାୟ ସମିତିର ଶାଖା ଖୋଲା ଯାଇଛି । ପ୍ରତି ଗାଁରେ ଦୁଗ୍ଧ ଯୋଜନା କାର୍ଯ୍ୟ ଆଗେଇ ଚାଲିଛି । ଅନାବନା ଜମିରୁ ପନିପରିବା, ପୋଟଳ, ପାଟଳଘଣ୍ଟା, ବାଇଗଣ, ଭେଣ୍ଡି ଉତ୍ପାଦନ ହୋଇ, ପ୍ରତ୍ୟେକ ଚାଷୀ ଅଧିକ ଉତ୍ପାଦନ କରି ଆର୍ଥିକ ଲାଭବାନ ହୋଇ ପାରିଛନ୍ତି ।

ଯେଉଁ ଜମିର ଗୋଟିଏ ଚାଷପରେ ଚାଷୀ ଘରେ ବସି ନୀରବରେ ଭୋକ ଉପାସରେ ଦିନ କାଟୁଥିଲା, ଆଜି ସେହି ଚାଷୀ ତିନୋଟି ଫସଲ ଉତ୍ପାଦନ କରିବା ପାଇଁ ଦିନରାତି ପରିଶ୍ରମ କରୁଛି । ଧାନଚାଷ ପରେ ସୋରିଷ, ତା ପରେ ଚିନାବାଦାମ କିଏ ଚାଷ କରୁଛିତ କିଏ ଧାନ ପରେ ଗହମ ଏବଂ ତା ପରେ ପିଆଜ ଉତ୍ପାଦନ କରି ପାରୁଛି । ପ୍ରତ୍ୟେକ ଚାଷୀ ନିଜ ନିଜ ଜମିରେ କୂଅ ଖୋଳାଇ ପାଣିର ବ୍ୟବସ୍ଥା କରିଛି । କିଏ ସରକାରରୁ ଆର୍ଥିକ ସାହାଯ୍ୟ ପାଇଛିତ କିଏ ସମବାୟ ବିଭାଗରୁ ଋଣ ଆଣି କୂଅ ଖୋଳାଇ ପାଣିର ବ୍ୟବସ୍ଥା କରି ପାରିଛି ।

ଏଥିପାଇଁ ଆଜି ସମସ୍ତଙ୍କ ଭିତରେ ଦେଖା ଦେଇଛି ଜାଗରଣ, ଉତ୍ସାହ ଏବଂ ପ୍ରତିଦ୍ୱନ୍ଦିତା ।

ଏ ସମସ୍ତ କାର୍ଯ୍ୟକୁ ତପନ, ମଧୁ, ଘନଅଜା ଅଉ ଗାଁର ଅନେକ ଯୁବକ ବାହାରି ତଦାରଖ କରି ଲୋକଙ୍କୁ ସାହାର୍ଯ୍ୟ, ସହଯୋଗ ପ୍ରଦାନ କରି ସମସ୍ତଙ୍କର ଉନ୍ନତି କରିବାରେ ସାହାର୍ଯ୍ୟ କରି ଚାଲିଛନ୍ତି ।

ଗାଁର ମାଳି ମୋକଦ୍ଦମା ମଧ୍ୟ ଆଜି ଗାଁରେ ଏକାଠି ବସି ତାର ସମାଧାନ କରଯା-ଇଛି । ପୋଲିସକୁ ଦୌଡ଼ିବାକୁ ପଡୁନାହିଁ । ଗାଁ ସମସ୍ୟା ଗାଁରେହିଁ ସମାଧାନ ହେଉଛି । ଉଭୟପକ୍ଷ ତାକୁ ଆନନ୍ଦରେ ଗ୍ରହଣ କରିନେଉଛନ୍ତି ।

ତେଣୁ ପୋଲିସକୁ ଦୌଡ ସମୟ ନଷ୍ଟକରି ସର୍ବସ୍ୱାନ୍ତ ଏବଂ ହନ୍ତସନ୍ତ ହେଉଥିଲେ, ଗାଁରେ କନ୍ଦଳ, ରାଗ ହିଂସା ବଢ଼ି ଚାଲିଥିଲା, ସେଥିରୁ ଆଜି ମୁକ୍ତ ହୋଇଅଛି । ଲୋକମାନଙ୍କ ମଧ୍ୟରେ ଶାନ୍ତି ଫେରି ଆସିଛି । ଲୋକଙ୍କ ମଧ୍ୟରେ ସହଯୋଗ ଦିନକୁ ଦିନ ବଢ଼ିଚାଲିଛି । ଗାଁ ପୋଖରୀରୁ ପଙ୍କ ଉଦ୍ଧାର କରି ପରିଷ୍କାର ପରିଚ୍ଛନ୍ନ କରଯାଇ ଗାଁ ଲୋକଙ୍କ ନିତ୍ୟ ବ୍ୟବହାର୍ଯ୍ୟ ପାଇଁ ବ୍ୟବହାର କରଯାଉଛି । ଯେଉଁ ଗାଁରେ ଅଧିକ ପୋଖରୀ ଅଛି ସାଆଁଳ ମାଛ ଛାଡ଼, ମାଛ ଚାଷକରି, ଅଧିକ ଉପାର୍ଜନ କରି ଗାଁ ପାଣ୍ଠି ବୃଦ୍ଧି କରଯାଇ ଗାଁର ଅନେକ ମଙ୍ଗଳ କାର୍ଯ୍ୟ କରଯାଇଛି । ସେହି ଉପାର୍ଜିତ ଅର୍ଥରେ ଗାଁର ପାଠାଗାର, ପୌଢ଼ଶିକ୍ଷା କେନ୍ଦ୍ର ଖୋଲାଯାଇ ଲୋକଙ୍କ ମନରେ ଏକ ନୂଆ ଜାଗରଣ ସୃଷ୍ଟି କରଯାଇ-ପାରିଛି । ଚାରି ପାଞ୍ଚଟି ଗାଁ ମଧ୍ୟ ଭାଗରେ ସମୃଦ୍ଧ ଖେଳ ପଡ଼ିଆ ନୂଆ କରି ତିଆରି କର-ଯାଇପାରିଛି । ତେଣୁ ପାଠପଢ଼ା ଶେଷ ପରେ ପିଲାମାନଙ୍କ ଫୁଟ୍‌ବଲ ଖେଳର ଝୁଙ୍କ ବଢ଼ି-ଯାଇଛି । ସନ୍ଧ୍ୟା ହେଲେ ପିଲାମାନଙ୍କ ଖେଳପଡ଼ିଆରେ ଫୁଟବଲ ଖେଳିବା ପାଇଁ ପ୍ରବଳ ଆଗ୍ରହ ସୃଷ୍ଟି ହୋଇଛି । ଗାଁ ଲୋକମାନେ ମଧ୍ୟ ପିଲାଙ୍କୁ ଉତ୍ସାହିତ କରିବା ପାଇଁ ଖେଳ-ପଡ଼ିଆରେ ସମବେତ ହୋଇ ଖେଳାଳୀଙ୍କୁ ଉତ୍ସାହିତ କରୁଛନ୍ତି ତେଣୁ ଖେଳାଳୀ ଏବଂ ଦର୍ଶକଙ୍କ ଉପସ୍ଥିତିରେ ଖେଳ ପଡ଼ିଆ ମୁଖରିତ ହୋଇ ଉଠୁଥାଏ ।

ଗ୍ରାମ୍ୟ ଜୀବନର ଏ ଏକ ବିରାଟ ପରିବର୍ତ୍ତନ । ପରିବର୍ତ୍ତନ କେବଳ ବାହ୍ୟ ରୂପରେ ନୁହେଁ । ଅନ୍ତରର ମଧ୍ୟ ବିରାଟ ପରିବର୍ତ୍ତନ ଦେଖାଦେଇଛି । ଲୋକଙ୍କ ଉତ୍ସାହ ଉଦ୍ଦୀପନାରେ ଗାଁମାନଙ୍କ ରୂପରେଖ ବଦଳି ଯାଇଛି । ପ୍ରକୃତି ରାଣୀ ଫୁଲ ଫଳରେ ଖୁବ ଶୋଭିତ ହୋଇଛି ।

ଧୈର୍ଯ୍ୟର ଗୋଟିଏ ସୀମା ଅଛି । ସୀମା ପାର୍ ହୋଇଗଲେ ମଣିଷ ମନ ଅଧୈର୍ଯ୍ୟ ହୋଇପଡେ । ଭଲମନ୍ଦ ବିଚାର କରିପାରେନା । ହିତ, ଅହିତ ଜାଣେନା । ମୋହନବାବୁ ଆଜି ସେଇଭଳି ଧୈର୍ଯ୍ୟହରା ହୋଇପଡ଼ିଛନ୍ତି । ତାଙ୍କ ମନରେ କେତେ ସୁନେଲୀ ସ୍ୱପ୍ନ ଆଜି ଭାଙ୍ଗି ଚୂରମାର ହୋଇଯାଇଛି । ମନ ଘାଣ୍ଟି ଚକଟି ହେଉଛି । କେତେବେଳେ ଉତ୍ତେଜିତ ହୋଇ ମନକୁ ମନ କଣ କହି ଯାଉଛନ୍ତି । ପାଖରେ ବସି ଶଙ୍କର, ବାବୁଙ୍କ ବିଚଳିତ ମୁହଁକୁ ଅନାଇ ରହିଥାଏ ।

କନକ ତା ନୂଆ କାମରେ ଲାଗିଗଲା ପରଠୁଁ, ମୋହନବାବୁଙ୍କ ମନ ବିଚଳିତ ହୋଇ-ଯାଇଥାଏ । ସେ ତାକୁ ଅଟକାଇ ପାରିଲେ ନାହିଁ !!

ଏହାହିଁ ତାଙ୍କ ମନରେ ରାଗ ସୃଷ୍ଟି କରୁଥାଏ । ଗୋଠଛଡା ଭଣ୍ଡଙ୍କ ଗୋଷ୍ଠିରେ ସେ ଯାଇ ମିଶିଛି । ତାଙ୍କ କଥାକୁ ଆଡେଇ ଦେଇ ତପନ କଥାରେ ମଜିଯାଇ କାମରେ ଲାଗିଯାଇଛି ।

ନାରୀ ଜାଗରଣ ସୃଷ୍ଟି କରି ଅଞ୍ଚଳର ରୂପ ରେଖ ବଦଳାଇ ଦେବ !!

ମୋହନବାବୁଙ୍କ ମୁହଁ ରାଗରେ, ଘୃଣାରେ ଭରିଗଲା । ମନ ଭିତରେ କେତେ ଭାବନା ସୃଷ୍ଟି ହୋଇ ମୁହଁକୁ ଉତ୍ତେଜିତ କରିଦେଲା ।

ନାକ ପୁଡାରୁ ଖରନିଶ୍ୱାସ ବୋହିବାକୁ ଲାଗିଲା । ତାଙ୍କ ମନର କେତେ କଳ୍ପନା ଆଜି ସବୁ ଧୂଳିସାଥ ହୋଇଗଲା ।

କନକକୁ ଜଣକସିଦ୍ଧ ନାମକୁ ମାତ୍ର ବାହା କରାଇ ତାକୁ ପାଖରେ ରଖି, ସେ ତାଙ୍କ ସେବା କରିବ । ତାଙ୍କ ମନଲାଖି, ପାଖେ ପାଖେ ରହି ତାଙ୍କ ଭୋଗ ଲାଳସା ମେଣ୍ଟାଉଥିବ । ଏମିତି କେତେ ମଧୁର କୁତ୍ସିତ କଳ୍ପନା ତାଙ୍କ ମନ ଭିତରେ ଖେଳି ଯାଉଥିଲା ।

ତେଣୁ କେତେ ଭଡାଟିଆ ଲୋକ ଯୋଗାଡକରି କାମଟି ସହଜରେ ଉଠାଇ ଦେବାପାଇଁ

ଲାଗିପଡ଼ିଥିଲେ । ମାତ୍ର କଣ ହେଲା କେଜାଣି, କନକ ତାର ଟେର ଜାଣି ପାରିଲା । କଥାର ରହସ୍ୟ ବୁଝିଗଲା । ସେହି ଦିନଠୁ ସବୁ ଓଲଟ ପାଲଟ ହୋଇଗଲା । ଘରକୁ ଆଉ ଆସିଲା ନାହିଁ । ତାଙ୍କ କଥା ଆଉ ଶୁଣିଲା ନାହିଁ । ମୁହଁର ସରସତା ଟିକକ ଲିଭିଗଲା ଭଳି ହେଲା । କଥାର ମର୍ମ ସେ ବୁଝିପାରିଲା । ତାଙ୍କ ଯୋଜନା ଫସର ଫାଟିଲା । ଏତେ ଟଙ୍କା ଖର୍ଚ୍ଚ କରିଥିଲେ ସବୁ ପାଣିରେ ପଡ଼ିଲାଭଳି ହେଲା ।

ସେ ଚିନ୍ତିତ ହୋଇ ବ୍ୟତିବ୍ୟସ୍ତ ହୋଇ ବାରଣ୍ଡାରେ ବୁଲୁଥାନ୍ତି । ଗଭୀର ଚିନ୍ତାଯୋଗୁଁ ମୁହଁର ରେଖା ସବୁ ବାରି ହୋଇଯାଉଥାଏ ।

ତାଙ୍କ ଭାବନାରେ ବାଧାସୃଷ୍ଟି ହେଲା ।

ଶଙ୍କର ପାଖକୁ ଚାଲିଆସି କହିଲା ।

ବାବୁ ଗୋଟିଏ କଥା ଶୁଣିଲେଣି ?

କଣ କିରେ ? ମୋହନବାବୁ ତା ମୁହଁକୁ ଚାହିଁ ପ୍ରଶ୍ନକଲେ ।

ଏ ବର୍ଷ ଅଧିକ ମୂଲ ନ ଦେଲେ ମୂଲିଆ କାମ କରିବାକୁ ଆସିବେ ନାହିଁ । ଧାନ ରୋଇବା ସମୟରେ ଅଧିକ ମୂଲ ଦେବାକୁ ପଡ଼ିବ । ଗାଁ ଲୋକ ବସି ଠିକ୍‌କରି ସାରିଲେଣି । ଶଙ୍କର ଏତକ କହିଲା ।

ମୋହନବାବୁ ଚିନ୍ତା ରାଜ୍ୟରୁ ଫେରି ଶଙ୍କର କଥାକୁ ଶୁଣି ଚମକି ପଡ଼ିଲେ ।

ମୁହଁରେ ଗମ୍ଭୀରତା ଫୁଟାଇ କହିଲେ ।

ହଁ, ହଁ ମୁଁ ସବୁ ଶୁଣିଛି ।

ଏସବୁ ସେହି ତପନର ନାଟ ।

ମୋହନବାବୁ ଗର୍ଜିଉଠିଲେ । ରାଗରେ ତାଙ୍କ ମୁହଁ ନାଲି ପଡ଼ିଯାଉଥାଏ ।

ମୂଲିଆମାନଙ୍କୁ ଜମି ସେ ବାଣ୍ଟୁଛି । କୋଠ ଚାଷକରି ମୂଲିଆକୁ ଖଟାଇ ଅଧିକ ମୂଲ ଦେଉଛି । ସବୁ ମୂଲିଆଙ୍କୁ ଜମି ବାଣ୍ଟିଲେ, ସେମାନେ ତାଙ୍କ ଜମି ଚାଷ କରିବାକୁ ସମୟ ପାଇବେ ନାହିଁ, ତେବେ ଆମ ଜମି ସବୁ ଚାଷ କରିବ କିଏ ?

ଆମ ଜମିପାଇଁ ମୂଲିଆ ମିଳିବେ କେଉଁଠୁ ??

ଶଙ୍କର ମୁହଁରେ ବ୍ୟଗ୍ରତା ଫୁଟାଇ କହିଲା ବାବୁ, ସେଥିପାଇଁ ପରା ମୁଁ କହୁଛି କିଛିବାଟ ବାହାର କରନ୍ତୁ । ନ ହେଲେ ଲୋକ ନ ମିଳିଲେ ଆମ ଜମିସବୁ ଚାଷ ହୋଇ ପାରିବନାହିଁ । ଜମି ମୂଲିଆଙ୍କୁ ଛାଡ଼ିଦେବା ସାର ହେବ ।

ମୂଲିଆ ଯଦି ଆମ ଜମିରେ ଚଷ କରିବେ ନାହିଁ, ଆମ ଗାଈ ବଳଦ ଜଗିବେ ନାହିଁ । ତେବେ କଣ ସମସ୍ତଙ୍କୁ ତପନ କାମ ଯୋଗାଇ ଦେବ ?

ସେମାନଙ୍କ ପେଟପୋଶିବା ବ୍ୟବସ୍ଥା, କରିଦେବ ?

ଏହା କେତେଦିନ କରିପାରିବ ?

ନୂଆ ନୂଆ ସେମାନଙ୍କ ମନ ଭୁଲାଇବାପାଇଁ ଅଧିକା ମୂଲ ଦେଉଛି । କିଛି ମୂଲିଆଙ୍କୁ ଜମି ମଧ୍ୟ ବାଣ୍ଟିଦେଉଛି । କିନ୍ତୁ ଏ କେତେଦିନ ?

ଆଉ କିଛି ଦିନପରେ ହାତର ଟଙ୍କା ଶେଷ ହେଲେ ବଳେ ମୂଲିଆମାନେ ଆମ ପାଖକୁ ଆସିବେ ନାହିଁକି ?

ଯିବେ କୁଆଡେ ?

ଦେଖିବା ପୁଅର ବହକ କେତେ ?

ମୋହନବାବୁଙ୍କ ମୁହଁରେ ଏକ କୁଟିଳ ହସ ଖେଳିଗଲା ।

ଶଙ୍କର ମୋହନବାବୁଙ୍କ ମୁହଁକୁ ଅନାଇ କିଛି ବୁଝିନପାରି କହିଲା ।

ଗଲାହାଟ ପାଳିରେ, ଗାଁ ଆମ୍ବ ତୋଟାରେ ସଭ ହୋଇଥିଲା । ଅଞ୍ଚଳର ସମସ୍ତ ମୂଲିଆ ଏକାଠି ହୋଇ ନିଷ୍ପତି ନେଇଛନ୍ତି । ସେମାନଙ୍କୁ ଅଧିକା ମୂଲ ନ ଦେଲେ ଜମି ମାଲିକମାନଙ୍କ ଜମିରେ ହଳ କରିବେ ନାହିଁ, ଘର ଝିଙ୍କର ଛାଇଁବେ ନାହିଁ, ଧାନଚଳି ଗେଇବେ ନାହିଁ, ଦିନରାତି ଖଟି ହାଡଭଙ୍ଗା ପରିଶ୍ରମ କରିବେ, ଅଥଚ ତାଙ୍କ ପେଟ ପୂରିବ ନାହିଁ । ତେବେ ସେମାନେ ଖଟିବେ କାହିଁକି ?

ତପନ, ମଧୁ ଆସି, ସଭରେ ଏମିତି କେତେ କଥା କହିଲେ, ସେମାନଙ୍କ କଥା ଶୁଣି ଆଜି ସମସ୍ତେ ଏକ୍ ହୋଇଛନ୍ତି ।

ଶ୍ରମିକମାନେ ଏକ୍ ହେଲେ ବଳେ ମହାଜନ ତାଙ୍କ ଦ୍ୱାରକୁ ଦୌଡବ ?

ତପନ କଥାରେ ସମସ୍ତେ ମର୍ଜି ଶପଥ ନେଇଛନ୍ତି । ସେମାନଙ୍କ ଭଲ ପାଇଁ ସେ ତାଙ୍କୁ ପରାମର୍ଶ ଦେଇଛି । ତାଙ୍କୁ ସେ ସାହାସ ଦେଇଛି । ମନର ଦମ୍ଭ ଦେଇଛି । ତା କଥା ଶୁଣିବେ ନାହିଁତ ଆଉ କାହା କଥା ଶୁଣିବେ ?

ଶଙ୍କରଠୁ ଏତକ କଥା ଗୋଟି ଗୋଟି ଶୁଣିଲା ପରେ ମୋହନବାବୁଙ୍କ ମନ ବିଚଳିତ ହୋଇ ଉଠିଲା । ତାଙ୍କୁ ଚାରିଆଡେ ଅନ୍ଧାର ଦେଖାଗଲା ।

ଦିନକୁ ଦିନ ତାଙ୍କଠୁ ଗାଁଲୋକମାନେ କେମିତି ଖାପ୍ଛଡା ହେଲଭଳି ସେ ଅନୁମାନ

କରୁଥିଲେ । ଆଜି ତାଙ୍କୁ ସ୍ପଷ୍ଟ ଦିବାଲୋକ ଭଳି ସବୁକଥା ଆଖି ଆଗରେ ନାଚିଉଠିଲା ।

ଏ ଅଞ୍ଚଳରେ ତପନ ଲୋକଙ୍କୁ ମତାଇ ତାଙ୍କ ବିରୁଦ୍ଧରେ ଉତାଉଛି । ପିଲାର ବହପ ଦେଖ । ନାକ ଚିପୁଡଲେ ଶିଙ୍ଘାଣି ବହାରିବ ସେ ପୁଣି, କେତେ କଥା କହିଗଲିଛି । ମୂଲିଆଙ୍କୁ ମତାଇ ଚାଷ ନ କରିବାପାଇଁ କହୁଛି ? ତାର ଠିକ୍ ଠିକଣା ନ କଲେ ଲେଡଗୁଡ କହୁଣୀକୁ ବୋହିଯିବ ?

ମନର କଥା ମନରେ ରଖି ଶଙ୍କରକୁ କହିଲେ । ତାହା ହେଲେ ଏ ବର୍ଷ ଆମ ଚାଷ କାମକୁ ଲୋକ ଆଉ ଆସିବେ ନାହିଁ ? ଆମ ଜମି ସବୁ ପଡଆ ରହିବ ? ଚାଷ ଆଉ ହେବ ନାହିଁ ?

ଶଙ୍କର ଟିକିଏ ପାଖକୁ ଚାଲିଆସି ବାବୁଙ୍କୁ ବୁଝାଇଲାଭଳି କହିଲା ।

ନାହିଁ ବାବୁ ସେମାନେ ସେୟା କହୁନାହାନ୍ତି । ତେବେ ଆଉ କ'ଣ ଅଧିକା କହୁଛନ୍ତି ?

ବିରକ୍ତ ହୋଇ ମୋହନବାବୁ ତମ ତମ ହୋଇ ତାକୁ ଚାହିଁ ରହିଲେ ।

ଶଙ୍କର ଟିକିଏ ଶଙ୍କି ଯାଇ ପାଟିର ଛେପ ଗିଳି ଥଙ୍ଗ ଥଙ୍ଗ ହୋଇ କହିଲା ।

ବାବୁଙ୍କୁ କହି ଅଧିକା ମୂଲ ମାଗିବୁ ?

ଯେତକ ଦେଉଛନ୍ତି ସେତକରେ ପେଟ ପୂରୁନାହିଁ । ପିଲା କୁଟୁମ୍ବ ପାଇଁ, ଅଧିକା ଉପାର୍ଜନ ନ କଲେ ଆମେ ବଞ୍ଚି ପାରିବୁ ନାହିଁ ? କାମ କରିବେ, ମାତ୍ର ଅଧିକା ମୂଲ ନେବେ ।

ଏତେ ଦିନ ପେଟ ପୂରୁଥିଲା ଆଜି ପେଟ ପୂରୁନାହିଁ ?

ମୋହନବାବୁଙ୍କ ମୁହଁ ରାଗରେ ନାଲି ପଡ଼ିଗଲା ।

ଶଙ୍କରବାବୁଙ୍କ ମୁହଁ ଚାହିଁ କହିଲା ।

ବାବୁ, ସେଦିନ ତପନ ସଭାରେ କହୁଥିଲା.......ତଣ୍ଟିରେ ତା କଥା ରହିଗଲା ।

ଆରେ କଣ କହୁଥିଲା କହୁନାହୁଁ । ବିରକ୍ତରେ ମୋହନବାବୁ କହିଲେ ।

ବାବୁ ସେ କହୁଥିଲା .....

ଲଙ୍ଗଳ କାନ୍ଧରେ ହାତ ମାଟି ବିଲ ଚାଷ କରିବ ଯେ ଜମି ହେବ ତାର !!

ମୋହନବାବୁ ଶଙ୍କରକୁ ବଲ ବଲ କରି ଅନାଇ ରହିଥାନ୍ତି । ତାଙ୍କ ପାଦ ତଳୁ ମାଟି ଯେପରି ଖସି ଯାଉଛି । ରାଗରେ ତାଙ୍କ ମୁହଁରୁ ବାକ୍ୟସ୍ଫୁର ନ ଥାଏ । ତପନକୁ ସେ ହେୟ ମନେ କରୁଥିଲେ । ଆଜି ତା କଥା ସବୁ ଶୁଣିଲେ ମନରେ ଅଜଣା ଭୟ ଦେଖାଦେଉଛି । କଥା ତାର କେତେ ଯୋର !!

ମନରେ ଆଶଙ୍କା ବଢ଼ ବଢ଼ ଚାଲିଥାଏ ।

ଜମି କଣ ସତେ ଏବର୍ଷ ପଡ଼ଆ ପଡ଼ିଯିବ ?

କେତେ ପୁରୁଷରୁ ସେମାନେ ତାଙ୍କ ଜମିରେ ଏଭଳି ଚାଷ କରି ଆସୁଛନ୍ତି । କେତେ ମୂଲିଆ କାମ ପାଇଁ ତାଙ୍କ ପାଖକୁ ଦୌଡ଼ୁ ଥାନ୍ତି ।

କଣ ହେଲା କେଜାଣି । ତପନ କି ମନ୍ତ୍ର ଫୁଙ୍କିଛି କେଜାଣି ।।

କାହିଁ ଏବର୍ଷ ତ କାହାର ଦେଖା ନାହିଁ । ତଳି ପକାଇ କେତେ ଦିନ ବିତି ଗଲାଣି । ଧାନ ରୁଆ ପାଇଁ ଜମି ସଜ ହେବା କଥା । କାହିଁ କିଏ ତ ଆସି ମୂଳ କଥା କହୁନାହାନ୍ତି ? ସତେ ଯେପରି ସେ ଏବର୍ଷ ନୂଆ କରି ଧାନ ଚାଷ କରୁଛନ୍ତି ।

ସମୟ ବଦଳିଛି । ଲୋକଙ୍କ ଚିନ୍ତା ମଧ୍ୟ ବଦଳିଛି । ଅଜଗର ସାପ ଚିତ୍ ହୋଇ ପଡ଼ି ରହିଥିବା ଭଳି ଆଳସ୍ୟର ମହା ନିଦ୍ରାରେ ଅଂଚଳଟି ସୁପ୍ତ ହୋଇ ପଡ଼ି ରହିଥିଲା । ଆଜି ସେମାନେ ଜାଗ୍ରତ । କର୍ମଚପଳ । ଚଳ ଚଞ୍ଚଳତା ଖେଳି ଯାଇଛି ସମସ୍ତଙ୍କ ମନରେ ।

ଜୀବନ ସଂଗ୍ରାମରେ ମଣିଷ ଆଗେଇବା ପାଇଁ ସଂକଳ୍ପ ବଦ୍ଧ ହୋଇ ଆଗେଇଲେ ସେ ତାର ଲକ୍ଷ୍ୟ ସ୍ଥଳରେ ନିଶ୍ଚୟ ପହଂଚି ପାରିବ ।।

ମାତ୍ର କାହିଁ, ବହୁ କ୍ଷେତ୍ରରେ ଏହା ସମ୍ଭବ ପର ହୋଇ ପାରୁ ନାହିଁ ।।

ମାତ୍ର ମଣିଷ ଆଜି ତାର ଅଧିକାର, ତାର ଦାୟିତ୍ୱକୁ ଭୁଲି ଯାଇଥିବା ଯୋଗୁଁ ପ୍ରତି କ୍ଷେତ୍ରରେ ବିଫଳତା ଧକ୍କାରେ ଧ୍ୱସ୍ତ ବିଧ୍ୱସ୍ତ ହୋଇ, ହା, ହତାଶ ହୋଇ ପଛଘୁଞ୍ଚା ଦେଉଛି ।

ଆଗେଇବା ପାଇଁ ଯେଉଁ ସଂକଳ୍ପ ଯେଉଁ ନିଷ୍ଠା ଯେଉଁ ଆନ୍ତରିକତା ଦରକାର ତାହା ଆଜି ନାହିଁ ।

ତେଣୁ ତାର ନ୍ୟାର୍ଯ୍ୟ କର୍ତ୍ତବ୍ୟକୁ ଭୁଲିଯାଇଛି ।

ତେଣୁ ସେ ବାଟବଣା ହୋଇ ଘୁରିବୁଲୁଛି ।

ତାକୁ ଜାଗ୍ରତ ହେବାକୁ ପଡ଼ିବ । ସଚେତନ ହେବାକୁ ପଡ଼ିବ । ତାର ଅଧିକାର ତାକୁ ସାବ୍ୟସ୍ତ କରିବାକୁ ପଡ଼ିବ ।

ବଞ୍ଚିବାପାଇଁ ସଂଗ୍ରାମ ମଣିଷର ଜନ୍ମଗତ ଅଧିକାର ।

ଏତକ ସେ ନିଜ ପାଇଁ ତାର ପରିବାର ପାଇଁ ତାକୁ ବୁଝିବାକୁ ପଡ଼ିବ ।

ମଣିଷମନ କ୍ଷଣଭଙ୍ଗୁର ।

କେତେବେଳେ ସେ ତାକୁ ଗଢ଼େ ତ କେତେବେଳେ ସେ ଭଙ୍ଗି ଚୁରମାର କରିଦିଏ ।

ଏ ମନ ବଡ଼ ବିଚିତ୍ର ।

ଟିକିଏ ଆଘାତ ପାଇଲେ ମନ ତାର ଦୁର୍ବିଷହ ହୋଇଉଠେ ତ ଟିକିଏ କଅଁଳ କୋମଳ କଥାରେ ସେହି ମନ ପୁଲକିତ ହୋଇଉଠେ ।

ଅଥଚ ସେହି ମନ ଘାତ ପ୍ରତିଘାତକୁ ଭ୍ରୁକ୍ଷେପ ନ-କରି ଆଗକୁ ବଢ଼ିବା ପାଇଁ ସଂକଳ୍ପ-ବଦ୍ଧ ହୋଇଉଠେ । ତେଣୁ ଆଜି ସେହି ସୁପ୍ତ ମନ ଜାଗ୍ରତ ।

କାମ କରିବା ପାଇଁ ଦେଖା ଦେଇଛି ନୂତନ ଉଲ୍ଲାସ । ହୃଦୟରେ ଖେଳାଇଛି ଅପାର ଆନନ୍ଦ । ମନରେ ଭରି ଦେଇଛି ଅପାର ତୃପ୍ତି ମୁହଁରେ ଦେଖା ଦେଇଛି ଅପୂର୍ବ ପୁଲକ। ମନର ହୃଦୟର ମଧୁରବାଣୀ ତପନ ମୁହଁରୁ ଶୁଣି ସେମାନଙ୍କ ସୁପ୍ତ ଜୀବନରେ ସଂଚରିଛି ଅମୃତର ଧାର ! ତାହା ଆଜି ପଲ୍ଲବିତ ହୋଇ କୁସୁମିତ ହେବାକୁ ଲାଗିଛି ।

ସେମାନଙ୍କ ଜୀବନରେ ଦେଖା ଦେଇଛି ପରିବର୍ତ୍ତନ ।

ବିରାଟ ପରିବର୍ତ୍ତନ । କାମ କରିବାରେ ସୃଷ୍ଟି କରିଛି ଆଗ୍ରହ ଦିନସାରା ଖଟି ଅଧିକ ଉପାର୍ଜନ କରି ସ୍ତ୍ରୀ ମୁହଁରେ ଫୁଟାଇ ପାରିଛି ହସର ଲହରୀ ।

ପୁଅ,ଝିଅଙ୍କୁ ଦୁଇଓଳି ପେଟପୁରା ଖାଇବାକୁ ଦେଇ ପାଇଛି ମନରେ ଅପାର ତୃପ୍ତି ।

ତେଣୁ ସେହି ସରଳ ନିରୀହ ମୂଲିଆମାନଙ୍କ ଆଖି ଖୋଲିଛି । ବାବୁମାନଙ୍କର ସାହୁକାରମାନଙ୍କ ଭୋଗ ବିଳାସ ପାଇଁ ସେମାନେ ଦିନସାରା ଖଟିବେ ତାଙ୍କ ପୁଅ,ଝିଅ,ସ୍ତ୍ରୀକୁ ଭୋକରେ ରଖି ଅଧପେଟରେ ପୁଣି କାମରେ ଲାଗି, ବାବୁମାନଙ୍କ ବିଳାସ ପାଇଁ ହାଡଭଙ୍ଗା ପରିଶ୍ରମ କରିବେ ?

ମାତ୍ର କିଛି ପାଇବେ ନାହିଁ କାହିଁକି ?

କେତେ ଦିନ ଆଉ ସେମାନେ ଚୁପ୍ ରହିପାରିବେ ?

ଆଉ ସେମାନେ ଚୁପ୍ ରହିପାରିବେ ନାହିଁ ।।

ତପନ ସେମାନଙ୍କୁ ବାଟ ବତାଇ ଦେଇଛି । ସେମାନଙ୍କ ମନରେ ଉତ୍ସାହ ସୃଷ୍ଟି କରିପାରିଛି । ମନରେ ଦମ୍ଭ ଦେଇଛି ।

କାଠ ଚଷରେ ଯେତେ ମୂଲିଆ କଟୁଛନ୍ତି । ଅଧିକା ଉପାର୍ଜନ କରୁଛନ୍ତି । ଅନ୍ୟମାନଙ୍କ ଜମିରେ ଚଷକଲେ ମାଲିକମାନେ କାହିଁକି ଅଧିକ ମୂଲ ଦେବେ ନାହିଁ ?

ଆମେ ଆଉ କମ୍ ମୂଲରେ ଜମି ଚଷ କରିବୁ ନାହିଁ । ମୂଲିଆମାନେ ଏକ୍‌ଜୁଟ ହେଲେ

ସବୁ ଠିକ୍ ହୋଇଯିବ । ଏକତାର ଅଭାବ ଫଳରେ ସାହୁକାରମାନେ ଆମକୁ ଠକି ଆସିଛନ୍ତି ଆଉ ଅଧିକ ଠକି ପାରିବେ ନାହିଁ । ଆଖି ଆମର ଫିଟିଛି ।

ତପନଭାଇ ଆମ ସମସ୍ତଙ୍କୁ ଜଗାଇ ଦେଇଛନ୍ତି । ବାଟବତାଇ ଦେଇଛନ୍ତି ।

ଆମେ ଆମର ହକ୍ ପାଇଁ ସାହୁକାରମାନଙ୍କୁ କହିବୁ । ଆମ ପିଲା କୁଟୁମ୍ବକୁ ଭୋକରେ ରଖି ଛଟପଟ ହେବା ଆଉ ଦେଖି ପାରିବୁ ନାହିଁ !!

ଆମ ପେଟ ପୁରିଲେ ତାଙ୍କ କାମ ଆମେ ଉଠାଇ ଦେବୁ ।

ମୂଲିଆମାନେ, ଆଜି ସମସ୍ତେ ଏକ ହୋଇଛନ୍ତି । ଏତେ ଦିନ ସେମାନେ ସୁପ୍ତ ଅବସ୍ଥାରେ ଥିଲେ, ଆଜି ସେମାନେ ଜାଗ୍ରତ । ସେମାନଙ୍କ ଜଡତା ଅପସରି ଯାଇଛି । ଦେହ ଏବଂ ମନରେ ଅପାର ଉତ୍ସାହ ସୃଷ୍ଟି ହୋଇଛି ।

ମଣିଷ ଭଳି ମଣିଷ ରୂପେ ବଞ୍ଚିବା ପାଇଁ ଅଧିକାର ସମସ୍ତଙ୍କର ଅଛି ।"

ମୋହନବାବୁଙ୍କ ମନରେ ନାନା ଭାବନା ନାନା ଦୁଃଚିନ୍ତା ଖେଳି ଯାଇଥାଏ ।

ହଠାତ୍ ଚାକର ମଦନାକୁ ଦେଖି ତାଙ୍କ ମନରେ ନାନା ପ୍ରଶ୍ନ ଦେଖାଦେଲା ।

ମଦନାକୁ ଧୀରେ ଧୀରେ ଶଙ୍କି ଶଙ୍କି ବାବୁଙ୍କ ପାଖକୁ ଆସି ଛିଡା ହେଲା ।

ପାଖରେ ଛିଡା ହୋଇଥିବା ଦେଖି ମୋହନବାବୁ ଥରେ ତାକୁ ଭଲକରି ଅନାଇ-ଦେଇ କହିଲେ ।

କିରେ ଗୁହାଳରେ ଗାଈକୁ ପାଳ ଖାଇବାକୁ ଦେଲୁ ?

ମଦନା ନୀରବରେ ଛିଡା ହୋଇ ବାବୁଙ୍କୁ ଅନାଇ ରହିଲା । ତୁଣ୍ଡରୁ ପଦଟିଏ ମଧ୍ୟ କଥା ବାହାରିଲା ନାହିଁ । ମଦନାର ଏପରି ଢଙ୍ଗ ଢାଙ୍ଗ ଦେଖି ବାବୁ ବିରକ୍ତ ହୋଇ କହିଲେ ।

ଆରେ ମୁଁ ପଚାରୁଛି ପରା । କ'ଣ କିଛି କହୁନାହୁଁ ??

ମଦନାର ନୀରବତା ଦେଖି ଶଙ୍କର ତା ମୁହଁକୁ ଅନାଇ କହିଲା ।

ବାବୁ ପଚାରୁଛନ୍ତି କିଛି କହୁନାହୁଁ କାହିଁକି ?

ମଦନା ଢୋପ ଢୋଙ୍କି, ଶଙ୍କି ଶଙ୍କି କହିଲା ।

ଅଧିକା ମୂଲ ଦେଲେ କାମରେ ଲାଗିବା ପାଇଁ ଗାଁ ଲୋକ ନିଷ୍ପତ୍ତି କରିଛନ୍ତି ...।

ଯେଉଁ କଥା ସେମାନେ ଏତେ ସମୟ ଧରି କଥା ହେଉଥିଲେ, ହଠାତ୍ ମଦନାଠୁଁ ଶୁଣି ମୋହନବାବୁଙ୍କ ମୁହଁ କଳା ପଡ଼ିଗଲା କାନ ମୁଣ୍ଡ ଗରମ ହୋଇଗଲା ।

କିଛିକ୍ଷଣ ଅବାକ୍ ହୋଇ ତାର୍ ମୁହଁକୁ କେବଳ ଅନାଇ ରହିଲେ ।

ମଦନା ନୀରବ ନିଶ୍ଚଳ ହୋଇ ଛିଡା ହୋଇଥାଏ ।

ଗାଁଲୋକ ତାକୁ ଭରସା ଦେଇଥିଲେ ।

ଡରିବୁ ନାହିଁ ??

ସାଫ୍ ସାଫ୍ କହିଦେବୁ !!

ସେ ଗାଁ ଲୋକଙ୍କୁ କହିଥିଲା !!

ଯାହା ହେଉ, ସେ କାହିଁକି କହିବାରେ ଡରିବ ?

ସେ ଯାହା କହିବା କଥା କହି ଦେଇଛି ।

ତା ମୁଣ୍ଡରୁ ଗୋଟିଏ ବିରାଟ ବୋଝ ଖସି ଯାଇଛି ।

ମନ ତାର୍ ସଂଶୟ, ଆଶଙ୍କା ଭିତରେ ଭରି ଯାଇଛି ।

ମାତ୍ର ଛାତି ଭିତରେ ଅଟକିଥିବା କଥା ମୁହଁରୁ ବାହାରିପଡ଼ି ବାବୁଙ୍କ ପାଖରେ ପହଞ୍ଚାଇ ପାରିଛି । ସେଥିରେ ସେ ମନେ ମନେ ଆତ୍ମତୃପ୍ତି ଅନୁଭବ କରିପାରୁଛି, ଗାଁଲୋକ ତାକୁ ବାହା ବାହା କରିବେ ।

ମୋହନବାବୁ ଆଶ୍ଚର୍ଯ୍ୟ ହୋଇ ରାଗରେ ମଦନାର ମୁହଁକୁ କଟ୍ କଟ୍ କରି ଅନାଇ ରହିଲେ ।

ମନର ରାଗ ମନ ଭିତରେ ଘାଣ୍ଟି ଚକଟି ହେଉଥାଏ ।

ମଦନା ଆସି ତାଙ୍କୁ ଏତେ କଥା କହିଦେବ ?

ସେ କେବେ ଭାବି ପାରିନଥିଲା । ମନରେ ବିଶ୍ୱାସ ହେଉନଥିଲା । ମାତ୍ର ଆଜି ସବୁ କହି ଦେଇଛି ।

ଅଧିକ ମୂଲ ନ ଦେଲେ କାମ କରିବ ନାହିଁ ।

ଯେ ଦିନେ ତାଙ୍କ ସାମନାରେ ପାଟି ଖୋଲିନଥିଲା ଆଜି ସେ କେତେ ଦମ୍ଭରେ କହି ଦେଇଗଲା ।

ଏହାହିଁ ମୋହନବାବୁଙ୍କୁ ବଡ ଆଶ୍ଚର୍ଯ୍ୟ ଲାଗୁଛି !!

ଶଙ୍କର ବାବୁଙ୍କ ମୁହଁକୁ ଅନାଇ କହିଲା ।

ମୁଁ ପରା କହୁଛି, ଗାଁସାରା ଆଜି ଏକ୍ ହୋଇଛନ୍ତି ।

ଗାଁଲୋକ ଅଡି ବସିଛନ୍ତି, ଅଧିକ ମୂଲ ନ ଦେଲେ କାମରେ ଲାଗିବେ ନାହିଁ !!

କାହିଁକି ନ ଦେବେ ??

ଆମେ ଆଉ କେତେଦିନ ଭେଳ ଉପାୟରେ ଖଟୁଥିବୁଁ ?

ମଦନା ନିର୍ଭୟରେ ଏତକ କହିଲା ?

ମୋହନ ବାବୁଙ୍କ ମୁହଁ, ରାଗରେ ନୁହୁଳୁ ଥିଲା ।

ହଠାତ୍ ମଦନାଠୁଁ ଏତକ ଶୁଣି କୁହୁଳୁ ଥିବା ଧୂଆଁ ହଠାତ୍ ଜଳି ଉଠିଲା ଭଳି, ରାଗରେ ମୁହଁ ତାଙ୍କ ଲାଲ ପଡ଼ଗଲା । ବସିବା ସ୍ଥାନରୁ ଉଠିଆସି, ପାଟିକରି କହିଲେ ।

ଏତେଦିନ କାମ କରୁଥିଲୁ, ଆଜି ତୋ ପେଟ ପୁରୁନାହିଁ । କିଏ ତୋତେ ଶିଖାଇଛି ? ବାହାର ମୋ ଘରୁ !!

ମଦନା ଭୟରେ ଆବାକ୍ ହୋଇ ବାବୁଙ୍କ ମୁହଁକୁ ଅନାଇ ରହିଲା ।

ସାହସ ସଂଚୟ କରି କହିଲା ।

ବାବୁ ରାଗନ୍ତୁ ନାହିଁ ।

ଆମେ ଆମ ପେଟ ପାଇଁ ଅଧିକା ମୂଲ କେବଳ ମାଗୁଛୁଁ । କାମ କରିବୁ ନାହିଁ ବୋଲି କହୁ ନାହୁଁ । ହାଡଭଙ୍ଗା ପରିଶ୍ରମ କରିବୁଁ । ପେଟପୁର ଗଣ୍ଡିଏ ଖାଇବାକୁ ନପାଉଁ ତେବେ ଆମେ ଖଟିବୁଁ କାହିଁକି ?

ଶଙ୍କର ବାବୁଙ୍କୁ ସାନ୍ତ୍ୱନା ଦେବା ପାଇଁ କହିଲା । ମଦନା ତୁ ଯା । ବାବୁଙ୍କ ମନ ଠିକ୍ ନାହିଁ । ପରେ ଆସି କଥା ହେବୁ ।

ମୋହନ ବାବୁ ନିଜକୁ ସଂଯତ କରି ନେଇ କହିଲେ ।

ପରେ ଆସିବା ଦରକାର ନାହିଁ । ତୁ ମୋ ଆଗରୁ ଚାଲିଯା । ଯେଉଁଠି ଅଧିକ ମୂଲ ମିଳିବ ସେଠି କାମରେ ଲାଗିଯିବୁ ।

ମଦନା ନୀରବରେ ପାଦ ବଢ଼ାଇଲା ।

ଗଲାବେଳେ କହି ଦେଇଗଲା ।

ବାବୁ ଦିନ ଆସିବ ପସ୍ତାଇବେ !!

ମୋହନ ବାବୁ ଗୁମ୍ ହୋଇ ଠାଖ ଖଟରେ ବସି ପଡଲେ । ନାକରୁ ନିଶ୍ୱାସ ଯୋରରେ ବୋହୁଥାଏ । ରାଗରେ ଆଖି ଯୋଡକ ନାଲି ପଡଯାଇଥାଏ । ସେ କିଛି ଭାବି ପାରୁ ନଥାନ୍ତି । ହଠାତ୍ କଣ ସବୁ ଘଟିଗଲା ।

ତାଙ୍କର କୁଟିଳ ବୁଦ୍ଧି ବଳରେ ଘରେ ବସି ନିରୀହ ନିଷ୍କପଟ ଗରୀବ ଲୋକଙ୍କ ଧନ ଓ ଶ୍ରମ ଠକି ସେ ବଡ ହୋଇଛନ୍ତି । ଆହୁରି ବଡ ହେବା ସ୍ୱପ୍ନ ଦେଖୁଛନ୍ତି । ହଠାତ୍ ତାଙ୍କ ସ୍ୱପ୍ନରେ କିଏ ଆସି ବାଧା ଦେଉଛି ।

କିଏ ସେ ?

ତପନ ??

ସେହିଁ ଲୋକଙ୍କୁ ମତାଉଛି ।

ଅଧିକ ମୂଲ ପାଇଁ ଲୋକଙ୍କ ମନରେ ଧାରଣା ସୃଷ୍ଟି କରୁଛି ।

ତପନ ପ୍ରତି ତାଙ୍କ ମନ ରାଗ ଏବଂ ଘୃଣାରେ ଭରିଗଲା । ଏଣେ ଅଜଣା ଭୟରେ ମନ ସଂକୁଚିତ ହୋଇଯାଇଛି । ଛାତିରେ ସ୍ପନ୍ଦନ ଦ୍ରୁତତର ହୋଇ ଉଠୁଛି ।

ଧନ ଅର୍ଜନହିଁ ଜୀବନର ସାର୍ଥକତା !!!

ଧନ ସଂଚୟହିଁ ଜୀବନର ସଫଳତା !!!

ସତେ କଣ ଆଜି ସେ ସ୍ୱପ୍ନ ବାସ୍ତବତାରେ ରୂପାୟିତ ହୋଇ ପାରିବ ନାହିଁ ?

ମନର ଏତେ ଦିନର ସଂଚିତ ଭାବନା, ମନର ଧାରଣା । ତପନ ସବୁ ଆଜି ଲୋଟି ନେଇଯିବ ।

ଯେଉଁମାନେ ପର ପରିଶ୍ରମରେ ବଡ ଲୋକ ହେବା ସ୍ୱପ୍ନ ଦେଖୁଛନ୍ତି, ଗରୀବ, ଖଟିଖିଆମାନଙ୍କ ଉପରେ ଆଜି ସବୁ ଗୋଟି ଗୋଟି ଧୂଳିସାଥ୍ ହୋଇଯାଉଛି ।

ମୋହନ ବାବୁ ହତାଶ ହୋଇ ଆକାଶକୁ ଅନାଇ ରହିଛନ୍ତି ।

ଅନନ୍ତ ଆକାଶର ନୀଳିମା ମଧ୍ୟରେ ଶଙ୍କାକୂଳ ମନ କେବଳ ଛଟପଟ ହୋଇ ଘୂରିବୁଲୁଛି ।

ଗାଁଟି ସାରା ସୁପ୍ତ ହୋଇ ପଡ଼ିଛି ।

ଏବେବି ଅନ୍ଧାର ଚାରିଆଡେ ଘୋଟି ରହିଛି ।

କିଛି କ୍ଷଣ ପରେ ଗାଁର ଗଞ୍ଜା କୁକୁଡ଼ାର ରାବ ଦୂରରୁ ଶୁଭିଲାଣି । ଗୋଟିଏ ଗଞ୍ଜାର ରାବ ଶୁଣିଲା ପରେ ଆର ଘରୁ ଆଉ ଗୋଟିଏ ଗଞ୍ଜା ରାବି ଉଠୁଛି । ନିଜ ଭିତରେ ଡାକ ହାକରେ ଗାଁରେ ଶୋଇ ରହିଥିବା ଲୋକଙ୍କୁ ଉଠାଇ ସଚେତ୍ କରି ଦେଉଥାନ୍ତି । ଉଠ୍ ଉଠ୍ ରତି ପାହି ଯାହି ଆସୁଛି । ଘର ଚଟିଆ କିଚିରି ମିଚିରି କରି ରାବି ଉଠୁଥାନ୍ତି । ଅଳ୍ପକ୍ଷଣ ପରେ ପଦାକୁ ବାହାରି, ଘର ଖପର ଉପରେ ବସି ଥୁଣ୍ଟ ଖୋସି, ଏ ଗଛରୁ ସେ ଗଛକୁ ଉଡ଼ ବୁଲୁଥାନ୍ତି । ପୂର୍ବ ଆକାଶରୁ ଧୀରେ ଧୀରେ ଅନ୍ଧାର ଅପସରି ଯାଉଛି । ନୂତନ ଆଲୋକର ଆଭ ବାରି ହୋଇ ଆସୁଥାଏ ।

ରାସ୍ତାରେ ହଳ ଲଙ୍ଗଳ ଧରି ଚାଷୀ ବିଲକୁ ବାହାରିଲାଣି । ଯୁଆଳି ଉପରେ ଲଙ୍ଗଳକୁ ଟେକି ରଖିଛି । ଲଙ୍ଗଳର ଦଣ୍ଡ ରାସ୍ତା ଉପରେ ଘସି ହୋଇ ଗୋଟିଏ ପ୍ରକାର ଶବ୍ଦ ସୃଷ୍ଟି କରି ଯୋଡ଼ ବଳଦ ଲଙ୍ଗଳ ଟଣାଟାରି ନେଇ ବିଲକୁ ଯାଉଛି ।

ଲୋକଙ୍କ ଭିତରେ ଡକାହକା ଚାଲିଛି ।

ଗାଁ ମାଇପେ ଘରୁ ବାହାରି ଗୋବର ପାଣି ଦାଣ୍ଡରେ ଛିଟିବା ଆରମ୍ଭ କରି ଦେଲେଣି ।

ଛୋଟ ଛୋଟ ପିଲାମାନେ ନିଦରୁ ଉଠି ଆଖି ମଳି ମଳି, ମା ପଣତ କାନି ଧରି ତା ପଛେ ପଛେ ଘୂରି ବୁଲୁଛି ।

ତପନ ସକାଳ ଉଠି ଆସି ତା କାମରେ ଲାଗିଯାଇଛି ।

ଜିଲ୍ଲାପାଳ ଖବର ଦେଇଛନ୍ତି । ତାଙ୍କ ଗାଁକୁ ଆସିବେ ଏବଂ ଗାଁର କାର୍ଯ୍ୟକ୍ରମ ବୁଲି ଦେଖିବେ ।

କିଛି ସମୟ ପରେ ମଧୁ, ନବ ଆସି ପହଞ୍ଚି ଗଲେ । ଘନ ଅଡ଼ା ମଧ୍ୟ କାନ୍ଧରେ ଗାମୁଛାଟିଏ ପକାଇ ଚାଲି ଆସିଲେ । ପାଖକୁ ଆସି ସମସ୍ତେ ଆସି ଯାଇଥିବା ଦେଖି ଖୁସି

ହୋଇ ଅଣ୍ଟାରେ ଖୁଞ୍ଚି ଥିବା ନାସ ଡବା ବାହାର କରି, ଟିପେ ନାସ ନାକ ପୁଡାରେ ପୁରାଇ ସୁଁ କରି ଟାଣିନେଲେ । ଟିକିଏ ରହି ନାକକୁ ଟିକିଏ ଘସି ଦେଲେ ।

ମଧୁ ପାଖକୁ ଚାଲିଆସି ଅଜାଙ୍କ ମୁହଁକୁ ଚାହିଁ କହିଲା । ଅଜା, ନାସ ଟାଣିଲେ ମଜା ବହୁତ ଲାଗୁଛିନା ? ଅଜା ଟିକିଏ ହସି ଦେଇ କହିଲେ ।

ବୟସ ବଢଲେ ପ୍ରକୃତି ମେଣ୍ଟାଇବା ପାଇଁ କିଛି କୃତ୍ରିମ ସ୍ୱାଦ ଦରକାର । ବିଡ, ସିଗାରେଟ ଟାଣିବା ଅପେକ୍ଷା ନାସ ସ୍ୱାସ୍ଥ୍ୟ ପକ୍ଷରେ ସେତେ କ୍ଷତି କାରକ ନୁହେଁ ।।

ଫେର ବୟସ ହୋଇଗଲେ ଏମିତି ଟିକିଏ ଦେହରେ ନ ଲାଗିଲେ ମନ ଫୁର୍ତ୍ତି ରହେ ନାହିଁ ।

ବୁଢା ବେଳକୁ ମନକୁ ସତେଜ ରଖିବା ପାଇଁ ନାସ ଅଭ୍ୟାସଟିଏ ରହିଯାଇଛି ।। କଣ କରିବି ??

ସମସ୍ତେ ଅଜାଙ୍କ କଥା ଶୁଣି ହସି ଉଠିଲେ ।

ଗାଁର ଲୋକେ କାମ ଧାମରେ ବାହାରି ପଡଲେଣି ।

ଯୁବକମାନଙ୍କର କେନ୍ଦ୍ରସ୍ଥଳୀ ''ଯୁବକଲ୍ୟାଣ ନୀଳୟ'' ପାଖରେ ଗହଳି ବଢୁଛି ।

ଆଜି ସେମାନଙ୍କ ଆନନ୍ଦ କହିଲେ ନ ସରେ ।

ସେମାନେ ହାତକୁ ଯେତେ କାମ ନେଇଛନ୍ତି, ତାହା ଦେଖିବା ପାଇଁ ଜିଲ୍ଲାପାଳ ଏବଂ ଅନ୍ୟ ବହୁ ବିଶିଷ୍ଟ ବ୍ୟକ୍ତିମାନେ ଆସୁଛନ୍ତି । ତାଙ୍କ ସହିତ ବିଭିନ୍ନ ବିଭାଗ, କୃଷି ସମବାୟ ଗୋପାଳନ ବିଭାଗର ଅଫିସରମାନେ ମଧ୍ୟ ଆସୁଛନ୍ତି ।

ଋଣ କିପରି ଲୋକଙ୍କୁ ଦିଆଯାଇଛି । କେତେ ପରିମାଣରେ ଋଣ ଅସୁଲ ହେଉଛି । ସବୁ ସେମାନେ ବୁଝି ଦେଖିବେ । କଣ ଭୁଲ ଭଟକା ରହିଯାଇଛି, ତେବେ ତାକୁ ସୁଧାରିବାକୁ ବାଟ ବତେଇ ଦେବେ ।

ଆସନ୍ତୁ ସେମାନେ, ଆମ କାମ ଦେଖିବେ । ଯାହା ଭଲ ତାକୁ ପ୍ରଶଂସା କରିବେ । ଯାହା ଠିକ୍ ହେଉନାହିଁ ପରାମର୍ଶ ଦେବେ ।

ଠିକ୍ ଭାବରେ କାର୍ଯ୍ୟ କରିବା ପାଇଁ. ବାହାର ଲୋକ ନ ଦେଖିଲେ, ଆମେ ମଧ୍ୟ ଆମର ଭଲ,ମନ୍ଦ ଜାଣିପାରିବା ନାହିଁ । ତପନ ଏତକ କହିଲା ।

ଧୀରେ ଧୀରେ ଯୁବକ ସଙ୍ଘର ଯୁବକମାନେ ଗୋଟି ଗୋଟି ଆସି ପହଞ୍ଚିଗଲେଣି ।

ମହିଳା ସମିତିର କାମ ମଧ୍ୟ ସେମାନେ ଦେଖିବେ ।

ସ୍ତ୍ରୀ ଲୋକମାନେ ଘର କାମସାରି ସେମାନେ ମଧ୍ୟ ଆସି ପହଞ୍ଚିଯିବେ ।

ପୂର୍ବ ଆକାଶରେ କଅଁଳ ସୂର୍ଯ୍ୟକିରଣର ଆଲୋକ ଚହଟି ଯାଉଥାଏ ।

ଦଳ ଦଳ ପକ୍ଷୀ ଖାଦ୍ୟ ଅନ୍ୱେଷଣରେ ଆକାଶରେ ଉଡ଼ିଯାଉଥାନ୍ତି । ପ୍ରଭାତର ପ୍ରଥମ ରଶ୍ମି ସେମାନଙ୍କୁ ଅଭିବାଦନ କଲାଭଳି ମନେ ହେଉଥାଏ ।

ଏତେବେଳକୁ ଦୂରରୁ ରାସ୍ତାରେ ଧୂଳି ଉଡ଼ାଇ ଗୋଟିଏ ଜିପ୍ ଆସିବା ଦେଖାଗଲା ।

ଜିଲ୍ଲାପାଳ ଏବଂ ଅନ୍ୟମାନେ ଆସୁଛନ୍ତି ।

ତପନ, ମଧୁ ଏବଂ ଅନ୍ୟମାନେ ଚଞ୍ଚଳ ହୋଇ ଉଠିଲେ ।

କିଛି ସମୟ ପରେ ସଡକୁ ସଡ ଗାଡ଼ି ଆସି "ଯୁବକଲ୍ୟାଣ ନୀଳୟ" ସାମନାରେ ଛିଡା ହୋଇଗଲା ।

ଜିଲ୍ଲାପାଳ ଏବଂ ଅନ୍ୟାନ୍ୟ ଅଫିସର ଗାଡ଼ିରୁ ଓହ୍ଲାଇ ପଡ଼ିଲେ ।

ଏତେ ଲୋକଙ୍କୁ ଏକାଠି ଏତେ ସକାଳ ଦେଖିବେ ବୋଲି ସେ ଭାବି ପାରିନଥିଲେ ।

ଗାଁର ଜଣେ ଝିଅ ଜିଲ୍ଲାପାଳଙ୍କୁ ଫୁଲମାଳ ତାଙ୍କ ବେକରେ ଗଳାଇ ଦେଲା ।

ସେ ଗାଁର ପରିବେଶ ଦେଖି ମୁଗ୍ଧ ହୋଇ ଯାଇଥାନ୍ତି ।

ତପନ ମଧୁ, ସମସ୍ତଙ୍କୁ ଯୁବକଲ୍ୟାଣ ନୀଳୟ ଭିତରକୁ ପାଛୋଟି ଆଣି ବସିବା ପାଇଁ କହିଲେ ।

ଏକ ଲମ୍ବା ଚୌଡ଼ା ହଲ୍ । ସାମନାରେ କାଠ ଚୌକି କେତୋଟି ପଡିଛି । ତା ସମ୍ମୁଖରେ ତଳେ ଦରି ବିଛା ହୋଇଛି । କାନ୍ଥରେ ଦେଶର ମହାନ୍ ନେତାମାନଙ୍କ ଫଟୋଚିତ୍ର ଟଙ୍ଗା ହୋଇଥାଏ ।

ଦୁଇଟି କାଠ ଆଲମିରା । ବିଭିନ୍ନ ପ୍ରକାର ବହିରେ ଭରପୁର ହୋଇ ରଖା ହୋଇଥାଏ । ପାଖ ବେଞ୍ଚରେ ଦୈନିକ ଖବରକାଗଜ ଥାକ ହୋଇ ରଖା ଯାଇଥାଏ, ତା ପାଖକୁ ଗୋଟିଏ ରେଡ଼ିଓ ।

ଜିଲ୍ଲାପାଳ, ତପନକୁ ଦେଖି ପ୍ରଶ୍ନ କଲେ ।

ଏ କ'ଣ ପାଠାଗାର ?

ତପନ ଜିଲ୍ଲାପାଳଙ୍କୁ ବୁଝାଇ ଦେଲା ।

ଯୁବକମାନଙ୍କ ଶ୍ରମରେ ଏବଂ ଅର୍ଥ ଦାନରେ ଏହି ଯୁବକଲ୍ୟାଣ ନୀଳୟ ନିର୍ମିତ ହୋଇଅଛି । ପ୍ରତିଦିନ ଏଠି ଖବରକାଗଜ ଆସେ, ଏବଂ ଗାଁର ସମସ୍ତେ ବସି ପଢ଼ନ୍ତି । ଛୋଟିଆ ଲାଇବ୍ରେରୀଟିଏ ମଧ୍ୟ ଆରମ୍ଭ ହୋଇଛି । ପୁଅ,ଝିଅ ଗାଁ ଲୋକ ବସି ପଢାପଢ଼ି କରନ୍ତି ।

ଗତ୍ତରେ ଗାଁର ଅଶିକ୍ଷିତ ଲୋକଙ୍କୁ, ସ୍ୱାକ୍ଷର କରି କାର୍ଯ୍ୟକ୍ରମ ମଧ୍ୟ ହାତକୁ ନିଆଯାଇଛି ।

ଗାଁରେ ଜଣେବି ଅଶିକ୍ଷିତ ରହିବେ ନାହିଁ ।

ଗାଁର ଭଲମନ୍ଦ, ଏଠି ବସି ସବୁ ସମାଧାନ ହୁଏ । ଜିଲ୍ଲାପାଳ, ଯୁବକମାନଙ୍କ ଶ୍ରମ ଏବଂ ଶକ୍ତିରେ ଏତେ ବଡ ଘର, ସରକାରଙ୍କ କୌଣସି ସାହାଯ୍ୟ ନ ନେଇ ସେମାନଙ୍କ ଉତ୍ସାହ ଏବଂ ଉଦ୍ଧିପନାରେ ନିର୍ମିତ ହୋଇଥିବା ଦେଖି ମନେ ମନେ ସନ୍ତୋଷ ଲାଭ କଲେ ।

ଯୁବ ଶକ୍ତିର ପ୍ରତୀକ 'ନୀଳୟ' ତାଙ୍କ ମନରେ ଅପାର ଆନନ୍ଦ ସୃଷ୍ଟି କରୁଥାଏ । ଘର ସାଜସଜ୍ଜା ତନ୍ମୟ ହୋଇ ଦେଖୁଥାନ୍ତି ।

କିଛି କ୍ଷଣ ପରେ ଜିଲ୍ଲାପାଳ କହିଲେ ।

ତପନ ବାବୁ ଚାଲ ତୁମ ଯୁବକ ସଂଘର ସମସ୍ତ କାର୍ଯ୍ୟ ବୁଲି ବୁଲି ଦେଖି ଆସିବା ।

ସମସ୍ତେ ଯିବାପାଇଁ ଉଠିଲେ ।

ତପନ ସର୍ବ ପ୍ରଥମେ ଘନ ଅଜାଙ୍କ ସହ ଜିଲ୍ଲାପାଳ ଏବଂ ଅନ୍ୟାନ୍ୟ ଅଫିସରଙ୍କୁ ପରିଚୟ କରାଇ ଦେଲେ ।

ଗାଁର ଜଣେ ପୁରୁଣା ଲୋକ । ଆମ ସମସ୍ତଙ୍କର ସେ ଅଜା ଜିଲ୍ଲାପାଳ କହିଲେ ।

ତାହା ହେଲେ ଆମ୍ଭେ ମଧ୍ୟ ତାଙ୍କୁ ଅଜା ବୋଲି ଡାକିବୁ ।

ଘନ ଅଜା ଜିଲ୍ଲାପାଳଙ୍କୁ କହିଲେ ।

ମୁଁ ସମସ୍ତଙ୍କ ଅଜା ଯେତେବେଳେ, ଆପଣମାନଙ୍କ ମଧ୍ୟ ଅଜା ।

ଅଜାବୁଢାଙ୍କ କଥାରେ ସମସ୍ତେ ହସି ଉଠିଲେ ।

ହସି ହସି ସମସ୍ତେ ଆଗକୁ ଚାଷ ଦେଖିବା ପାଇଁ ବିଲ ଆଡକୁ ଆଗେଇ ଗଲେ ।

ସମସ୍ତେ ଚାଲିଛନ୍ତି ବିଲକୁ । ଚାଷ କାର୍ଯ୍ୟ ଦେଖିବେ ।

ଆଦର୍ଶ ଚାଷ ।

ଆକାଶରେ ମେଘ ଭାଙ୍ଗି ରହିଛି । ମେଘୁଆ ଆକାଶ । ସକାଳୁ ସୁନେଲୀ ସୂର୍ଯ୍ୟକିରଣ ବିଛେଇ ହୋଇ ପଡ଼ିଥିଲା ।

ମାତ୍ର ଏଇନେ ଆକାଶରେ ମେଘ ଘୁମେଇ ରହିଛି । ପ୍ରକୃତିର କ୍ଷଣ କ୍ଷଣକେ ପରିବର୍ତ୍ତନ । ଖରା ତେଜ ନାହିଁ । ତେଣୁ ଦେହରେ ଝାଳ ଫୁଟୁ ନାହିଁ ।

ସମସ୍ତେ ଜମିର ଏ ମୁଣ୍ଡରୁ ସେ ମୁଣ୍ଡ ବୁଲି ଦେଖୁଛନ୍ତି । ଦୂର ପାହାଡରୁ ଶୀତଳ ପବନ ବହୁଛି । ମେଘୁଆ ଆକାଶରେ ଧଳା, କଳା, 'ବଉଦ ଭସିଚାଲିଛି । ପବନ ଧାନ କ୍ଷେତରେ

ଲହଡ଼ ସୃଷ୍ଟି କରିଚାଲିଛି । ଧାନ କ୍ଷେତର ଲହଡ଼ରେ ଏକ ପ୍ରକାର ମଧୁର ସ୍ୱର ସୃଷ୍ଟି ହେଉଛି ।

ବିଲରେ ଦଳ ଦଳ ବଗ ମୌନ ହୋଇ ଧାନ କ୍ଷେତକୁ ଅନାଇ ରହିଥାନ୍ତି । ହଠାତ୍ ଏତେ ଲୋକଙ୍କୁ ଦେଖି ଧଳା ବଗ ଡେଣା ମେଲାଇ ଭୟଭୀତ ହୋଇ ଆକାଶକୁ ଉଡ଼ିଗଲେ । କେତେ ପାଖ ଗଛ ଡାଳରେ ବସିପଡ଼ି ଅନାଇ ରହିଲେ । ଶୁଆ, ହରଡ଼ ପଳ ପଳ ଏ କ୍ଷେତରୁ ସେ କ୍ଷେତକୁ ମଧୁର ଗୁଞ୍ଜନ ସୃଷ୍ଟି କରି ଉଡ଼ି ବୁଲୁଥାନ୍ତି । ସେମାନଙ୍କ ମଧୁର ସ୍ୱର ଲହରୀରେ ମନ ମୋହି ଯାଇଥାଏ ।

ଜିଲ୍ଲାପାଳ ଧାନ କ୍ଷେତ ବୁଲି ବୁଲି ତନ୍ମୟ ହୋଇଯାଇଥାନ୍ତି ।

ଧାନ କ୍ଷେତରୁ ପରିଷ୍କାର ଭାବରେ ଘାସବଛା ହୋଇଯାଇଥାଏ । ସାର ପଡ଼ିଥିବା ଯୋଗୁଁ ଧାନ ଗଛ ସାଗୁଆ ଏବଂ ହୃଷ୍ଟପୁଷ୍ଟ ହୋଇ ବଢ଼ିଥାଏ ।

ଶସ୍ୟଭରା କ୍ଷେତ ଉପରେ ଶୀତଳ ପବନର ଉତ୍ତାଳ ତରଙ୍ଗ ମନକୁ ପୁଲକିତ କରି ଦେଉଥାଏ ।

ଖୁସୀ ମନରେ ଜିଲ୍ଲାପାଳ ଏବଂ ଅନ୍ୟ ଅଫିସରମାନେ ପ୍ରକୃତିର ଏକ କମନୀୟ ଶୋଭା ଉପଭୋଗ କରୁଥାନ୍ତି । ଜୀବନ ତମାମ୍ କାଗଜ ଚାଷରେ ବ୍ୟସ୍ତ ରହି, ଆଜି ପ୍ରକୃତ ଚାଷ ଆଖି ପୁରାଇ ଦେଖିବାର ସୁଯୋଗ ପାଇ ପାରିଛନ୍ତି । ମନ ଆନନ୍ଦରେ ନାଚି ଉଠୁଥାଏ ।

ଧାନ କ୍ଷେତ ପାର ହୋଇ ସେମାନେ ସମସ୍ତେ କଦଳୀ ବଗିଚାରେ ଯାଇ ପହଞ୍ଚିଗଲେ ।

ତପନ ଜିଲ୍ଲାପାଳଙ୍କୁ ତନ୍ନ ତନ୍ନ ବୁଝାଇ ଦେଉଥାଏ ।

ଉପ ଜମିରୁ ମାଟି କାଢ଼ି ନୂଆ ଦୋରସା ପଟୁ ମାଟି ପକାଗଲା । କଦଳୀ ଚାଷ ପାଇଁ ଦୋରସା, ପଟୁ ମାଟି କିମ୍ବା ଦୋରସା ମଟାଳ ମାଟି ଉତ୍କୃଷ୍ଟ । ବାତ୍ୟା ହେଉଛି କଦଳୀ ଚାଷର ପ୍ରଧାନ ଶତ୍ରୁ । ତେଣୁ ସେଥିରୁ ରକ୍ଷା କରିବା ପାଇଁ ଚାରିଆଡେ ବାତ୍ୟାନିରୋଧ ଗଛ ଲଗାଯାଇଛି ।

ବନ୍ତଳ କଦଳୀ, ଚମ୍ପା କଦଳୀ, କାଠିଆ କଦଳୀ ଧାଡ଼କି ଧାଡ଼ ଲାଗିଛି । କଦଳୀ କାନ୍ଦିମାନ କେତକ ଗଛରେ ପଡ଼ିବାକୁ ଆରମ୍ଭ କଲାଣି । କେଉଁଠି କଦଳୀ କାନ୍ଦି ପାଚିବାକୁ ଆରମ୍ଭ କଲାଣି । ଶାଗୁଆ ରଙ୍ଗ ପରିବର୍ତ୍ତେ ହଳଦିଆ ରଙ୍ଗ ଧରିଲାଣି । କେତେକ ଗଛ ପାଚିଗଲା ପରେ କାନ୍ଦିକଟା ସରିଲାଣି ।

କଦଳୀ ବଗିଚା ଦେଖିବାକୁ କେତେ ସୁନ୍ଦର ଦିଶୁଛି ।

ତପନ କହି ଚାଲିଛି ।

ଚମ୍ପା କଦଳୀ ସହଜରେ ପଚିଯାଏ ନାହିଁ । ତେଣୁ ବିକ୍ରି ନ ହୋଇ ପାରିଲେ କିଛିଦିନ ନଷ୍ଟ ନ ହୋଇ ରହିଯାଏ ।

କଦଳୀର ପ୍ରଚଳିତ ଢିଶେଷଢ ଢ଼ଢଉଛି ।

ଜ୍ୟେଷ୍ଠେ କଦଳୀ ଆଷାଢ଼େ କିଆ

ପୋତ ନ ପୋତ ହୁଅଇ ଠିଆ ।

ଜ୍ୟେଷ୍ଠ କାର୍ତ୍ତିକରେ ପୋତ କଦଳୀ

କାର୍ତ୍ତିକ ଅପେକ୍ଷା ଜ୍ୟେଷ୍ଠରେ ବଳୀ ।

ବର୍ଷା ଆରମ୍ଭରେ କଦଳୀ ଲଗାଇଲେ ବିନା ଜଳ ସେଚନରେ ବର୍ଷା ପାଣିପାଇ କଦଳୀ ହୃଷ୍ଟପୁଷ୍ଟ ହୋଇଥାଏ । ଏବଂ କାନ୍ଧ ମଧ୍ୟ ବଡ ହୋଇଥାଏ ।

ଦୁଇ କଦଳୀ ଗଛ ମଧ୍ୟରେ ଅମୃତଭଣ୍ଡା ଗଛ । ଛୋଟ ବଡ କେତେଯେ ଗଛ ଫୁଲ ଫଳରେ ଭରିଯ ଇଛି ।

କଦଳୀ ଗଛର ବଳକା ସାର ପାଣିରେ ଅମୃତଭଣ୍ଡା ଗଛ ଆପେ ଆପେ ବଢ଼ିଚାଲିଛି ।

ସ୍ଥାନ ନଷ୍ଟ ନକରି, କଦଳୀ ଚାଷ ସହିତ ଅମୃତଭଣ୍ଡା ଏକ ସୁସ୍ୱାଦୁ ଫଳ ଅଧିକ ଉପାର୍ଜିତ ହୋଇ ଆୟ ବୃଦ୍ଧି ହୋଇପାରିଛି ।

ମୂଲିଆମାନେ କାମରେ ଲାଗିଥାନ୍ତି । କେଉଁଠି ଡେଙ୍ଗାରେ କୁଅଁରୁ ପାଣି କାଢ଼ି କଦଳୀ ଗଛରେ ମଡ଼ାଯାଉଛି ତ କେଉଁଠି ବଡ ବଡ କୁଅଁରୁ ପମ୍ପ ସାହାଯ୍ୟରେ ପାଣି ଉଠାଇ କଦଳୀ ଗଛରେ ମଡାଯାଉଛି । କଦଳୀ ଗଛ ପାଇଁ ଯଥେଷ୍ଟ ପାଣିର ଆବଶ୍ୟକତା । ପାଣିହିଁ ଜୀବନ ।

କେତେକ କୋଡା ଖୋସା କରି ହୁଡା ଟେକୁଥାନ୍ତି । ଏଭଳି ବିଭିନ୍ନ କାର୍ଯ୍ୟ ଦେଖି ସମସ୍ତେ ତନ୍ମୟ ହୋଇ ଯାଇଥାନ୍ତି ।

କଦଳୀ ବଗିଚା ପାଖ ଦେଇ ପୋଟଳ ବଗିଚା । ପ୍ରାୟ ଦଶ ଏକର ଜମିରେ ପୋଟଳ ଲାଗିଥାଏ, ପୋଟଳ ଫଳିବାରେ ଆରମ୍ଭ ହୋଇ ଯାଇଥାଏ, ଧାଡ଼ିକି ଧାଡ଼ିକି ପୋଟଳ ଗଛ ହାଞ୍ଚରେ ମାଡ଼ି ଯାଇଥାଏ ।

ପାଣି ଦେବା ଚାଲିଥାଏ । । କେତକ ପୋଟଳ ତୋଳିବାରେ ବ୍ୟସ୍ତ ଥାନ୍ତି ।

ଏ ସମସ୍ତ କାର୍ଯ୍ୟ ଦେଖି ଜିଲ୍ଲାପାଳ କହିଲେ ।

ତପନ ବାବୁ ଆପଣମାନଙ୍କ କାର୍ଯ୍ୟ ଦେଖି ବାସ୍ତବରେ ମନ ମୋର ଗର୍ବରେ ଫୁଲି ଉଠୁଛି । ଆପଣମାନଙ୍କ ଆନ୍ତରିକ ଚେଷ୍ଟା ଏବଂ ଉଦ୍ୟମ ଫଳରେ ଶୁଷ୍କ ଅନାବନା ଜମି ଆଜି ସବୁଜ କ୍ଷେତ, ବାଡ଼ ବଗିଚାରେ ହସି ଉଠୁଛି ।

ତପନ, ମଧୁ, ଘନଅଡା ନବଦ୍ୱାରିକା ତାଙ୍କ କଥା ଶୁଣି ମନରେ ଅପାର ଆନନ୍ଦ ଉପଲବ୍‌ଧି କରି ପାଦକୁ ପାଦ ମିଳାଇ ଆଗେଇ ଚାଲିଥାନ୍ତି ।

କିଛିକ୍ଷଣ ପରେ ଗାଈଗୁହାଳ ପାଖରେ ପହଞ୍ଚିଗଲେ । ଗାଈମାନଙ୍କ ହମ୍ବା ରଡରେ କାନ ଅତଡା ପଡଯାଉଥାଏ । ଏକାଠି ଏତେ ଲୋକଙ୍କୁ ଏବଂ ନୂଆ ଲୋକଙ୍କୁ ଦେଖି ଗାଈମାନେ ଭୟଭୀତ ହୋଇ ନିଜ ନିଜ ଶୋଇଥିବା ସ୍ଥାନରୁ ଉଠିପଡ ବନ୍ଧା ଦଉଡ଼ିକୁ ଟାଣି ଦୌଡ ପକାଇବାକୁ ଚେଷ୍ଟା କରୁଥାନ୍ତି ।

ତପନକୁ ଦେଖି ଗାଈମାନେ ନୀରବରେ ଛିଡ଼ା ହୋଇଗଲେ । ତପନ, ମଧୁ ପାଖକୁ-ଯାଇ ଗାଈମାନଙ୍କ ଦେହ ମୁଣ୍ଡ ଘସି, କୁଣ୍ଡାଇ ଦେଲେ । ସମସ୍ତେ ବର୍ତ୍ତମାନ ଶାନ୍ତ, ଭୟର କୌଣସି କାରଣ ନାହିଁ ।

ପଚରଟି ଦୁଧିଆଳି ଗାଈ । ହୃଷ୍ଟପୁଷ୍ଟ ଧଳା, କଳା, ନାଲି ରଙ୍ଗର ଗାଈ । ଜର୍ସିଗାଈ, ଗୋଟିଏ ଲେଖାଏଁ ଗାଈ ପନ୍ଦରରୁ ଅଠର ଲିଟର ପର୍ଯ୍ୟନ୍ତ ଦୁଧ ଦେଉଥାନ୍ତି ।

ଜିଲ୍ଲାପାଳ ଏତେ ଗାଈଙ୍କୁ ଏକାଠି ଦେଖି ତନ୍ମୟ ହୋଇ ଅନାଇ ରହିଥାନ୍ତି ।

ଅନ୍ୟ ପାଖରେ ଗାଈମାନଙ୍କ ବାଛୁରୀ ବନ୍ଧା ହୋଇଥିାନ୍ତି । ସିମେଣ୍ଟ ଚଟାଣ,ପରିଷ୍କାର ପରିଚ୍ଛନ୍ନ । ଜଣେ ଲୋକ ସଦାବେଳେ ଗାଈ ଗୋବର ସାଫ କରି ଦେଉଥାଏ । ଗାଈର ମୁତ ଚଟାଣରେ ପଡ଼ ତଳକୁ ଏକ ଛୋଟ ନାଳି ଦେଇ ଗଡ଼ଯାଇ ଗୋବର ଖତ ଗଦାରେ ପଡୁଥାଏ ।

ହୃଷ୍ଟପୁଷ୍ଟ ଗାଈ ଗୁଡ଼ିକ ତୃପ୍ତିରେ ସମସ୍ତଙ୍କୁ ଅନାଇ ପାକୁଳି ଚେକି ଚାଲିଥାଏ ।

ଜିଲ୍ଲାପାଳ କିଛିକ୍ଷଣ ଅନାଇ ରହିଲା ପରେ ଗୋଟିଏ ଗାଈର ପାଖକୁ ଚାଲିଯାଇ ତା ମୁଣ୍ଡ ପିଠିରେ ହାତ ବୁଲାଇ ଆଣିଲେ । ହାତ ସ୍ପର୍ଶରେ ଗାଈର ଶରୀର ପୁଲକିତ ହୋଇ ଉଠୁଥାଏ । ସେ ନୀରବରେ ତପନକୁ ଅନାଇ ରହିଥାଏ ।

ଜିଲ୍ଲାପାଳ ତପନକୁ ପ୍ରଶ୍ନ କଲେ । ଗାଈମାନଙ୍କୁ କଣ ଖାଦ୍ୟ ଖାଇବାକୁ ଦେଉଛନ୍ତି ?

ମଧୁ ଟିକିଏ ଆଗକୁ ଚାଲିଆସି କହିଲା ।

ପ୍ରତ୍ୟେକ ଗାଈଙ୍କୁ ଚିନାବାଦାମ ପିଡ଼ିଆ, ବିରି ଚୋପାକୁ ତିନି ଚାରି ଘଣ୍ଟା, ପାଣିରେ ବତରାଇ କୁଣ୍ଡାସହ, ମକା ଗୁଣ୍ଡକୁ ମିଶାଇ ପ୍ରତ୍ୟହଃ ସକାଳ ପାଞ୍ଚ ଘଣ୍ଟା ଏବଂ ସନ୍ଧ୍ୟା

ତିନି ଘଣ୍ଟାରେ ଦିନକୁ ଦୁଇଥର ଖାଇବାକୁ ଦିଆଯାଏ । ଦାନା ଖାଉସାରିଲା ପରେ କଞ୍ଚା ଘାସ ଯଥେଷ୍ଟ ପରିମାଣରେ ଖାଇବାକୁ ଦିଆଯାଏ । ସେଥିପାଇଁ ସ୍ୱତନ୍ତ୍ରଭାବେ ଦୁଇ ଏକର ଜମିରେ ଘାସ ଚାଷ କରଯାଇଛି ।

ସକାଳ ଏବଂ ସନ୍ଧ୍ୟାରେ ଦିନକୁ ଦୁଇଥର ଦୁଆଯାଏ ।

ଜିଲ୍ଲାପାଳ ପ୍ରତ୍ୟେକ ଗାଈର ଇତିହାସ ଏବଂ ଦୁଧ ଦେବା କ୍ଷମତା ମଧ୍ୟ ବୁଝିନେଲେ ।

ଗାଈ କ୍ଷୀର ପ୍ରାୟ ଦେଢଶହ ଲିଟର ଚିଲିଙ୍ଗପ୍ଲାଣ୍ଟରେ ଲିଟର ପାଞ୍ଚଟଙ୍କା ଦରରେ ଯୋଗାଇ ଦିଆଯାଏ ।

ଚିଲିଙ୍ଗପ୍ଲାଣ୍ଟର ଗାଡ଼ି ଆସି ଦୁଧ ନେଇଯାଏ । ପ୍ରତି ସପ୍ତାହରେ ଥରେ ଟଙ୍କା ପଇଠ କରିଦିଏ ।

ମଧୁ କହିଲା, ଟଙ୍କା ଆଣି ଆମ ଏକାଉଣ୍ଟରେ ବ୍ୟାଙ୍କରେ ଜମା କରି ଦିଆଯାଏ । ଗୋଖାଦ୍ୟ ଯାହା ଆବଶ୍ୟକ ଟଙ୍କା ଦେଇ ମାସକ ପାଇଁ ଯୋଗାଡ଼ କରି ନେଇଆସୁ ।

ଏମିତି କଥାବାର୍ତ୍ତା କରି ସମସ୍ତେ ଆସି ଗାଁରେ ପହଞ୍ଚିଗଲେ ।

କର୍ମ କରିବା ନିଶା ଆଜି ସେମାନଙ୍କୁ ଏତେଦୂର ଆଗେଇ ନେଇ ପାରିଛି । ଜିଲ୍ଲାପାଳ ଏତେଜଣ ନିଃସ୍ୱାର୍ଥପର ବ୍ୟକ୍ତିଙ୍କ ତ୍ୟାଗ, ନିଷ୍ଠା, ଆନ୍ତରିକତା ଦେଖି ସେ ନିଜକୁ ଲଜ୍ଜିତ ମନେକଲେ । କେତେ ଭାବନା କେତେ କଳ୍ପନା ଭିତରେ ଅନୁସନ୍ଧାନ ମନ ନେଇ ସେ ଆସିଥିଲେ ।

ଅନେକ ଲୋକଙ୍କଠୁ ଅନେକ ପ୍ରକାର ଗୁଜବ ଶୁଣିବାକୁ ପାଇଥିଲେ । ଅନେକ ଆପତ୍ତି ଅଭିଯୋଗ ମଧ୍ୟ ପାଇଥିଲେ । ଭବିଷ୍ୟତ ପାଇଁ ସତର୍କବାଣୀର ଅଭିଯୋଗ ମଧ୍ୟ ପାଇଥିଲେ ।

ମାତ୍ର କାହିଁ ସେଭଳି କୌଣସି ସଂକୀର୍ଣ୍ଣତାର ଚିହ୍ନବର୍ଣ୍ଣ ଦେଖିବାକୁ ପାଇଲେ ନାହିଁ ।

କେତେ ଆଶା, ଆଶଙ୍କା ମଧ୍ୟରେ ବୁଲି ବୁଲି ତନ୍ନ ତନ୍ନ କରି ଦେଖିଗଲେ ।

ମନେ ମନେ ଜିଲ୍ଲାପାଳ ଲଜ୍ଜିତ ହେଲେ ।

ସେମାନଙ୍କ ନିଷ୍ଠା, ଉଦ୍ୟମ ଭିତରେ କେତେ ଆନ୍ତରିକତା ଫୁଟି ରହିଛି ।

ସେମାନଙ୍କ କର୍ମମୟ ଜୀବନର ପଦ୍ଧତି, ଚାଲି ଚଳନ କେତେ ନିରାଡମ୍ବର, କେତେ ଆକର୍ଷଣୀୟ କେତେ ହୃଦୟସ୍ପର୍ଶୀ ସେ ଆଜି ମର୍ମେ ମର୍ମେ ଉପଲବ୍ଧି କରିପାରିଲେ ।

ଏମାନେ କୌଣସି ମନ୍ଦ ଉଦ୍ଦେଶ୍ୟ ନେଇ ଅନୁଷ୍ଠାନ ଗଢ଼ିବାପାଇଁ ସଂକଳ୍ପ କରି ନାହାନ୍ତି ।

ସେମାନଙ୍କ ସଂକଳ୍ପ କେବଳ ଅଞ୍ଚଳର ବିକାଶ ନିଃସ୍ୱାର୍ଥ ଭାବରେ କର୍ମରେ ସେମାନେ ରତ ।

ଫଳରେ ଅଞ୍ଚଳର ଆଜି ଏତେ ବିରାଟ ପରିବର୍ତ୍ତନ ହେବା ସମ୍ଭବପର ହୋଇ ପାରିଛି ।

ଉଦ୍ଦେଶ୍ୟ ଯଦି ମହତ୍, କର୍ମପନ୍ଥା ମଧ୍ୟ ମହତ୍ ହେବା ଉଚିତ୍ । ହୀନମାର୍ଗ କେବେ କୌଣସି ମହତ୍ ଉଦ୍ଦେଶ୍ୟ ସାଧନରେ ସଫଳତା ଆଣି ଦେଇ ପାରେ ନାହିଁ ।

ତେଣୁ ଜିଲ୍ଲାପାଳ ବହୁଦିନରୁ ମନରେ ସଂଚିତ ଆକର୍ଷଣ ବଳରେ ଆଜି ସେ ଟାଣିହୋଇ ସ୍ୱଚକ୍ଷୁରେ ଦେଖି ବୁଝିବା ପାଇଁ ଚାଲିଆସିଥିଲେ ।

ଅନି-ସନ୍ଧ୍ୟାଙ୍କୁ ମନରେ ଜିଲ୍ଲାପାଳ ଆସି, ତନଖି କରି ଯିବା କଥା ତପନ, ମଧୁ ହାରିକାଙ୍କ ମନରେ ମଧ୍ୟ ଟିକିଏ ବି ସ୍ପର୍ଶକରି ପାରିନଥିଲା ।

ଜିଲ୍ଲାପାଳଙ୍କ ଅସ୍ୱାସ୍ଥ୍ୟକର ମନର ଭାବନା ମନର କଳୁଷତା, ତପନ ହାରିକାଙ୍କ ସହ ମିଶିବା, ଆଲୋଚନା କରିବା ମାଧ୍ୟମରେ ଆଜି ଆପେ ଆପେ ଦୂରେଇ ଗଲା ।

ଏଭଳି ଚିନ୍ତାକରୁ କରୁ ସେ କେତେବେଳେ ଆସି ମହିଳା ସମିତି ଗୃହ ପାଖରେ ପହଞ୍ଚିଗଲେ ।

ହଠାତ୍ କନକ ପାଖକୁ ଆସି ସମ୍ବର୍ଦ୍ଧନା ଜଣାଇ ପାଛୋଟି ନେଲା ।

ଜିଲ୍ଲାପାଳ ତନ୍ମୟ ହୋଇ ସେମାନଙ୍କ କାର୍ଯ୍ୟକଳାପ ଦେଖୁଥାନ୍ତି ।

କନକ ମହିଳା ସମିତିର ଦାୟିତ୍ୱକୁ ସୁରୁରୁ ରୂପେ ପରିଚାଳିତ କରିପାରୁଛନ୍ତି ବୋଲି ସେ ଅଳ୍ପକ୍ଷଣ ମଧ୍ୟରେ ଉପଲବ୍ଧି କରି ପାରିଲେ ।

ଗାଁର ଅଶିକ୍ଷିତ ମହିଳାଙ୍କୁ ଏକାଠି କରି ନୂଆ ନୂଆ କାମ ଶିଖାଇବାରେ ଯେଉଁ ଉଦ୍ୟମ କରିଚାଲିଛି ଏବଂ ମହିଳାମାନେ ମଧ୍ୟ ତା ପ୍ରତି ଶ୍ରଦ୍ଧା ଆଗ୍ରହରେ ଶିଖିବାକୁ ଜାଣିବାକୁ ଯେଉଁ ବ୍ୟଗ୍ରତା ପ୍ରକାଶ କରୁଛନ୍ତି ବାସ୍ତବିକ ଦେଖିବା ବିଷୟ ।

ଜିଲ୍ଲାପାଳ ତନ୍ମୟ ହୋଇ ମହିଳାମାନଙ୍କ କ୍ରୁଶ କାମ, କଣ୍ଢେଇ ତିଆରିକାମ, ସେମାନଙ୍କ ହସ୍ତ ସଂଚାଳନ ମୁହଁରେ ସଦା ହସର ଲହରୀ ପରିବେଶକୁ ସତେଜ କରି ଦେଇଥାଏ ।

ଯୁବକ, ଯୁବତୀମାନଙ୍କ ଉତ୍ସାହ ଉଦ୍ଦିପନାକୁ ପ୍ରେରଣା ଯୋଗାଉଛନ୍ତି ଘନଅଡା ।

ବୟସ୍କ ହେଲେ ମଧ୍ୟ ଯୁବକମାନଙ୍କ ସହ ସେ ମଧ୍ୟ ପାଦକୁ ପାଦ ମିଳାଇ ଆଗେଇ ଚାଲିଛନ୍ତି ।

ସେମାନଙ୍କୁ ପ୍ରତି କ୍ଷେତ୍ରରେ ଉତ୍ସାହିତ କରୁଥାନ୍ତି । କେତେବେଳେ ଭୁଲଭଟକା ହୋଇଗଲେ ଠିକ୍ ବାଟରେ ଚାଲିବାପାଇଁ ପରାମର୍ଶ ଦେଇଥାନ୍ତି ।

ସମସ୍ତ ମିଳିତ ଉଦ୍ୟମର ଏ ଏକ ପ୍ରତୀକ ।

ଯାହା ସରକାର ବହୁଅର୍ଥ, ବହୁଶ୍ରମ ବ୍ୟୟ କରି ମଧ୍ୟ ଯାହା କରି ପାରିନଥାନ୍ତା । ତାହା ଆଜି ଆନ୍ତରିକତା ବଳରେ ଲୋକଙ୍କ ସହଯୋଗରେ ବହୁ କାର୍ଯ୍ୟ ଆଜି ସଂପାଦିତ ହୋଇ ପାରିଛି ।

ଲୋକଙ୍କ ଭିତରେ ଋଣ ନେବାପାଇଁ ଯେତେ ଆଗ୍ରହ, ସମୟ ହୋଇଗଲେ ଋଣ ପରିଶୋଧ କରିବାପାଇଁ ମଧ୍ୟ ସେହି ବ୍ୟଗ୍ରତା ଦେଖା ଦେଇଛି । ସେମାନେ ଠିକ୍ ଜାଣିଛନ୍ତି ଋଣ ନେଇ ଫେରସ୍ତ ନ ଦେଲେ ପୁନର୍ବାର ଋଣ ପାଇ ପାରିବେ ନାହିଁ । ତାଙ୍କରି ଅର୍ଥକୁ ନେଇ ପୁଣି ସମବାୟ ବ୍ୟାଙ୍କରେ ଜମା କରିଦେବା ମନୋବୃତ୍ତି ସୃଷ୍ଟି ହୋଇ ପାରିଛି । ଏହି ମନୋଭାବହିଁ ତାଙ୍କରି ପ୍ରଗତିର ମୂଳମନ୍ତ୍ର ହୋଇପାରିଛି ।

କାହା ମନରେ କାହା ପ୍ରତି ଆବିଳତା ନାହିଁ କାହା ପ୍ରତି କାହାର ଅବିଶ୍ୱାସ ନାହିଁ । କାହା ପ୍ରତି କାହାର ସନ୍ଦେହ ନାହିଁ । ପ୍ରେମ, ମୈତ୍ରି ପ୍ରୀତିର ପ୍ରତୀକ ସ୍ୱରୂପ 'ରେଙ୍ଗସାପାଲି' ଗାଁଟି ଆଜି ସମଗ୍ର ଅଞ୍ଚଳରେ ଚହଟି ଯାଇଛି ।

ନ ଶୁଣିବା କଥା, ନ ଜାଣିବା କଥା ନ ଦେଖିଲେ ମନରେ ପ୍ରତ୍ୟୟ ଆସିବ ନାହିଁ ।

ଗାଁ ଗାଁରେ ଯେଉଁଠି କନ୍ଦଳ, ମାଳି ମୋକଦ୍ଦମା ହିଂସା, ପ୍ରତିହିଂସା ଏପରିକି ସାଇପଡ଼ିଶା ମଧ୍ୟରେ ତିକ୍ତତା ଏତେ ବଢ଼ିଯାଇଛି, ତାହା ଆଜି କଳ୍ପନା କରିବା କଷ୍ଟକର ।

ଜଣେ ଅନ୍ୟ ଜଣର ଶିରି ଦେଖିପାରୁ ନାହିଁ । ସେଭଳି ଅବସ୍ଥାରେ ରେଙ୍ଗସାପାଲି ଏବଂ ତା ଆଖପାଖ ଗାଁ ମଧ୍ୟରେ ପ୍ରଗତିର ସୁଅ ଛୁଟିଛି । ଲୋକଙ୍କର ବିକାଶ ହୋଇ ଚାଲିଛି । ଲୋକେ ଦିନରାତି ପରିଶ୍ରମ କରି ଅଧିକ ଉପାର୍ଜନ କରିପାରୁଛନ୍ତି । ସୁଖରେ ଦିନ କାଟୁଛନ୍ତି । ଦୁଇଓଳି ପେଟପୁରା ଖାଉଛନ୍ତି । ଭଲ ଲୁଗାଜାମା ପିନ୍ଧିପାରୁଛନ୍ତି । ଗାଁରେ ସମସ୍ତେ ଶିକ୍ଷିତ ହୋଇ ପାରୁଛନ୍ତି ।

ସାକ୍ଷରତା ଅଭିଯାନ ଫଳରେ ଗାଁର ଅଶିକ୍ଷିତ ଲୋକେ ଦିନକାମ ସାରି ଦୁଇ ଅକ୍ଷର ପାଠପଢ଼ି ଆଜି ପୁରାଣ, ଭାଗବତ ବୋଲୁଛନ୍ତି । ଏତକ ନ ଦେଖିଲେ କିଏ ତ ବିଶ୍ୱାସ କରି ପାରିବ ନାହିଁ ।

ମାତ୍ର ଆଜି ସବୁ ସମ୍ଭବପର ହୋଇ ପାରିଛି ।

ଜିଲ୍ଲାପାଳ ଏତେଦିନ ଧରି ଲୋକଙ୍କଠୁ ବିଭାଗୀୟ ଅଫିସରମାନଙ୍କଠୁ ଶୁଣୁଥିଲେ । ମାତ୍ର ସେ ଯେତେବେଳେ ଆସି ସ୍ୱଚକ୍ଷୁରେ ତନ୍ନ ତନ୍ନ କରି ଦେଖିଗଲେ, ମନରେ ବିସ୍ମୟ, ପୁଲକ ସୃଷ୍ଟି ହେଲା । ତାଙ୍କ ଜିଲ୍ଲାର ଏକ ଆଦର୍ଶ ଗ୍ରାମ, ଏ ଦେଶର ଆଦର୍ଶ ଗ୍ରାମ ମଧ୍ୟରେ ଅଗ୍ରଗଣ୍ୟ ଏହାହିଁ ତାଙ୍କ ମନକୁ ପୁଲକିତ କରି ଦେଇଥାଏ ।

ଜିଲ୍ଲାପାଳ ଯିବାପାଇଁ ବାହାରିଲେ ।

ଗଲାବେଳକୁ ସମସ୍ତଙ୍କୁ ସେମାନଙ୍କ କାର୍ଯ୍ୟପାଇଁ ପ୍ରଶଂସା କଲେ । ଅଞ୍ଚଳର ପ୍ରଗତି ପାଇଁ ଯୁବକ ଯୁବତୀମାନଙ୍କ ଉତ୍ସାହ ଉଦ୍ଦୀପନାରେ ଯେତେକ ହୋଇ ପାରିଛି, ଢ଼ଣେ ନ ଦେଖିଲେ ବାସ୍ତବରେ ଉପଲବ୍ଧି କରିପାରିବ ନାହିଁ । ସେ ବିଶେଷରେ ତପନର ଧୈର୍ଯ୍ୟ-ସାହାସିକତା, କର୍ତ୍ତବ୍ୟନିଷ୍ଠା ପ୍ରତି ପ୍ରଶଂସା ନକରି ରହିପାରିଲେ ନାହିଁ ।

ତା ସହିତ ତାର ବନ୍ଧୁ ସାଥୀ ମଧୁ, ନବ ଏବଂ ଅନ୍ୟ ଯୁବକମାନଙ୍କ ଆନ୍ତରିକତା ସବୁ କାର୍ଯ୍ୟକୁ ଆଗେଇ ନେବାରେ ସାହାଯ୍ୟ କରୁଛି ।

ସେ କହିଲେ ଆପଣମାନଙ୍କ ମିଳିତ ଉଦ୍ୟମରେ ଅସମ୍ଭବ ଆଜି ସମ୍ଭବ ହୋଇ ପାରିଛି । ତେଣୁ ଏହାକୁ ଗଢ଼ ରଖିବାରେ ଆଗେଇ ଚାଲନ୍ତୁ ।

ଆନନ୍ଦରେ ଫେରିଗଲା ବେଳକୁ ସମସ୍ତଙ୍କ ସହ କରମର୍ଦ୍ଦନ କରିଗଲେ । ଏ ପରିକି ଘନଅଜାଙ୍କୁ କର ମର୍ଦ୍ଦନ କରିବାକୁ ଭୁଲିନଥିଲେ ।

ମହିଳାମାନଙ୍କୁ ଯୋଡ ହସ୍ତରେ ନମସ୍କାର କରି ଗାଁରୁ ବିଦାୟ ନେଇଥିଲେ ।

ରୂପ ଗୁଣର ଝିଅଟିଏ କନକ ।

ଦେଖିବାକୁ ଯେମିତି ସୁନ୍ଦର କଥାଟି ମଧ୍ୟ ତାର ଅତି ମଧୁର । ଯା ସହିତ କଥା ପଦଟିଏ ହେବ, ସେ ଆଉଥରେ ଆଉ ଟିକିଏ କଥା ହେବାପାଇଁ ମନ ତାର ଛଟପଟ ହେବ । ମନ ଖୋଜୁଁଥିବ ଆଉ ଟିକିଏ କଥା ହୁଅନ୍ତାକି ?

କଥା ପଦକରେ ମନ କିଣି ନେଉଥିବ । ପରକୁ ଆପଣାର କରିବା ଗୁଣଟି ଧରି ସତେ ଯେପରି ସେ ଜନମିଛି ।

ମଧୁର ତାର କଥା । ସରଳ ତାର ଚାହାଣି । ମଧୁ ଗୁଣର ଝିଅଟିଏ । ଏ ଖଣ୍ଡ ମଣ୍ଡଳରେ ନଥିବ ଏମିତି ଝିଅଟିଏ ।

କନକର କାମ ମଧ୍ୟ ଦିନକୁ ଦିନ ବଢ଼ିଚାଲିଛି । କନକ ଆସି, ମାଇପି ମେଳରେ ବସି, କାହାକୁ ନୂଆ କାମଟିଏ ଶିଖାଇ ଦିଏ, କାହାକୁ ମେସିନ ସିଲାଇବା କାମ ତ କାହା କନା କାଟିବା କାମ ଶିଖାଇ ଦିଏ । କାହାକୁ କ୍ରୁଶ କାମ ଦେଖାଇ ଦିଏ, କାହା ସହିତ ଦୁଇପଦ କଥା ହୋଇଯାଏ । ଏମିତି କଥାବାର୍ତ୍ତା ହୋଇ ବିଦାୟ ନେଇ ଆର ଗାଁକୁ ଯିବାପାଇଁ ବାହାରିଲେ ସଭିଙ୍କ ମନ ଛଟପଟ ହୁଏ ।

ଏତେ ସହଜରେ ଏବଂ ଏତେ ସହଳ ଛାଡ଼ ଦେବାପାଇଁ ମନ ମନା କରେ ।

କେତେ ଆଉ ଗୋଟିଏ-ଗାଁରେ ଏତେ ସମୟ ରହିପାରିବ ନାହିଁ ?

ଆର ଗାଁ ମଧ୍ୟ ତାକୁ ଅପେକ୍ଷା କରି ରହିଥିବେ । ସେଠି ମଧ୍ୟ ତାର କାମ ଅଛି । କେତେ ଝିଲୋକ ତାର ଆସିବା ବାଟକୁ ଅନାଇ ରହିଥିବେ ?

ତପନଭାଇ ତାକୁ କହନ୍ତି, ମଣିଷର ଚିନ୍ତା ଓ ପ୍ରବୃତ୍ତି ତାର କର୍ମକୁ ନିୟନ୍ତ୍ରଣ କରେ । ମନ ଏବଂ ହୃଦୟରେ ବିଶାଳତା ନେଇ ମଣିଷର ପରିବେଶର ବିଶାଳତା ପରିଲକ୍ଷିତ ହୋଇଥାଏ । କିନ୍ତୁ ଯେଉଁଠି ମଣିଷ ପର ବୁଦ୍ଧି ଏବଂ ପରର ଇଙ୍ଗିତରେ ପରିଚାଳିତ ହୋଇ କିଛି କରିବାକୁ ବସେ ସେତେବେଳେ ସେ ତାର ସ୍ୱାତନ୍ତ୍ରତା ହରାଇ ବସେ । ସେଇଠିହିଁ ତାର ଆଗକୁ ବଢ଼ିବା ଉଦ୍ୟମର ବିଫଳତା ଦେଖା ଦେଇଥାଏ ।

ଦିନକୁ ଦିନ କନକର କାର୍ଯ୍ୟ, ତାର ପରିସର ବଢ଼ି ବଢ଼ି ଚାଲିଛି । ତାକୁ ଏ ଗାଁରୁ ସେ ଗାଁକୁ ଯିବାକୁ ପଡ଼ବ । ସମୟ ତା ପାଇଁ ଆଜି ମୂଲ୍ୟବାନ ହୋଇ ପଡ଼ିଛି । ସମୟର ଠିକ୍ ବିନିଯୋଗ ନକଲେ ତାର କାମ ହୋଇ ପାରିବ ନାହିଁ । ସମୟକୁ ଠିକ୍ ମାପି, ଚୁକି ଚାଲିବାକୁ ପଡ଼ିବ ।

ରେଙ୍ଗମାପାଲି ଗାଁର ସ୍ତ୍ରୀଲୋକମାନେ ଖରବେଳଟାରେ ଏକ ନୂଆ କାମ ହାତକୁ ନେଇଛନ୍ତି । ଗାଁରେ ଆଗ୍ରହ ବଢ଼ି ବଢ଼ି ଚାଲିଛି । ମହିଳା ସମିତିର ସଭ୍ୟ ସଂଖ୍ୟା ମଧ୍ୟ ଦିନକୁ ଦିନ ବଢ଼ିଚାଲିଛି ।

ବଡ଼ି, ପାମ୍ପଡ଼, ମରିଚଗୁଣ୍ଡ, ମସଲାଗୁଣ୍ଡ ତିଆରି କରି ତାକୁ ପୁଡ଼ିଆ ବାନ୍ଧି ବିକ୍ରୀକରିବା ଆଉ ଗୋଟିଏ କାମ ହାତକୁ ନିଆଯାଇଛି ।

କନକର କାମ ବଢ଼ି ବଢ଼ି ଚାଲିଛି । ତେଣୁ ତାର ଆଗ୍ରହ ଉତ୍ସାହ ମଧ୍ୟ ବଢ଼ି ବଢ଼ି ଚାଲିଛି ।

ତାର ଚଳ ଚଞ୍ଚଳ ମୁହଁକୁ ଦେଖି ତାର କାମ କରିବା ଆଗ୍ରହ ଉତ୍ସାହକୁ ଦେଖି ଗା ମାଇପେ ମଧ୍ୟ ତାଠୁ ବହୁତ କଥା ଶିଖିବାପାଇଁ ଭିଡ଼ ଜମାନ୍ତି ।

ଅନେକ ଆଗ୍ରହରେ ନୂଆ ନୂଆ କାମ ଶିଖନ୍ତି । କେତେ ମାଇପେ ତାର କାମ କରିବା ଆଗ୍ରହ, ତାର ହସ୍ତଚାଳନା, ତାର ଅନ୍ୟକୁ ବତାଇ ଦେଉଥିବ ମୁଖଭଙ୍ଗୀକୁ ଅନାଇ ରହିଥାନ୍ତି । ସେମାନେ ମଧ୍ୟ ଦେଖି ଶିଖି ଧୀରେ ଧୀରେ ଜାଣିଯିବେ ଏହି ଭରସା ସେମାନଙ୍କ ମନରେ କନକ ଧାରଣା ଦେଇଥାଏ । କିଏ ଜନମରୁ ମାଁ ପେଟରୁ ସବୁକଥା ଶିଖିନଥାଏ । ଏମିତି ଦେଖି ଶିଖି ସମସ୍ତେ ଜାଣନ୍ତି । ଯିଏ ଜାଣିଛି ଯିଏ ଜାଣିନାହିଁ ତାକୁ ବତାଇ ଦେବ । ସେ ଧୀରେ ଧୀରେ ଜାଣିଯିବ । ଏବଂ ଯେ ଜାଣିନଥିବ ତାକୁ ଶିଖାଇ ଦେବ । ଏମିତି କାମ ଗୋଟିଏ ପାଖରୁ ଅନେକ ପାଖକୁ ଚାଲିଯାଇଥାଏ ।

କନକ ସଦାବେଳେ କାର୍ଯ୍ୟରତ । ଏତେ କାମ କଲେ ମଧ୍ୟ ସେ କ୍ଲାନ୍ତ ଅନୁଭବ କରୁନଥାଏ । ମୁହଁରେ ସଦା ହସ ଚହଟୁ ଥାଏ । ସଜଫୁଟା ଗୋଲାପ ଫୁଲ ପରି ସଦା ସତେଜ ଦେଖା ଯାଉଥାଏ ।

ଅତି ସରଳ ବେଶଭୂଷା । ନାଲି ଧଡ଼ର ଧଳା ଶାଢ଼ୀ ସହ ଶାଗୁଆ ରଙ୍ଗର ବ୍ଲାଉଜ ତାର ଗୋରା ଦେହକୁ ବଡ଼ ସୁନ୍ଦର ଦେଖା ଯାଉଥାଏ ଯେ ସୁନ୍ଦର ତାକୁ ସବୁ ସୁନ୍ଦର ଦେଖାଯାଏ । କୋମଳ ମଧୁର କଥା । ମନ ଜିଣି ନେଲାଭଳି ମଧୁର ସ୍ୱର । ସମସ୍ତଙ୍କର ସେ ଅତି ଆପଣାର କନକନାନୀ । ସମସ୍ତଙ୍କ ମୁହଁରେ ତାରି ପ୍ରଶଂସା ।

ହଁ ତ, ସେଦିନ ଗାଁର ଝିଅଟିଏ ରୋଗରେ ପଡ଼ି ଛଟପଟ ହେଉଥିଲା । ସେ ମରିବଞ୍ଚି ବଞ୍ଚିବ କେହି ଆଶା କରୁନଥିଲେ । ପନ୍ଦରଦିନ ହେଲା ରୋଗରେ ପଡ଼ି ବିଛଣାରୁ ଉଠି ନଥାଏ । ସମସ୍ତେ ହତାଶ ହୋଇ ପଡ଼ିଥାନ୍ତି ।

କନକ ଆସି ସବୁ ଦେଖିଲା । ଡାକ୍ତର ଆଣି ରୋଗ ନିର୍ଣ୍ଣୟ କରଗଲା । କନକ ଘରର ସମସ୍ତଙ୍କ ମନରେ ଦମ୍ଭ ଦେଲା । ଭରସା ଦେଲା । ତାରି ସେବାରେ ରାତି ତମାମ ଉଜାଗର ରହି ଘଣ୍ଟାକୁ ଘଣ୍ଟା ଔଷଧ ଦେଇ ସେବାକଲା ।

ସକାଳ ପାହିଲା ।

ଆଖିରେ ନିଦ ନାହିଁ । କୁଆ କାଁ କାଁ କଲା ।

ରୋଗୀଣୀ ଝିଅଟି ଆଖି ଖୋଲିଲା । ପାଟି ଶୋଷରେ ଶୁଖି ଶୁଖି ଯାଉଥାଏ । ଓଠରେ ଜିଭ ବୋଲିନେଉଥାଏ ।

ଚାରିଆଡ଼କୁ ଅନାଇଲା । ମିଞ୍ଜି ମିଞ୍ଜି ଆଲୁଅରେ ପାଖରେ ଏତେ ଲୋକଙ୍କୁ ଦେଖି ଚାରିଆଡ଼କୁ ଆଖି ବୁଲାଇ ନେଲା ।

ଘରେ ଆନନ୍ଦର ଲହରୀ ଖେଳିଗଲା ।

ଝିଅଟି ଧୀରେ ଧୀରେ ଆରୋଗ୍ୟ ଲାଭ କଲା ।

ନୂଆ ଜୀବନ ପାଇଲା ।

ଆଉ ଗାଁର ନୂଆ ବୋହୂଟି ପ୍ରସୂତି ବେଦନାରେ ଛଟପଟ ହେଉଥିଲା । ମରିଯିବ ବୋଲି ସମସ୍ତଙ୍କ ମନରେ ଧାରଣା ହୋଇଯାଇଥିଲା । ଗାଁରେ କେତେ ଗୁଣୀ, ଗରୁଡ଼ୀ ହେଲା କେତେ ମନ୍ତ୍ର ଫୁଙ୍କାଗଲା ମାତ୍ର ନୂଆ ବୋହୂଟିର ଚେତା ଫେରୁନଥାଏ । ଗାଁ ଠାକୁରାଣୀ ତା ଉପରେ ଆଖି ରଖିଛନ୍ତି । ତାକୁ ନ ନେଇ ଠାକୁରାଣୀ କେବେ ଛାଡ଼ିବେ ନାହିଁ ?

ପ୍ରଥମ ପ୍ରସ୍ତାବ ।

ଠାକୁରାଣୀଙ୍କ ରୋଗ ରାଗ କଲାନାହିଁ । ଫଳ ପାଇବ ନାହିଁତ ଆଉ ପାଇବ କିଏ ??

ମାତ୍ର କନକନାନୀ ସେମାନଙ୍କ ମନରୁ ଅନ୍ଧବିଶ୍ୱାସକୁ ଦୂରକଲା । ସେବା ଯତ୍ନ ବଳରେ ମଣିଷକୁ ମଧ୍ୟ ମରଣ ମୁହଁରୁ ଫେରାଇ ଆଣିହେବ ।

ତାରି ସେବାରେ ଅକ୍ଲାନ୍ତ ପରିଶ୍ରମରେ ସୁନ୍ଦର ଚୋଳ ଡାଳ, ଗୋଲ ଗୋଲ ହାତ ଗୋଡ଼ ଥିବା ଏକ କନକନଆ ଛୁଆ ଜନ୍ମ ହେଲା ।

ପ୍ରସୂତି ବେଦନାରେ ମାଁଟି ଚିତ୍କାର କରି ଅଚେତ୍ ହୋଇଗଲା । ଶରୀର ବିଦାରୀ ଛୁଆଟି ଜନ୍ମ ହୋଇ କୁଆଁ କୁଆଁ ରଡ଼ି ଛାଡ଼ିଲା ।

କିଛିକ୍ଷଣ ପରେ ମାଁର ଚେତା ଫେରିଆସିଲା । ପାଖରେ ତାର କନକନିଆ ଛୁଆ ଗଳାଧରି କୁଆଁ କୁଆଁ ରଡ଼ ଛାଡ଼ୁଛି । ମାତୃତ୍ୱର ଆତ୍ମତୃପ୍ତିରେ ମନ ତାର ପୁରିଉଠିଲା । ତାର ସ୍ତନଯୁଗଳରୁ ମାତୃତ୍ୱର ଅମୃତ ଧାର ବୋହିଆସିଲା । ଛୁଆ ଏବଂ ମାଁକୁ ସେ ମରଣ ମୁହଁରୁ ଟାଣିଆଣିଲା ।

ସେହି କନକନାନୀ ଆଜି ଗାଁଟି ସାରା ସମସ୍ତଙ୍କର ଆପଣାର । ସମସ୍ତଙ୍କ ଘରକୁ ଯାଉଛି । କାହାକୁ ମାଉସୀ, କାହାକୁ ଖୁଡ଼ୀ, କାହାକୁ ନାନୀ, କାହାକୁ ଭଉଣୀ ଡାକୁଛି । ହସ ଖୁସୀରେ କଥା ହେଉଛି । ସମସ୍ତେ ତାର ଆପଣାର ।

ଆଜି ଗାଁରେ ମା, ଭଉଣୀମାନଙ୍କ ଆନନ୍ଦ କହିଲେ ନସରେ । ସେମାନେ କେତେ କାମ ଶିଖିଲେଣି । ସିଲାଇ କାମ, ତକିଆ ରୁମାଲରେ ଫୁଲ ପକାଇବା, ସୁଇଟର ବୁଣିବା କ୍ରୁଶ କାମ କେତେ ଜାଣିଗଲେଣି ।

ନୂଆ ନୂଆ କାମ ଶିଖିବାକୁ ମନ ଛଟପଟ ହେଉଥାଏ । କନକନାନୀ ଆସିଗଲେ ସମସ୍ତେ ଘେରିଯାଇ ନୂଆ କାମ ଶିଖିବାପାଇଁ ଅଳି କରନ୍ତି । କନକ ମଧ୍ୟ ଆଗ୍ରହରେ ସେମାନଙ୍କୁ କାମ ବତାଇ ଦେଉଥାଏ । କିଏ ଭୁଲକଲେ ତାକୁ ଠିକ୍ ଭାବରେ କରିବାପାଇଁ ନିଜେକରି ବତାଇ ଦେଉଥାଏ ।

ଆଜି ପାମ୍ପଡ ତିଆରିକରି, ବଜାରରେ ବିକ୍ରିକରି ଅର୍ଥ ଉପାର୍ଜନ କରିବା ପାଇଁ ନୂଆ କାମଟିଏ ନେବାପାଇଁ ସ୍ଥିର ହୋଇଅଛି । ସେଥିପାଇଁ ସମସ୍ତଙ୍କ ଆଗ୍ରହ ବଢ଼ିଯାଇଛି ।

ପାମ୍ପଡସହ, ବଡ଼ି, ଆଚାର, ହଳଦୀଗୁଣ୍ଡ, ଲଙ୍କାଗୁଣ୍ଡ, ମସଲାଗୁଣ୍ଡ ତିଆରି ହୋଇ ପ୍ୟାକେଟ୍ କରାଯାଇ ବଜାରରେ ବିକ୍ରି ହେବ । ଯାହା ଲାଭ ହେବ, ପରିଶ୍ରମ ପାଇଁ ତାର ଲାଭାଂଶରୁ ମହିଳାମାନଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟି ଦିଆଯିବ । ତେଣୁ ସମସ୍ତେ ଆଗ୍ରହରେ, ଯେଉଁ ଖରବେଳଟାରେ ଶୋଇ ଶୋଇ ଦିନକାଟୁଥିଲେ, ଅଧିକ ଉପାର୍ଜନ କରି ପୁଅ,ଝିଅଙ୍କ ଭବିଷ୍ୟତକୁ ଖର୍ଚ୍ଚ କରିବେ ସେଥିରେ ସେମାନଙ୍କ ଆନନ୍ଦ କହିଲେ ନସରେ ।

ଗୁଣ୍ଡଦଳିବା, ଗୁଳାକରି ପାମ୍ପଡ ବେଲିବା, ଶୁଖାଇ ତାକୁ ସାଇତି ରଖିବା, ତାକୁ ଓଜନ କରିବା, ପ୍ୟାକେଟ୍ କରିବା ବଜାରକୁ ବିକ୍ରିପାଇଁ ପଠାଇ ହିସାବ ରଖିବା ପାଇଁ ମହିଳାମାନଙ୍କ ମଧ୍ୟରେ ଦାୟିତ୍ୱ କନକ ଗୋଟି ଗୋଟି ବତାଇ ଦେଉଥାଏ ।

ପରସ୍ପର ମଧ୍ୟରେ ହସ ଖୁସିରେ କାମ ଆଗେଇଚାଲୁଥାଏ । ସମସ୍ତେ ଏକାଠି ବସି ଭାଗ ବଣ୍ଟାହୋଇ କାମକରି ଯାଉଥାନ୍ତି ।

ଏଭଳି ଦିନକୁ ଦିନ ବଡ, ପାମ୍ପଡ ପ୍ରଭୃତି ତିଆରି ହୋଇ ବଜାରକୁ ବିକ୍ରୀ ହୋଇ- ଯାଉଥାଏ ।

ମହିଳାମାନେ ନିଜ ନିଜ ପାରିଶ୍ରମିକ ମଧ୍ୟ ପାଇପାଉଥାନ୍ତି । ମାସ ଶେଷରେ ଅଧିକ ଲଭାଂଶରୁ ମଧ୍ୟ ଲଭାଂଶ ପାଉଥାନ୍ତି ।

ଦିନକୁ ଦିନ ସଂସ୍ଥାର ଆୟ ବଢ଼ିବଢ଼ି ଚାଲିଥାଏ । ଏକ ସ୍ୱାବଲମ୍ବି ସଂସ୍ଥା ରୂପେ କାମ ଆଗେଇ ଚାଲିଥାଏ । ମହିଳାମାନଙ୍କ ଦ୍ୱାରା ଏହା ସ୍ୱତନ୍ତ୍ର ଭାବରେ ଏକ ସ୍ୱୟଂସଂସ୍ଥା ରୂପେ ଦିନକୁ ଦିନ ତାର ଖ୍ୟାତି ବଢ଼ି ଚାଲିଥାଏ । ବଜାରକୁ ଏହି ସଂସ୍ଥାର ବଡ, ପାମ୍ପଡ, ମସଲାଗୁଣ୍ଡ ଗଲେ ଅଳ୍ପ ସମୟ ମଧ୍ୟରେ ବିକ୍ରୀ ହୋଇଯାଉଥାଏ । ନୀତି ନିୟମକୁ କଡ଼ାକଡ଼ି ଭାବରେ ପାଳନ କରି ଗୁଣ ଓ ମାନକୁ ରକ୍ଷାକରି ପାମ୍ପଡ ଓ ଅନ୍ୟାନ୍ୟ ଜିନିଷ ତିଆରି ହେଉଥାଏ । ତେଣୁ ଦିନକୁ ଦିନ ତାର କାର୍ଯ୍ୟ ପରିସର ବଢ଼ିବଢ଼ି ଚାହିଦା ମଧ୍ୟ ବଜାରରେ ବଢ଼ିବଢ଼ି ଚାଲିଥାଏ । ସେହି ଅନୁପାତରେ ଲଭ ମଧ୍ୟ ବଢ଼ିବଢ଼ି ଚାଲିଥାଏ । ମହିଳାମାନଙ୍କ ମଧ୍ୟରେ ଆଗ୍ରହ ଉତ୍ସାହ ସେହି ପରିମାଣରେ ବଢ଼ିଚାଲିଥାଏ ।

ଗାଁ ତମାମ ଆଜି ଚହଲ ପଡ଼ଯାଇଛି ।

ଆଜି ପୌଷ ପୂର୍ଣ୍ଣମା ।

ଗାଁ ମଫସଲରେ ଏକ ବଡ ପର୍ବ । ଆନନ୍ଦ ମହୋତ୍ସବରେ ଦିନଟି ମୁଖରିତ ହୋଇ ଉଠିଥାଏ ।

ନୂଆଖାଇ ବା ନବାନ୍ନ ଭକ୍ଷଣ ଅନ୍ୟ ଏକ ପ୍ରଧାନ ପର୍ବ । ସେ ବହୁ ଦିନରୁ ସରିଯାଇଛି ।

ନୂଆଖାଇ ସେ ଆଣି ଦେଇଥାଏ । ଗ୍ରାମ୍ୟ ଜୀବନରେ ନୂତନତା ।

ନୂଆ ଜୀବନ, ମଧୁର ଜୀବନ ।

କୃଷୀ ଖରା ବର୍ଷାରେ ତା ଜମିରେ ଫସଲ ଫଳାଇଥାଏ । ଧାନ, ମୁଗ, ଆଖୁ ପ୍ରଥମକରି ଗାଁ ମଙ୍ଗଳାଙ୍କ ପାଖରେ ଶ୍ରଦ୍ଧାରେ ଭକ୍ତିରେ ପୂଜାବିଧି କରି, ଆରଧନା କରି ଇଷ୍ଟଦେବୀଙ୍କୁ ପ୍ରଥମ ନୈବଦ୍ୟ ଅର୍ପଣ କରିଥାଏ ।

ଦେବୀଙ୍କୁ ଅର୍ପଣ କରି, ତାଙ୍କୁ ସନ୍ତୁଷ୍ଟ କରି ତୃପ୍ତ ମନରେ ନୂଆ ଲୁଗା ପରିଧାନ କରି ନୂଆ ଧାନରେ ପ୍ରସ୍ତୁତ ହୋଇଥିବା ନୂଆ ପ୍ରସାଦ ପାଇ ସାରିଲା ପରେ ଇଷ୍ଟ ଦେବ ଦେବୀଙ୍କୁ ତାର ଭକ୍ତି ଅର୍ପଣ କରି, ବଡମାନଙ୍କୁ ତାର ଭକ୍ତି ଅର୍ପଣ କରି ଘରକୁ ଘର ବୁଲି ସମସ୍ତଙ୍କ ସହ ଭେଟ ହୋଇ ଯଥାମାନ୍ୟ ଅର୍ପଣ କରି ଦିନ ଅତିବାହିତ କରିଥାଏ । ଭବିଷ୍ୟତରେ ତାର ପରିବାର, ଗାଁର ମଙ୍ଗଳକାମନା କରି ଇଷ୍ଟ ଦେବୀଙ୍କ ଆଶୀର୍ବାଦ ପାଇବା ପାଇଁ ଘୁମୁର ନୃତ୍ୟ ବାଦ୍ୟରେ ଗା ଦାଣ୍ଡକୁ ପ୍ରକମ୍ପିତ କରି ଦେଇଥାଏ । ତାର ଆଗାମୀ ବର୍ଷ କ୍ଷେତରେ ପ୍ରଚୁର ଫସଲ ଉତ୍ପାଦନ ହେଉ, ତାର ଉତ୍ତରୋତ୍ତର ଉନ୍ନତି ହେଉ ।

ନୂଆଖାଇର ନୂଆ ଧାନର ସ୍ୱାଗତ ଏବଂ ଆରାଧନାର ପୂର୍ଣ୍ଣତା ଆଣି ଦେଇଥାଏ ପୌଷ ପୂର୍ଣ୍ଣମୀ ବା ପୁଷ୍‌ପୁନିରେ । ଆଜି ସେହି ପୌଷ ପୂର୍ଣ୍ଣମୀ ।

ପିଲାମାନଙ୍କ ଆନନ୍ଦ କୋଲାହଳରେ ଗାଁ ଦାଣ୍ଡ ଉଚ୍ଛୁଳି ପଡୁଥାଏ । କେତେ ପ୍ରକାର

ଖେଳ କୌତୁକରେ ପିଲାମାନେ ଗାଁ ଏ ମୁଣ୍ଡରୁ ସେ ମୁଣ୍ଡ ଆନନ୍ଦରେ ନାଚି ଯାଉଥାନ୍ତି । ଶୀତର ପ୍ରକୋପ ସେମାନଙ୍କୁ ଦେହକୁ ସ୍ପର୍ଶକରି ପାରୁନଥାଏ ।

ଶୀତ ସକାଳର କଅଁଳିଆ ସୂର୍ଯ୍ୟକିରଣ ବିଚ୍ଛୁରିଇ ହୋଇ ପଡ଼ୁଥାଏ । କେତେକ ସ୍ଥାନରେ ନିଆଁ ଘରିପଟେ ବୁଢ଼ା, ଛୁଆ ଘେରିରହି ଶୀତ ପ୍ରକୋପରୁ ନିଆଁ ପାଉଥାନ୍ତି । ହାଡ଼ଭଙ୍ଗା ଶୀତରେ ଦେହ ଥରି ଉଠୁଥାଏ ।

ପୁଷ୍‌ପୁନି ପଲ୍ଲି ଅଞ୍ଚଳର ଜୀବନତାର ପୂର୍ଣ୍ଣତା ଅଂଶ ବିଶେଷ । ଚାଷୀ ତା ବିଲର ସମସ୍ତ ଫସଲ ଆଦାୟ କରି ଘରକୁ ଆଣିସାରିଲା ପରେ ଆନନ୍ଦର ଏ ଏକ ମହୋତ୍ସବ ।

ଚାଷୀ ତାର ହାଡ଼ଭଙ୍ଗା ପରିଶ୍ରମ କରି ଚାଷ ଶସ୍ୟକ୍ଷେତକୁ ସବୁଜ ସୁଫଳ କରି ଧାନ ଅମଳ କରିଥାଏ ।

ଦୀର୍ଘ ପରିଶ୍ରମ କରି ଧାନ ଅମଳ ପରେ ଯେଉଁ ଆନନ୍ଦ ଦୀର୍ଘ ଦିନର ପରିଶ୍ରମ, ହାଡ଼ଭଙ୍ଗା ଖଟଣି ଏ ସମସ୍ତକୁ ଭୁଲିଯାଇ ଅମଳ ଧାନ ଘରକୁ ଆଣିଲାପରେ ମନରେ ତାର ଦେଖା ଦେଇଥାଏ ଅପାର ତୃପ୍ତି । ତେଣୁ ଦୀର୍ଘ ଖଟଣିକୁ ଆନନ୍ଦ ମଉଜମଜ୍‌ଲିସରେ ବିତାଇବାପାଇଁ ମନ ତାର ହୋଇଉଠେ ବ୍ୟାକୁଳ । ସେହି ବ୍ୟାକୁଳତାର ପ୍ରତୀକ ପୌଷ ପୂର୍ଣ୍ଣମୀ ।

ଏହାର ଅନ୍ୟ ଗାଉଁଲୀ ନାମ ଛେର୍ ଛେରା ।

ବଜା ବାଦ୍ୟର ଗୀତ ନୃତ୍ୟରେ ଗାଁ ଦାଣ୍ଡ ଏକ ଜୀବନ୍ତ ରୂପେ ଧାରଣ କରିଥାଏ ।

ଛୋଟ ଛୋଟ ଛୁଆମାନଙ୍କ କୋଳାହଳ ତରୁଣ ତରୁଣୀମାନଙ୍କ ନାଚ ଗୀତ ଗାଁ ଦାଣ୍ଡ ମୁଖରିତ ହୋଇ ଉଠୁଥାଏ । କେଉଁଠି ଦଳ ଦଳ ଝିଅମାନେ ମୁଣ୍ଡରେ ଜଡ଼ା ତେଲ ଲଗାଇ ସୁନ୍ଦର ଭାବରେ ମୁଣ୍ଡକୁ ଖୋସାରେ କୁରେଇ ଫୁଲର ଝୁମ୍ପା ଖୋସି ହସି ହସି ହାହିଟାପ-ଗରେ ଗାଁ ଦାଣ୍ଡକୁ ମୁଖରିତ କରି ଦେଉଥାନ୍ତି ।

ଗ୍ରାମ୍ୟ ଜୀବନ ଆଜି ଦିନକ ଏକ ନୂତନ ପରିବେଶରେ ଜୀବନ୍ତ ହୋଇଉଠେ । ମନରେ ସୃଷ୍ଟି କରେ ଅପୂର୍ବ ପୁଲକ । ଭାବବିହ୍ୱଳ ହୋଇଉଠେ ଯୁବକର ଚିତ୍ତ ।

ଆଗେ ମଦ ମାଂସରେ ସାରା ଦିନଟି ବିତାଇ ଦେଇ ଆତ୍ମବିଭୋର ହୋଇ ପଡ଼ୁଥିଲା । ମାତ୍ର ସମୟର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଲୋକଙ୍କ କାର୍ଯ୍ୟକ୍ରମ ଏବଂ ଚିନ୍ତାଧାରାର ମଧ୍ୟ ପରିବର୍ତ୍ତନ ଘଟିଛି । ସମୟର ମହାନ୍ ସ୍ରୋତରେ ଅତୀତ ଏବଂ ବର୍ତ୍ତମାନ ମଧ୍ୟରେ ଦେଖା ଦେଇଛି । ବିରାଟ ପରିବର୍ତ୍ତନ । ମାତାଲ ସୂଚକର ହା ହୋଲ୍ଲା, ପାଟିତୁଣ୍ଡ, ମାଡ଼୍‌ପିଟ୍ ମଧ୍ୟରେ ଆଜି ଦେଖା ଦେଇଛି ରୁଚିପୂର୍ଣ୍ଣ ସଂସ୍କୃତିକ କାର୍ଯ୍ୟକ୍ରମର ଚିନ୍ତାଧାରା । ବିଭିନ୍ନ ଖେଳ କୌତୁକରେ ପ୍ରତିଯୋଗୀତାରେ ଆଜି ଦିନଟି ହୋଇ ଉଠିଛି ମୁଖରିତ ।

ଗ୍ରାମର ଛୋଟ ଛୋଟ ବାଳକ ବାଳିକାମାନେ ଦଳ ଦଳ ହୋଇ ଖଣ୍ଡିଏ ଲେଖାଏଁ ଛୋଟ ବାଡ଼ ବା କାଠି ଧରି ଘର ଘର ବୁଲି ଛେର୍ ଛେରା ଗୀତଗାଇ ଚାଉଳ ଅର୍ଥ ସଂଗ୍ରହ କରି ଚାଲିଥାନ୍ତି । ଯାହା ଆଜି ସେମାନେ ସଂଗ୍ରହ କରନ୍ତି ସେଇଦିନ ରାତିରେ ବିନିଯୋଗ କରି ଆନନ୍ଦ ଉପଭୋଗ କରନ୍ତି ।

ସମାନ ତାଳରେ ଛୁଆମାନେ ସେମାନଙ୍କ କାଠିକୁ ତଳେ ବାଡେଇ ଠକ୍ ଠକ୍ ଶବ୍ଦକରି ଗୀତଗାଇ ବାଦ୍ୟର ତାଳେ ତାଳେ ନାଚି ଯାଉଥାନ୍ତି ।

ଛେର୍ ଛେର୍ ଛେରା
ଆଜି ପୁନି ପୁନି କାଲିକି ପୁନି
ଫଟା ଲୁଗା ତୁନା ତୁନି
ଛେର୍ ଛେର୍ ଛେରା ।

ଇଘର ବୁଢ଼ୀ ଲିଆ ଖାଇ ଖାଇ
ଛେଡେଇ ହେଲା
ଛେର୍ ଛେର୍ ଛେରା ।

ଉଣା ଭୁନ୍ ଭୁନ୍ କଲା ନା
ଦେବିନା ଦେବିନା ବଏଲାନା
ଛେର୍ ଛେର୍ ଛେରା ।

ପିଲମାନଙ୍କ ଗୀତର ମାଧୁର୍ଯ୍ୟ ଏବଂ ଘରଣୀଠୁ ଚାଉଳ ଗଣ୍ଡିଏ ପାଇବା ଆଗ୍ରହରେ ସେମାନଙ୍କ ମନକୁ ଉଲ୍ଲସିତ କରି ଦେଉଥାଏ ।

ସକାଳର କଅଁଳିଆ ସୂର୍ଯ୍ୟକିରଣ ତା ସହିତ ଶୀତର ପ୍ରକୋପ ସେମାନଙ୍କ ଆନନ୍ଦକୁ ଏବଂ ସେମାନଙ୍କ ନୃତ୍ୟର ଛାନ୍ଦର ତାଳକୁ ଆହୁରି ମୁଖରିତ କରି ଦେଉଥାଏ । ଘରମାନଙ୍କରେ ଘରଣୀମାନେ ପରିବାରବର୍ଗଙ୍କୁ ଆଉ ପିଠା ପଣାରେ ଖୁଆଇ ଆତ୍ମ ସନ୍ତୋଷ ଲାଭ କରିଥାଏ । ଏହାହିଁ ତା ମନରେ ଆଣି ଦେଇଥ ଏ ଅପୂରନ୍ତ ତୃପ୍ତି ।

କେଉଁଠି ଦଳ ଦଳ ହୋଇ ଯୁବକମାନେ ବସି ଖୁସୀ ଗପରେ ଲାଗିଯାଇଥାନ୍ତି ।

କେଉଁଠି ଝିଅମାନେ ବୋହୂଚୋରି ଖେଳରେ ମାତିଯାଇଥାନ୍ତି । କେଉଁଠି ଯୁବକମାନେ ଡୁ,ଡୁ ଖେଳରେ ମାତିଯାଇଥାନ୍ତି । ବୋହୂଚୋରୀ ଖେଳରେ ଝିଅ ଦୌଡ଼ ନପାରି ରାହା ଶେଷ ହୋଇଗଲେ ଚୋବହୂ ମୁଣ୍ଡରେ ହାତ ରଖି ଆତ୍ମ ସମର୍ପଣ କରି ଦେଇଥାଏ ।

କେଉଁଠି ଯୁବକର ଡୁ ଡୁ ଖେଳରେ କିଏ କାହାକୁ ତଳେପକାଇ ଗଡ଼ାଇ ଦେଉଥାଏ । କାହାର ଗୋଡ ଆଣ୍ଠୁ ଖଣ୍ଡିଆ ହୋଇ ରକ୍ତ ବାହାରି ଯାଉଥାଏ ।

ତଥାପି ତାକୁ ଭ୍ରୂକ୍ଷେପ ନକରି ସେ ଖେଳି ଯାଉଥାଏ ।

ପାଖରେ ଦର୍ଶକମାନଙ୍କ ଭିତରୁ ଜଣେ ପାଟିକରି ଉଠୁଥାଏ । ଆରେ ପିତବାସ ତୋ ଆଣ୍ଠୁ ଛିଣ୍ଡି ରକ୍ତ ବୋହୁଛି । ଆ ଚାଲିଆ । ରକ୍ତ ପୋଛିଦେଇ ଖେଳିବାକୁ ଯିବୁ ।

ଆରେ ତୋତେ କଣ ଶୁଭୁନାହିଁକି ? ସେ ଉଦ୍‌ବେଗ ହୋଇ କାତର ସ୍ୱରରେ ଡାକି ଚାଲିଥାଏ ।

ଖେଳ ଭିତରୁ ପିତବାସ ପାଟିକରି ଉଠୁଥାଏ । ଏ କିଛି ହୋଇ ନାହିଁ ମଉସା । ଆପେ ଆପେ ସେ ବନ୍ଦ ହୋଇଯିବ । ଖେଳରେ ସେ ମାତିଯାଇଥାଏ । ଖେଳ ଛାଡ଼ି ଆସିବାକୁ ସେ ନାରାଜ । ତାର ଜିଦ୍ ଆଜି ତାର ଦଳ ନିଶ୍ଚୟ ଜିତିବ । ସେହି ଜିଦ୍‌ରେ ଖଣ୍ଡିଆ ଖାବରା ହୋଇ ମଧ୍ୟ ତାକୁ ଭ୍ରୂକ୍ଷେପ ନକରି ସେ ଖେଳିଚାଲିଛି ।

ତପନ, ମଧୁ, ନବହାରିକା ଗାଁ ଦାଣ୍ଡରେ ବୁଲି ବୁଲି ଛେର୍, ଛେରା ନାଚ ଗୀତ ବୋହୂଚୋରୀ, ଡୁଡୁ ଖେଳ ଦେଖି ଆନନ୍ଦ ଉପଭୋଗ କରୁଥାନ୍ତି ।

ଅଳ୍ପ ଦୂରରେ ଦଳେ ଯୁବକ ହା ହୋଲ୍ଲା କରି, ପାଟିତୁଣ୍ଡରେ ଗାଁ ଦାଣ୍ଡ କମ୍ପେଇ ଦେଉଥାନ୍ତି ।

ବାଡଟଣାରେ ଶାରିରୀକ ବଳ କାହାର ବେଶୀ ପରୀକ୍ଷା ଚାଲିଥାଏ । କପିଳ ଗୋଟି ଗୋଟି ସମସ୍ତଙ୍କୁ ପରାସ୍ତ କରି ଛାତିଫୁଲାଇ ଛିଡ଼ା ହୋଇଥାଏ । ସେ ଆହ୍ୱାନ କରୁଥାଏ । ଆଉ କିଏ ଅଛି ତାକୁ ପରାସ୍ତ କରିବ ?

ଏତେବେଳେ ତପନ ହାରିକା ସେଠି ଆସି ପହଞ୍ଚିଗଲେ । କପିଳ ଏକ ହୃଷ୍ଟପୁଷ୍ଟ ଯୁବକ ସମସ୍ତଙ୍କୁ ପରାସ୍ତ କରି ବୀରଦର୍ପରେ ନିଶ ମୋଡ ଛିଡା ହୋଇଥାଏ ।

ତପନ ତା ପାଖକୁ ଚାଲିଆସି ତାର ବୀରତ୍ୱପାଇଁ ତାକୁ ପ୍ରଶଂସା କଲା ।

ମଧୁ ତପନକୁ ଦେଖି କହିଲା, ଭାଇ ତୁମର ଆଜି କପିଳଭାଇ ସହ ବାଡଟଣା ହୋଇଯାଉ ।।

ସମସ୍ତେ ମଧୁ କଥାକୁ ସମର୍ଥନ ଜଣାଇ ପାଟିକରି ଉଠିଲେ । ତପନ ନିଜ ଲୁଗାକୁ ଭିଡ ତଳରେ ବସିପଡଲା ।

ଗୋଡ଼ଲମ୍ବାଇ ଦୁହେଁ ଗୋଲ୍‌ବାଡ଼କୁ ଧରିଲେ । ତପନ ଦୁଇହାତରେ ମଝିରେ ଧରିଲା । କପିଳ ବାଡର ତାର ଦୁଇପାର୍ଶ୍ୱରେ ଧରିଲା । ଦୁହେଁ ଦୁହିଁକୁ ଟାଣି ବସିବା ସ୍ଥାନରୁ ଉଠାଇ ଦେବାପାଇଁ ଚେଷ୍ଟା କରୁଥାନ୍ତି । କିଏ କାହାକୁ ଟାଣି ପାରୁନଥାନ୍ତି । ଅକସ୍ମାତ କପିଳର ଲମ୍ବହୋଇ ବସିଥିବା ଗୋଡର ଆଣ୍ଠୁ ବଙ୍କେଇ ଗଲା । ଏହି ସୁଯୋଗରେ

ତପନ, ନିଜ ଶରୀର ସମସ୍ତ ବଳପ୍ରୟୋଗ କରି କପିଳକୁ ଟାଣି ବସିବା ସ୍ଥାନରୁ ଛିଡା କରି-ଦେଲା । ସମସ୍ତେ ଆଶ୍ଚର୍ଯ୍ୟହୋଇ ତପନର ଜୟ ଜୟ ନାଦରେ ଗାଁଟିକୁ କମ୍ପେଇ ଦେଲେ ।

ଏ ଦୃଶ୍ୟ ଦେଖିବାପାଇଁ ଗାଁର ବୁଢ଼ାବୁଢ଼ୀ ସମସ୍ତେ ରୁଣ୍ଡହୋଇ ଯାଇଥାନ୍ତି । ତପନର ଶାରିରୀକବଳ କେତେ ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥାନ୍ତି କପିଳ ତପନକୁ କୁଣ୍ଢାଇ ତାକୁ ପରାସ୍ତ କରିଦେଇଥିବା ଜାଣି ପୁଲକରେ ସେ ଅଭିଭୂତ ହୋଇ ପଡଥାଏ । ତା ନିଜ ବଳଠୁ ଆଉ ଜଣକର ବଳ ଅଧିକ ଆଜି ସେ ସ୍ପଷ୍ଟ ଉପଲବ୍ଧି କରିପାରୁଥାଏ । ତା ମନର ଗର୍ବ ଚୂରମାର ହୋଇଯାଇଥାଏ । ମଧୁ, ନବ ତପନକୁ ଅଭିନନ୍ଦନ ଜଣାଉଥାନ୍ତି । ଘନଅଜା ପାଖରେ ଛିଡା ହୋଇ ଆନନ୍ଦରେ ଆତ୍ମହରା ହୋଇଯାଇଥାନ୍ତି ।

କନକ ଗାଁ ମହିଳାମାନଙ୍କ ଗହଣରେ ବସି ଏ ଦୃଶ୍ୟ ଉପଭୋଗ କରୁଥାଏ । ସେ ଭଲକରି ଜାଣେ ତପନଭାଇ ଜଣେ ଶ୍ରେଷ୍ଠ ଖେଳୁଆଡ । ତାଙ୍କୁ ସହଜରେ କିଏ ପରାସ୍ତ କରିଦେବ ଏ ବିଶ୍ୱାସ ତାର ନଥାଏ ।

କୃଷିପ୍ରଧାନ ଭାରତ ବର୍ଷରେ ପଲ୍ଲି ହିଁ ସଂପଦ ।

ତାହାହିଁ ତାର ଜୀବନ, ତାହାହିଁ ତାର ପ୍ରାଣ । ପଲ୍ଲି ହିଁ ପ୍ରତ୍ୟେକଙ୍କ ଅସ୍ଥିମଜ୍ଜାଗତ ପ୍ରାଣ । ପ୍ରତ୍ୟେକ ଭାରତୀୟଙ୍କ ଧମନୀରେ ପଲ୍ଲି ରକ୍ତ ପ୍ରବାହିତ । ପଲ୍ଲୀର ସରଳତା, ପଲ୍ଲିର ପ୍ରାଣ ଖୋଲାହସ ତାଠି ଭରି ରହିଛି ।

ସହରର ଚାକଚକ୍ୟରେ ସେ କେତେବେଳେ ଆକୃଷ୍ଟ ହୋଇ ବିଭ୍ରାନ୍ତ ହୋଇ ପଡୁଛି'ତ କେତେବେଳେ ସେ ପ୍ରାଧାନ୍ୟ ବିସ୍ତାର କରି ତାର ସ୍ୱରୂପକୁ ବଦଳାଇ ଦେବାପାଇଁ ଉଦ୍ୟମ କରିଛି । ସହରିଆ ବାବୁମାନଙ୍କ ଲାଲ ଆଖିରେ କେତେବେଳେ ଭୟଭୀତ ହୋଇ ପଡ଼ୁଛି'ତ କେତେବେଳେ ତାରି ଶୋଷଣରେ ସେ ତଳି ତଳାନ୍ତ ହୋଇଯାଇଛି । ତଥାପି ସେ ବଞ୍ଚିବାକୁ ତାର ଜୀବନ ମରଣ ସଂଗ୍ରାମ କରିଚାଲିଛି । ପଲ୍ଲୀର ଯେଉଁ ସରଳ ପରିଶ୍ରମୀ କୃଷକ ଏଭଳି ବାବୁଙ୍କ ପେଟରେ ଅନ୍ନ ଯୋଗାଇ ଦେଇପାରୁଛି, ପିନ୍ଧିବାକୁ ବସ୍ତ୍ର ଯୋଗାଇ ଦେଇପାରୁଛି, ସେମାନଙ୍କ ଭୋଗ ବିଳାସ ପାଇଁ ତାର ଶ୍ରମ ଆକୁଣ୍ଠିତ ଚିତ୍ତରେ ଯୋଗାଇ ଦେଉଛି, ସେହି କୃଷକ ଆଜି ଅର୍ଦ୍ଧଭୁକ୍ତ । ସେ ଅର୍ଦ୍ଧଉଲଗ୍ନ । ସେ ଆଜି ନିରସ୍ୱ, ନିରକ୍ଷର । ଏହାଠୁ ବଳି ଦୁର୍ଭାଗ୍ୟ ଆଉ କଣ ହୋଇପାରେ !!

ସେ ଆଜି ନିରୁପାୟ । ପଥ ଦେଖି ମଧ୍ୟ ଠିକ୍ ବାଟରେ ଚାଲିପାରୁନାହିଁ । ତାକୁ ବାଟକୁ ଆଣିବାକୁ ପଡ଼ିବ । ସେମାନଙ୍କୁ ଏଭଳି ଅବସ୍ଥାରେ ଛାଡ଼ିଦେଇ ଯାଇହେବ ନାହିଁ । କେତେଦିନ ଆଉ ସେମାନଙ୍କୁ ଏଭଳି ଅବସ୍ଥାରେ ପକାଇ ରଖାଯାଇ ପାରିବ ?

ସେମାନଙ୍କୁ ବାଟ ବତାଇ ଠିକ୍ ବାଟକୁ ଆଣିବାକୁ ପଡ଼ିବ ।

କୃଷକର ଉନ୍ନତିବିନା ଦେଶର ପ୍ରଗତୀ ଅସମ୍ଭବ ?

କଳକାରଖାନା ଅନେକ ପ୍ରତିଷ୍ଠିତ ହେଲେ ମଧ୍ୟ ଦେଶର ଅଶିକ୍ଷିତ ଲୋକଙ୍କ ଉନ୍ନତିବିନା ଦେଶ ଆଗେଇଛି ବୋଲି କିଭଳି କହିପାରିବା ?

ପଲ୍ଲୀର ସର୍ବୋତକୃଷ୍ଟ ସମ୍ପଦ ଗୋ ସମ୍ପଦ । ତାହା ମଧ୍ୟ ଦିନକୁ ଦିନ କମି ଆସିଲାଣି ।

ଶର୍ଦ୍ଦି, ଥଣ୍ଡା ପରେ ପରେ ଗାଁ ଗହଳିରେ ମ୍ୟାଲେରିଆ ବ୍ୟାପିଯାଇଛି । ଚିକିତ୍ସା

ଅଭାବରେ ଗାଁ ଗଣ୍ଡାରେ ବହୁ ଶିଶୁ ମୃତ୍ୟୁ ଶଯ୍ୟାରେ, ପାଖଆଖ ଗାଁମାନଙ୍କରେ ଡାକ୍ତରଟିଏ ଚିକିତ୍ସା ମଧ୍ୟ ଦେଖିବାକୁ ମିଳୁନାହିଁ । ଲୋକେ ରୋଗରେ ଶହ ଶହ ମରିଯାନ୍ତି । ଔଷଧ ଟିକିଏ ମଧ୍ୟ ମିଳିପାରେ ନାହିଁ ଡିସ୍‌ପେନସାରିଟିଏ ମଧ୍ୟ ଏ ପାଖ ଆଖରେ ନାହିଁ ।

କନକ ବଡ ସକାଳୁ ଘରକୁ ଘର ବୁଲି ରୋଗୀ ସେବା କରିଚାଲିଛି । କେଉଁଠି ମା'ମାନଙ୍କୁ ଫୁଟାପାଣି ପିଇବା ପାଇଁ କହିଯାଉଛିତ, କେଉଁଠି ଔଷଧ ବଟିକା ଦେଇ ଔଷଧର ନିଦାନ ବତାଇ ଦେଇଯାଉଛି । ଜ୍ୱରର ପ୍ରକୋପରେ କେଉଁଠି ଛୋଟ ଶିଶୁଟି ବିକଳ ଚିତ୍କାର କରୁଛି । ପାଖରେ ମା ଥିଲେ ମଧ୍ୟ ତାକୁ ଧରି ଆଶ୍ୱାସନା ମଧ୍ୟ ଦେବାକୁ ଚେଷ୍ଟା କରୁନାହିଁ । ଏଇତ ତାର ନିତିଦିନିଆ କ୍ରନ୍ଦନ । ଏଭଳି କାନ୍ଦ ଶୁଣି ଶୁଣି ସେ ବଧିର ହୋଇଯାଇଛି ।

କା ଘରେ, ଛିଣ୍ଡାକନାରେ ଛୁଆଟି ଶୋଇ ରହିଛି । ବହୁଦିନ ରୋଗରେପଡ଼ି ଛାତିର ପିଞ୍ଜରହାଡ ବାରି ହେଉଥାଏ । ମୁହଁ ପାଣ୍ଡୁରବର୍ଣ୍ଣ ଦେଖା ଯାଉଥାଏ । ତିନି, ଚାରିବର୍ଷର ଶିଶୁ । ତାର ଏ ଅବସ୍ଥାରେ ଦେଖିଲେ ବର୍ଷଟିଏ ଶିଶୁଭଳି ମନେ ହେଉଥାଏ । ଆଖିରେ ଲେଞ୍ଜରା ଭରିରହିଥାଏ । ନାକର ଶିଙ୍ଘାଣି ଗାଲରେଲାଗି ଶୁଖିଯାଇ ଧଳା ଦିଶୁଥାଏ । ମୁହଁଟି ବିବର୍ଣ୍ଣ ଦେଖା ଯାଉଥାଏ । ମାଛି ଭଣଭଣ କରି ତାର ମୁହଁ ଆଖିରେ ବସିପଡୁଥାନ୍ତି । ଏଭଳି ଅବସ୍ଥାରେ ରୋଗ ବଢ଼ିବସିନା କମିବାର କୌଣସି ସୂଚନା ଦେଖା ଯାଉନଥାଏ । ସେ ନିସ୍ତେଜ ହୋଇ ଅର୍ଦ୍ଧମୃତ ପ୍ରାୟ ଛିଣ୍ଡାକନାରେ ପଡ଼ି ରହିଥାଏ । ସତେ ଯେପରି ମାଟିରେ ମିଶିଗଲା ଭଳି ମନେ ହେଉଥାଏ ।

ତାର ଏଭଳି ଅବସ୍ଥାରେ କନକ ତାକୁ କିଛି ସମୟ ଅନାଇ ରହିଲା ।

ପାଖରେ ଥିବା ମାଠିଆରୁ ପାଣି ଆଣି, ମୁଣାରୁ ଏକ ସଫାକନା ବାହାର କରି ମୁହଁକୁ ଏବଂ ଆଖିର ଲେଞ୍ଜରାକୁ ସାଫ୍ କରିଦେଲା । ଥର୍ମାମିଟର ସାହାଯ୍ୟରେ ଦେହର ଉତ୍ତାପ ମାପିଲା । ଜ୍ୱର ସେତେ ନଥାଏ ।

କ୍ଷୀରଟିଏ ପିଇବାକୁ ମିଳୁନାହିଁ । କ୍ଷୀର ଅଭାବରେ ଶିଶୁଟି ବଞ୍ଚିବକି ମରିବ କହି ହେଉନାହିଁ । ପେଟପୂରା ଦୁଇଓଳି ଖାଇବାକୁ ମଧ୍ୟ ମିଳୁନାହିଁ ।

ସେବା ଶୁଶ୍ରୂଷା ମଧ୍ୟ କିଛିନାହିଁ । ଏଭଳି ଅବସ୍ଥାରେ ବଞ୍ଚିବ ବୋଲି କହିହେଉନାହିଁ ।

ମଳିନ ମୁହଁରେ ସାତଛିଣ୍ଡା ଲୁଗାଟିଏ ପିନ୍ଧି ତାର ମା ପାଖରେ ଆସି ଛିଡା ହେଲା । ଆଖି ତାର ଛଳ ଛଳ ହୋଇଗଲା ।

କନକ ତାକୁ ସାନ୍ତ୍ୱନା ଦେଲା । ମୁହଁ, ଦେହକୁ ପରିଷ୍କାର କରି ରଖିବ ସଫା ଲୁଗାରେ ଶୁଆଇବ ବୋଲି ପରାମର୍ଶ ଦେଲା ।

ଭୟ କରିବ ନାହିଁ ବୋଲି ତାକୁ ପ୍ରବୋଧନ ଦେଲା ।

ତାରି ମା ମୁହଁରେ ଭୟର ଚିହ୍ନ ସ୍ପଷ୍ଟ ଜଣାପଡ଼ୁଯାଉଥାଏ । ଅଜଣା ଆଶଙ୍କାରେ ତାର ମାର ମନ ଭୟାତୁର ଦେଖାଯାଉଥାଏ ।

ତାକୁ କୋମଳ କଣ୍ଠରେ କନକ କହିଲା ।

ଶିଘ୍ର ଭଲ ହୋଇଯିବ । ଭୟକରିବାର କିଛି ନାହିଁ ।

ଧୀରେ ଧୀରେ ଭଲ ହୋଇଆସୁଛି । ଆଜି ଜ୍ୱର ନାହିଁ ।

ଔଷଧ ଦେଇ ଯାଉଛି । ଏଇ ରଖ ଦୁଇଟଙ୍କା । ତା'ପାଇଁ କ୍ଷୀର ଆଣି ପିଇବାକୁ ଦେବ । ଅସୁବିଧା ହେଲେ ମୋତେ ଖବର ଦେବ । ଏତକ କହି ସେ ଉଠିପଡ଼ିଲା ।

ତାର ମା'ତାର ଯିବାପଥକୁ ସତୃଷ୍ଣନୟନରେ ଅନାଇ ରହିଥାଏ ।

କନକ ଯାଇ ବୀନାଘର ପାଖରେ ପହଞ୍ଚିଲା ।

ଝାଟିମାଟିଘର । କାନ୍ଥରୁ ଅନେକ ସ୍ଥାନରୁ ମାଟିଖସି ଖଣ୍ଡିଆଖାବର ଦିଶୁଛି । ଛାଳର ନଡା କେତେ ଜାଗାରୁ ପବନରେ ଉଡ଼ି ଠା ମେଲା ଦିଶୁଛି । ଦିନବେଳେ ସୂର୍ଯ୍ୟକିରଣ ଘର ଭିତରେ ପଡୁଛି । ରାତ୍ରରେ ଆକାଶ ତାରା ଖଟରେ ଶୋଇ ଗୋଟି ଗୋଟି ଗଣିହୋଇ ଯାଉଥାଏ ।

ରୋଷେଇଘର । ଗୋଟିଏ କଡ଼କୁ ମାଟିଚୁଲି ତା ଉପରେ ମାଟିହାଣ୍ଡି, ନିଆଁଧାସରେ କଳା ପଡ଼ଯାଇଥାଏ । କାନ୍ଥର ଗୋଟିଏ ପଟକୁ ବାଉଁଶ କଣ୍ଟାରେ ଟଙ୍ଗାଯାଇଛି କୁଲାଟିଏ । ମଇଳା ହୋଇ ଅସନା ଦିଶୁଥାଏ । ତା ପାଖକୁ ଅଛି ଛୋଟ ଟୋକେଇ । ଚାଉଳ ବାଛିବା-ପାଇଁ । ଛାଳରେ ଝୁଲୁଛି ପୁରୁଣା ଶିକାଟିଏ । ଘରର ସର୍ବାଙ୍ଗ ରୋଷେଇଧୂଆଁରେ କଳା ପଡ଼ଯାଇଛି । ଘର ତମାମ ମେଞ୍ଚା ମେଞ୍ଚା ଅଳନ୍ଧୁ ଲାଗିଛି । ମନେ ହେଉଛି ସତେ ଯେପରି ମାସ ମାସ ଧରି ଘରଅଳନ୍ଧୁ ସାଫ କରାଯାଇପାରିନାହିଁ ।

ପାଖ ଘରର କବାଟ ନାହିଁ । ପୁରୁଣା ଅଖାକୁ ଯୋଡ଼ି ଦୁଆର ମୁହଁରେ ଝୁଲାଇ ଦିଆ-ଯାଇଛି । ବାହାର ଲୋକଙ୍କ ଘରଭିତରକୁ ହଠାତ୍ ଦୃଷ୍ଟି ପଡ଼ିବ ନାହିଁ ବୋଲି ।

ଦୁଆରେ ପଡ଼ିଛି ରସଗିନା, ଥାଳି, ତାଟିଆ । ପଖାଳ ଖାଇ କେତେବେଳୁ ପଡ଼ିଛି । ତା ଉପରେ ମାଛି ବସି ଭଣ ଭଣ କରୁଛି । ପାଖରେ ପାଣିମାଠିଆ, ପାଣି ଢାଳି ଢାଳି ମାଟି କାଦୁଅ ହୋଇ ପଚିଯାଇଛି । ଦୁର୍ଗନ୍ଧରେ ନାକ ଫାଟିପଡୁଛି । ପାଣିମାଠିଆ ଭିତରେ ହାତ ପୁରାଇ ପିଲଟିଏ ପାଣି ଆଣି ମୁହଁ ଧୋଉଛି । ଦୁର୍ବଳ ଦେହ, ଛାତିର ପିଞ୍ଜରା ଗଣି ହୋଇଯାଉଥାଏ । ହାତ ଗୋଡ଼ର ଶିରା ବାରି ହୋଇଯାଉଥାଏ । ଛଅ,ସାତ ବର୍ଷର ବାଳକ, ପ୍ୟାଣ୍ଟଟିଏ ପିନ୍ଧିଛି । ପେଣ୍ଟର ବୋତାମ ସବୁ ଛିଣ୍ଡି ଯାଇଛି । ବୋତାମ ସିଲେଇ

ହୋଇପାରି ନାହିଁ । ତଥାପି ତାକୁ ସେ ପିନ୍ଧିଛି । ହାତରେ ପେଣ୍ଟର ଗୋଟିଏ ପାଖକୁ ଧରି ବୋତାମର କାମ ଚଳାଇ ନେଉଛି । କେତେବେଳେ ହାତରୁ ପେଣ୍ଟ ଖସିପଡ଼ଲେ ଫୁଗଲଙ୍ଗଳା ହୋଇଯାଉଥାଏ । ତର ତର ହୋଇ ପୁଣି ପେଣ୍ଟକୁ ଟେକି ଧରୁଥାଏ ।

ପାଖ ପଢ଼ଶାଘରର ଜଣେ ସ୍ତ୍ରୀଲୋକ ମୁହଁ ଶୁଖେଇ ବସି ରହିଛି । ସତେ ସେ କାଲି କିଛି ଖାଇନାହିଁ । କାମ ନ ମିଳିଲେ ଘେଙ୍କରେ ରହିବାକୁ ପଡ଼ୁଛି । ତୋଗଣି, ପେଟ ଯାହାଥାଏ ସେତକ ଚଳିଯାଏ । କାଲିକି କଣ ଖାଇବ ସେତକ ଚିନ୍ତା ମଧ୍ୟ ରହୁନାହିଁ । ଚାଉଳ, ତେଲ, ଲୁଣ, କେଉଁଠୁ ମିଳିବ ସେଥିପାଇଁ ନିଘା ନାହିଁ ପିନ୍ଧିଛି ଚିର ଶସ୍ତାଶାଢ଼ୀ ଖଣ୍ଡିଏ । ଅଣ୍ଟାରେ ସାୟା ନାହିଁ । କିମ୍ୱା ଦେହରେ ବ୍ଲାଉଜ ନାହିଁ । ନାକରେ କାନରେ କେଉଁଠି ଗହଣା ନାହିଁ । ନାକ, କାନର କଣା ବନ୍ଦ ହୋଇଯିବ, ସେଥିପାଇଁ କଣାରେ କାଠି ଗେଞ୍ଜା ଯାଇଛି ବେକରେ ପଞ୍ଚଁକାମାଳି ସୁତାରେ ଗୁନ୍ଥା ହୋଇ ପିନ୍ଧିଛି ।

କନକ ଏସବୁ ଗୋଟି ଗୋଟି ଦେଖି ନେଉଛି ! ଏଇମାନଙ୍କ ସେବା କରିବା ପାଇଁ ସେ ଅଣ୍ଟାଭିଡ ବାହାରି ପଡ଼ିଛି ।

ସେମାନଙ୍କ ମୁହଁରେ ହସ ଫୁଟାଇବା ପାଇଁ ଚେଷ୍ଟା କରୁଛି । ମାତ୍ର ପେଟର ଜ୍ୱାଳାରେ ହସ ଟିକକ ମୁହଁରୁ ଲିଭିଯାଇଛି ।

ବୀନା ଯୁବା ସ୍ତ୍ରୀଟିଏ ରୋଗରେ ଶଢ଼ ଶଢ଼ ତାର ଗୋରା ମୁହଁଟି ରକ୍ତହୀନ ହୋଇ ଯାଇଛି । ସତେ ଯେପରି ସେ ସେତା ପଡ଼ିଗଲାଣି । ସତେଇଶି, ଅଠେଇଶି ବୟସର ଯୁବା ସ୍ତ୍ରୀଟି ବୁଢ଼ୀ ମାଇପି ଭଳି ଦେଖାଗଲାଣି ଗାଲଦୁଇଟି ପଶିଯାଇଛି । ଆଖିସବୁ କୋଟରଗତ । ପାଖରେ ତାର ଛଅ ବର୍ଷର ଝୁଅ ଧୂଳିରେ ଗଡ଼ୁଛି । ସେଥିପ୍ରତି ତାର ନିଘା ନାହିଁ ।

କନକ ସେରମଣୀ ପାଖକୁ ଆସି ତାକୁ ଭଲକରି ଦେଖିନେଇ, ତା'ମନରେ ଶାନ୍ତ୍ୱନା ଦେବାପାଇଁ କହିଲା । ତୁମକୁ ମୁଁ ଯେଉଁ ଔଷଧ ଦେଇଯାଇଥିଲି, ତା ତୁମେ ଖାଉଛ ନା ନାହିଁ ?

କନକର କଥା ଶୁଣି ବୀନା ଚିଡ଼ ଚିଡ଼ ହୋଇ କହିଲା । କି ଔଷଧ ? ସେଥିରୁ କ'ଣ ମିଳିବ ? ଯେତେ ଖାଇଲେ ମଧ୍ୟ, ଏ ନିଆଁଲଗା ରୋଗ କମିବାକୁ ନାହିଁ । କ'ଣ ମିଳିବ ସେ ଔଷଧରେ !! ଏମିତି କେତେଦିନ ରୋଗରେ ପଡ଼ିଲେ ଆପେ ଆପେ ଛାଡ଼ିଯିବ !!

କନକ ତା କଥା ଶୁଣି ବିସ୍ମିତ ହୋଇଗଲା ।

ତାକୁ ବୁଝାଇ କହିଲା । ଏମିତି ହେଲେ ଚଳିବ ?

ଔଷଧ ନ ଖାଇଲେ ରୋଗ କେମିତି ଛାଡ଼ିବ ?

ଆକାଶକୁ ହାତ ଦେଖା'ଇ ରୀନା କହିଲା ।

ଭଗବାନ ଅଛନ୍ତି ! ସେହି ସାହା ଭରସା ।

ମଣିଷ ଯେତେବେଳେ ନିଜ ଉପରେ, ନିଜ କାର୍ଯ୍ୟ ଉପରେ ବିଶ୍ୱାସ ତୁଟିଯାଏ, ସେତେବେଳେ ସେ ଦୈବ ଉପରେ ଭରସା କରେ ।

ମଣିଷ ଆଜି ଯେଭଳି ଅତ୍ୟାଚରିତ, ପିଡୀତ, ଅସହାୟ ଅବସ୍ଥାରେ ଅଛି, ସମସ୍ତେ ମାନବିକ ଅଧିକାରରୁ ବଞ୍ଚିତ । ସେତେବେଳେ ସେମାନଙ୍କ ହିତାହିତ ଜ୍ଞାନ ଆଉ ରହେନାହିଁ । ସେ ରକ୍ଷ ହୋଇଉଠେ । ମନ ଚିଡ୍ ଚିଡ୍ ହୋଇଯାଏ ଭଲକଥା ତାକୁ ଖରାପ ଲଣାପଡେ ।

ଏତିକିବେଳେ ମାତାଲ ଅବସ୍ଥାରେ ତାଙ୍କ ସ୍ୱାମୀ ଦିବାକର ବାହାରୁ ପାଟି କରି କରି ଆସିଲା ।

ଆଲେ ଝଣ୍ଟି ପଖାଳ ରନ୍ଧିଛୁ ନା ନାହିଁ ।

ପଖାଳସହ ଶୁଖୁଆଭଜା, ଖାଇବାକୁ ଲାଗେ ବଡମଜା । ଗୀତର ସ୍ୱର ଛୁଟିଛି ।

ହଲି ହଲି ଝୁଲି ଝୁଲି ଆସି ଦ୍ୱାର ମୁହଁରେ ଛିଡ଼ା ହେଲା । ଆଖି ମଳି ମଳି ତରଟି ଅନାଇଲା ।

ପାଖରେ ବସି ତାର ସ୍ତ୍ରୀ, ଟୁଆକୁ ଆଉଜଣେ କିଏ ସେବା କରୁଛି । ଔଷଧ ଖାଇବାକୁ ଦେଉଛି ।

ସେ ଭୁଲରେ ଆଉ କା ଘରକୁ ପଶିଆସିଛି କି ?

ସେ ଚରିଆଡ଼କୁ ଥରେ ଅନାଇ ଦେଲା ।

ଆରେ ଏଇଟା ମୋ ଘର ତ ?

ନିଶା ବାଉଳାରେ ସେ କିଛି ବୁଝିପାରିଲା ନାହିଁ ।

ପାଖକୁ ଚାଲିଆସିଲା । ତାର ସ୍ତ୍ରୀ, ଟୁଆକୁ ଦେଖିଲା ।

ହାତରେ ଖାଲି ବୋତଲଟିଏ ଧରି ପାଟିକଲା ।

ତୁ କିଏବେ, ମୋ ଘର ଭିତରକୁ ଆସିବାକୁ ?

ପଲା ଏଠୁ ।

କନକ ତାର ଏ ମାତାଲ ଅବସ୍ଥା ଦେଖି ଶଙ୍କିଗଲା ।

ଆଖି ଦୁଇଟି ନାଲି ହୋଇ ଜାମୁକୋଳି ଭଳି ଫୁଲିଉଠିଛି ।

ଦେଖି ଶସ୍ତା ମଦର ଗନ୍ଧରେ ଦ୍ୱାର ସାରା ବିଚ୍ଛେଇ ହୋଇ ଯାଇଥାଏ ।

କନକକୁ ବାନ୍ତି ବାନ୍ତି ମାଡ଼ ଆସିଲା । ଏତେ ପାଖରୁ କୌଣସି ମାତାଳକୁ କେବେ ସେ ଭେଟି ନଥିଲା ।

ତା ମନରେ ଅଜଣା ଭୟ ଜାତ ହେଲା ।

ମାତାଳ, ନିଶାଖୋରକୁ କ'ଣ ବିଶ୍ୱାସ ?

ମଦର ଉତ୍କଟ ଗନ୍ଧ ତା ପକ୍ଷରେ ସହ୍ୟ କରିବା ସମ୍ଭବପର ହେଲାନାହିଁ ।

ଲୁଗାକାନିକୁ ଟାଣି ତା ମୁହଁରେ ଦେଇ ଗନ୍ଧରୁ ନିଜକୁ ବଞ୍ଚାଇବାକୁ ଚେଷ୍ଟା କଲା ।

ତଥାପି ମନରେ ସାହାସ ରଖି କହିଲା ।

ଭାଇ, ତୁମ ସ୍ତ୍ରୀ,ଛୁଆ ବେମାର ।

ଏଣେ ତୁମେ ମାତାଳ ......

କ'ଣ କହିଲୁ ...

ମୁଁ ମାତାଳ, ମୁଁ ମଦ ଖାଇଛି......

କିଏ ବେ ତୁ, ମୋତେ କହିବାକୁ ?

ମାତାଳ ଦିବାକର ରାଗରେ ନିଆଁ ବାଣ ।

ପାଖରେ ତାର ରୋଗୀଣା ସ୍ତ୍ରୀ ଉଠିପଡ଼ି ତାର ମାତାଳ ସ୍ୱାମୀକୁ ଟାଣିବାକୁ ଲାଗିଲା ।

ଦିବାକର ମଦର ନିଶାରେ କଣ ଯେ କେତେ ବକିଉଲିଥାଏ ପାଟିରେ ଯେପରି ବାଡ଼ବତା ଥିଲାଭଳି ମନେ ହେଉନଥାଏ । ରାଗରେ ନିଆଁ ପାଲଟି ଯାଇଥାଏ । ନାଚିକୁଦି ଘର କମ୍ପାଇ ଦେଉଥାଏ ।

ରାଗରେ ତାର ସ୍ତ୍ରୀକୁ ଠେଲିଦେଇ କହିଲା ।

ରଣ୍ଡି ତୁ ଏ ମାଇକିଣାକୁ ଘରେ ପୂରାଇଛୁ କାହିଁକି ?

ବୀନା ଏକେ ତ ରୋଗୀଣା, ପୁଣି କିଛି ନଖାଇ ନପିଇ ଦେହ ଦୁର୍ବଳ । ତାର ମାତାଳ ସ୍ୱାମୀର ଧକ୍କାରେ କିଛିଦୂର ଛିଆଡ଼ ହୋଇ ଘରର ବେସରବଟା ପଥରରେ ମୁଣ୍ଡ ଛେଚି ହୋଇଗଲା ।

ଦିବାକର ନିଜକୁ ସମ୍ଭାଳି ନପାରି ତଳେ ପଡ଼ଯାଇ ମଦର ନିଶାରେ ଗରଗର ହୋଇ ମାଟି କାମୁଡ଼ ପଡ଼ ରହିଲା । ତାର ହୋସ ରହିଲା ନାହିଁ ।

କନକ ଏ ଦୃଶ୍ୟ ଦେଖି ଭୟରେ ଥରିବାକୁ ଲାଗିଲା ।

ଦିବାକରର ପାଟି ଶୁଣି ଗାଁର ଲୋକମାନ ଦୌଡ଼ ଆସିଲେ ।

ତାର ସ୍ତ୍ରୀ ବୀନା ମୁଣ୍ଡରୁ ରକ୍ତ ଝରଝର ବୋହିଗଲିଥାଏ । କନକ ଏତେ ରକ୍ତ ଦେଖି ଭୟରେ ଶିହରିଉଠିଲା । ତାର ଆଖି ବିସ୍ଫାରିତ ହୋଇଗଲା । ପାଖକୁ ଦୌଡଯାଇ ତାକୁ ଉଠାଇ ଆଣିଲା । ମୁଣାରୁ ତୁଳା ବାହାର କରି ରକ୍ତ ପୋଛି ଦେଲା । ମୁଣ୍ଡକୁ ଯାବୁଡ-ଧରି ରକ୍ତସ୍ରାବ ବନ୍ଦ କରିବାକୁ ଚେଷ୍ଟାକଲା । ତା ପାଖରେ ଥିବା ଔଷଧ ଦେଲା । ମାତ୍ର ରକ୍ତ ବନ୍ଦ ହେବାକୁନାହିଁ ମୁଣ୍ଡଫାଟି କ୍ଷତବିକ୍ଷତ ହୋଇଯାଇଛି ।

ଧୀରେ ଧୀରେ ବୀନା ଅଚେତ ହୋଇ ପଡ଼ିଗଲା । ତାକୁ ସମସ୍ତେ ଟେକିନେଇ ଘରେ ଶୁଆଇଦେଲେ ।

କନକ ମୁଣ୍ଡରେ ବହୁ ଚିନ୍ତା ଖେଳିଗଲା । ଯାତ୍ରୀର ଭଲ କରିବାକୁ ଆସି ତାର କେବଳ ଅନିଷ୍ଟ କରିଗଲା ।

ତା ମାତାଳ ସ୍ୱାମୀଠୁ ତାକୁ ରକ୍ଷାକରିବାକୁ ଆସି ସେ ନିଜେ ରକ୍ତ କ୍ତ ହୋଇ ଅଚେତ ହୋଇ ପଡ଼ିଗଲା ।

ମୁହୂର୍ତ୍ତକ ମଧ୍ୟରେ କେତେ କଥା ଘଟିଗଲା ।

ପୁରାଣରେ ଅନେକ କଥା ସେ ପଢ଼ିଛି । ପାପ, ପୁଣ୍ୟ ନରକ କଥା ପଢ଼ିଛି । ମଣିଷ ନିଜ କୃତକର୍ମର ଫଳ ମଲାପରେ ଭୋଗ କରିଥାଏ । ଯମ ଏଭଳି ପାପୀମାନଙ୍କୁ ନରକକୁ-ଣ୍ଡରେ ପକାଇ କେତେ ଦଣ୍ଡ ଦେଇଥାଏ ବୋଲି ସେ ପଢ଼ିଛି, ଶୁଣିଛି । ଆଜି ସବୁ ଗୋଟି ଗୋଟି ସେ ସବୁକଥା ତାର ମନେ ପଡ଼ିଯାଉଥାଏ ।

ସ୍ୱର୍ଗର ନରକକୁଣ୍ଡ ସମ୍ବନ୍ଧରେ ସେ ଯାହା ପଢ଼ିଛି, ମର୍ତ୍ତ୍ୟର ନରକକୁଣ୍ଡ ତା ତୁଳନାରେ ଆଉ ଅଧିକ କଣ ହୋଇପାରେ ?

ମଣିଷ ପ୍ରତି ମୁହୂର୍ତ୍ତରେ ଏଭଳି ନରକରେ ଘାଣ୍ଟି ହୋଇ ହୋଇ ତାର ଜୀବନ ଟିକକ ଶେଷ କରି ଦେଉଛି । ଭଲମନ୍ଦ କଣ ସେ ବିଚାର କରିପାରୁ ନାହିଁ ।

ଯେଉଁମାନେ ଦୁର୍ବଳ, ନିରାଶ୍ରୟ, ଅସହାୟ ସେମାନଙ୍କ ଦୁଃଖ ଲାଘବ କରିବା ପାଇଁ କନକ ଆଜି ଅଣ୍ଟାଭିଡ଼ ଘର ଘର ବୁଲି ସେବା ଶୁଶ୍ରୁଷା କରି ଚାଲିଛି ।

ବିନା ଚିକିତ୍ସାରେ ଲୋକ ମରି ପଡ଼ୁଛନ୍ତି । କେହି ସେମାନଙ୍କୁ ଭରସା ଦେବାକୁ ନାହିଁ । ଆଜି କନକ ଘର ଘର ବୁଲି ଔଷଧ ଟିକକ ଦେଉଛି । ଦୁଇପଦ ଆଶ୍ୱାସନା କଥାକହି ସେମାନଙ୍କ ମନରେ ଶାନ୍ତ୍ୱନା ଦେଉଛି ।

ମଦର ନିଶାରେ କଣ ଯେ କେତେବେଳେ ଏମାନେ କହନ୍ତି ତାର କଣ ଠିକ

ଠିକଣା ଥାଏ । ଏପରି କଥା ସେ ବରାବର ଶୁଣିବାକୁ ପଡୁଛି । ତଥାପି ସେ ହତାଶ ନ ହୋଇ ବରାବର ସେମାନଙ୍କ ସେବା କରିଚାଲିଛି ।

ସେବାହିଁ ତାର ପରମଧର୍ମ ପରମ କର୍ତ୍ତବ୍ୟ ।

ମନୁଷ୍ୟ ମାତ୍ରକେ କିଛି ଦୁର୍ବଳତା ନିଶ୍ଚୟ ଅଛି । କିଛି ଦାୟିତ୍ୱ ମଧ୍ୟ ରହିଛି । ଯେଉଁଠି ମନୁଷ୍ୟ ଦାୟିତ୍ୱହୀନ, ନିର୍ବିକାର, ଦିବାକର ଭଳି ବିବେକହୀନ, ସେଠି ମନୁଷ୍ୟ ନରକକୁ ଖସିଆସୁଛି । ଆଜି ତାର ଦାୟିତ୍ୱ ନାହିଁ ବୋଲି ସେ ଗରୀବ, ସେ ଅଶିକ୍ଷିତ । ନା, ଗରୀବ ବୋଲି ସେ ଅଶିକ୍ଷିତ,?

ସେ ଅଶିକ୍ଷିତ ବୋଲି ଦାୟିତ୍ୱହୀନ ? ଏକ ଜଟିଳ ପ୍ରଶ୍ନ ? ଶିକ୍ଷିତ ହେଲେ ସେ ଆତ୍ମସଚେତନ ହୋଇପାରିବ, ଏବଂ ତାର ସମସ୍ୟା ସମାଧାନ କରିପାରିବ ।,

ଘରେ ସ୍ତ୍ରୀ ରୋଗଣୀ । ଝୁଅ ରୋଗରେ ଶଢ ଶଢ ମରୁଛି । ତଥାପି ସେ ମାତାଲ ହୋଇ ବୁଲିବୁଲୁଛି । ହିତାହିତ ଜ୍ଞାନ ଆଜି ତାର ଲୋପ ହୋଇଯାଇଛି । ମଣିଷର ମଣିଷପଣ ଉପରେ ଏ ଏକ ଆଘାତ ।

ମଣିଷ ନିଜ ଦାୟିତ୍ୱରୁ ଖସି ଯିବାପାଇଁ ଚେଷ୍ଟା କରେ । ଅଲକ୍ଷୁଆମି ପାଇଁ ଅନ୍ୟକୁ ଠକିବା ପାଇଁ ଚେଷ୍ଟା କରେ । ନିଜେ ନିର୍ଲିପ୍ତ ରହି, ନିଜ ମନର ତୃପ୍ତିପାଇଁ କେବଳ ମାତାଲ ହୋଇପଡେ । ସେଥିରେ ତାକୁ ଶାନ୍ତି ମିଳିବ ବୋଲି । ନିଜ ଦାୟିତ୍ୱରୁ ଖସି ଯିବା-ପାଇଁ ସେ ଚେଷ୍ଟା କରେ । ସେ ଭୀରୁ କାପୁରୁଷ ।

ସୁବିଧାବାଦୀ ମଣିଷ । ସ୍ୱାର୍ଥପର ମଣିଷ ।

ନିଜ ସ୍ୱାର୍ଥ ଛଡା ସେମାନଙ୍କ ଚକ୍ଷୁରେ ଆଉ କିଛି ଦେଖାଯାଏ ନାହିଁ ।

ନିଜର ରକ୍ତଗତ ସନ୍ତାନ ମରୁ ଅବା ନିଜର ସ୍ତ୍ରୀ, ରୋଗ ରୋଗରେ ଶଢ ଶଢ ମରୁ· ସେଥିପ୍ରତି ତାର ଧ୍ୟାନ ନାହିଁ । କ୍ଷଣିକ ସୁଖ ଭୋଗ, ଆମୋଦ ପାଇଁ ତାର ଏ ଏକ ଛଳନା । ସେମାନଙ୍କ ପାପର ବୋଝ ବଢ ବଢ ଚାଲିଛି । ସେମାନଙ୍କୁ ସହଜରେ ଚିହ୍ନି ହେବ ନାହିଁ । ଦେଖିଲେ ମଧ୍ୟ ସହଜରେ ଜାଣିହେବ ନାହିଁ । ବୁଝିଲେ ମଧ୍ୟ ବୁଝିହେବ ନାହିଁ ।

ସମାଜରେ ଏ ଏକ ନିତିଦିନିଆ ଚାଲିଚଳନ ଭିତରେ ମଣିଷ ଆଜି ଦେହସୁହା ହୋଇ ଯାଇଛି ।

କିନ୍ତୁ କନକ ଏ ଦୃଶ୍ୟ ଦେଖି ଦେଖି ତା ମନରେ ଗଭୀର ଚିନ୍ତା ସୃଷ୍ଟି କରୁଛି ।

ତପନଭାଇ ଯେଉଁମାନଙ୍କ ମଙ୍ଗଳକାମନା କରିବେ ବୋଲି ସଂକଳ୍ପବଦ୍ଧ ହୋଇ

ବାହାରି ପଡ଼ନ୍ତି । କେବଳ କେତୋଟି ଗାଁକୁ ଛାଡ଼ଦେଲେ ଏଭଳି କେତେ ଯେ ଗାଁର ଗାଁର ଅବସ୍ଥା କେତେ ଶୋଚନୀୟ ଆଜି ଆଖିରେ ନ ଦେଖିଲେ, କାନରେ ନ ଶୁଣିଲେ ବିଶ୍ୱାସ କରି ହେବନାହିଁ ।

ଯେଉଁଠି ମଣିଷର ଚେତନା ଜାଗ୍ରତ ହୋଇଛି, ପାରିପାର୍ଶ୍ୱିକ ପରିସ୍ଥିତିରେ ତାର ରୂପରେଖ ବଦଳି ଯାଇଛି ମଣିଷ ସେଠି ଆତ୍ମସଚେତନ ହୋଇପାରିଛି । ମନରେ ଦମ୍ଭ ଆସିଛି । ନୂଆକରି ବଞ୍ଚିବାର ସ୍ୱାଦ ଚାଖି ସାରିଛି । ପଛକୁ ଫେରିବାକୁ ମନ ବଳାଉନାହିଁ । ତାର ଅତୀତ ଦୁଃଖଦାୟକ, ତାକୁ ମନେପକାଇ ଶିହରି ଉଠୁଛି । ଆଳସ୍ୟର ମହାନିଦ୍ରାରୁ ଆଖି ମଳି ମଳି ସଚେତନ ହୋଇ ଆଗକୁ ବଢ଼ିବାପାଇଁ ସଂକଳ୍ପବଦ୍ଧ ହୋଇଛି ।

ତାର ଆଜି ମନେପଡ଼ୁଛି ଆଉ ଗୋଟିଏ ଦୃଶ୍ୟ ।,

ସନ୍ଧ୍ୟା ପ୍ରାୟ ।

ତାର ଗାଁକୁ ଗାଁ ବୁଲିବା ସମୟରେ, ସେହି ଦୃଶ୍ୟ ଆଜି ମଧ୍ୟ ତା ଆଖି ଆଗରେ ନାଚିଉଠୁଛି । କନକ ଘରକୁ ଘର ବୁଲିଯାଉଛି । ଠିକ୍ ଏତିକିବେଳେ କନକ ଆସି ତା ଘର ସାମନାରେ ଛିଡାହେଲା ।

ଘରୁ ମଦନ ପାଟି କରୁଛି । ତାର ସ୍ତ୍ରୀବାଝିଅକୁ ହାତଉଠାଇଛି । ଭୟରେ ଷୋହଳ, ସତର ବର୍ଷର ସ୍ତ୍ରୀବାଝିଅ ରେଖାମୁହଁ ବିବର୍ଣ୍ଣ ଦେଖାଯାଉଛି । ଏତିକିବେଳେ ଦ୍ୱାର ମୁହଁରେ କନକନାନୀକୁ ଦେଖି ତାର ସାହସ ଫେରିଆସିଛି । ଦୌଡ଼ିଆସି ତା ପିଠିପଟେ ମୁହଁଲୁଚାଇ ଦେଇ କହିଲା ।

ନାନୀ ମୋତେ ରକ୍ଷାକର, ମୋତେ ବଞ୍ଚାଅ । ନହେଲେ ବାପା ମୋତେ ପିଟି ପିଟି ମାରିପକାଇବ । ମୁଁ କିଛି ଜାଣିନାହିଁ । ଦୁଇଦିନ ହେବ ମାଁ ଘରୁ କା'ସହିତ ପଳାଇଛି । ମୁଁ କିଛି ଜାଣିନାହିଁ । ସକେଇ ସକେଇ ଭୟରେ ମୁହଁଲୁଚାଇ କାନ୍ଦୁଛି ।

ମଦନ, କନକ ପାଖକୁଆସି ମଦନିଶାରେ ବକି ଚାଲିଥାଏ । ପାଟିରୁ ଦୁର୍ଗନ୍ଧ ବାରମ୍ବାର ଆସୁଥାଏ । ସବୁଦିନ ସେ ଏମିତି । ପେଟେପିଇ ଦେଲେ ସେ ଅଣ ଆୟତ୍ତ ହୋଇପଡ଼େ । ଲଗାଏ ଝଗଡ଼ା । କେଉଁଦିନ ବାହାରେ କା ସହିତ ଝଗଡ଼ାକରି ମୁଣ୍ଡଫଟାଇ ଘରକୁ ଫେରେ । ନଚେତ୍ ଘରକୁଫେରି ସ୍ତ୍ରୀ,ଝିଅକୁ ମାଡ଼ମାରି ପେଡହାଣ୍ଡି ଭାଙ୍ଗି ରାଗମେଣ୍ଟାଏ । ଏଇଟା ତାର ପ୍ରକୃତି ତାର ନିତିଦିନିଆ ସ୍ୱଭାବ ।

ତା ଗାଳିବର୍ଷଣରେ ଜିଭ ଭଲକରି ଲେଉଟି ନାହିଁ ।

"ରଣ୍ଡି, ମୋତେ ଛାଡ଼ି ଆଉ ଗୋଟିଏ ଘଇତା କରି ପଳାଇଲା । ରଣ୍ଡିକୁ ପାଇଲେ ଖଣ୍ଡ ଖଣ୍ଡ କରି କାଟିପକାଇବି ।" ଦାନ୍ତ କଡମଡ କରି ରେହାଇ ଦେଲା ।

କନକ ବୁଝିବାରେ ଆଉ କିଛି ବାକିରହିଲା ନାହିଁ । ମଦନର ସ୍ତ୍ରୀ ପ୍ରତିଦିନ ମାଡଖାଇ, ଭୋକ ଉପାସରେ ରହି ଆଉ ଧୈର୍ଯ୍ୟଧରି ରହିପାରିଲା ନାହିଁ । ନୂଆ ଘରସଂସାର କରିବାପାଇଁ ସୁଖରେ ଦିନ କାଟିବାପାଇଁ ଘରେ ତାର ସୁବାଝିଅକୁ ଛାଡ଼ି ଆଉ ଜଣକ ସହିତ ପଳାଇଯାଇଛି ତାର ପେଟ ଏବଂ ମନର ଭୋକ ମେଣ୍ଟାଇବା ପାଇଁ ।

ଏଇତ ଗ୍ରାମ୍ୟ ଜୀବନର ନିତିଦିନିଆ କରୁଣଚିତ୍ର । ମଣିଷ ମାତ୍ରକେ ସ୍ୱାର୍ଥପର । ନିଜସ୍ୱାର୍ଥ ନିଜସୁଖ ଛଡା ସେମାନଙ୍କ ଆଖିରେ ଆଉ କିଛି ଦିଶେନାହିଁ ।

ରେଖାର ମନରେ କେତେ ଆଘାତ ଲାଗିଛି । ସବୁକଥା ସେ ବୁଝିଲାଣି । ଲାଜରେ ମୁହଁ ତାର କଳା ପଡ଼ଯାଉଛି । ସେ କିଛି କହିପାରୁନାହିଁ । ତା ବାପାକୁ ବୁଝାଇପାରୁ ନାହିଁ । ସେ ଖାଲି ବଲ୍ ବଲ୍ କରି ଅନାଇ ରହିଛି । ତାର ପ୍ରତିକାର କରିବା ତାର ଶକ୍ତିର ବାହାରେ । ଲାଞ୍ଛନା ଉପବାଦର ବୋଝ ବୋହି ସେ ବଞ୍ଚି ରହିବାକୁ ହେବ । ତାକୁ ସବୁ ସହ୍ୟ କରିବାକୁ ପଡବ । କନକ ରେଖାକୁ ଯେତେ ଶାନ୍ତ୍ୱନା ଦେଲେ ମଧ୍ୟ ତାର ଅମାନିଆ ମନ ବୁଝୁନାହିଁ । ତାକୁ ଏଭଳି ଅବସ୍ଥାରେ ଏକୁଟିଆ ଛାଡ଼ି ଦେଇ ମା' ତାର ପର ପୁରୁଷସହ ଚାଲିଯାଇଛି

କନକ ଏ ଦୃଶ୍ୟ ଦେଖି ତାର ଆଖିପତା ଓଦା ହୋଇ ଆସିଲା ।

ଏ ସଂସାରରେ ମାୟ, ମମତା ସବୁ ମିଛ । ସବୁ ଅଳିକ । ଆଶା ଆଶଙ୍କା ଭିତରେ ମନ ତାର ଛଟପଟ ହେଲା ।

ମଣିଷର ସ୍ନେହ,ମମତା, ସବୁ କ'ଣ ମିଛ ?

ଏ କ'ଣ କେବଳ ଲୋକ ଦେଖାଣିଆ । ସ୍ନେହ,ମମତା ବିନା ବଂଞ୍ଚିପାରିବ କିପରି ?

ଏତେ ସମୟ୍ ଧରି ରେଖାକୁ କୁଣ୍ଡାଇ ସେ ଛିଡା ହୋଇଥାଏ ।

ପାଖରେ ଗାଁର ଅନେକ ଲୋକ କୌତୁହଳରେ ତାକୁ ଅନେଇ ରହିଥାନ୍ତି ।

ସେମାନେ ତାକୁ ଏଭଳି ଅନେଇ ରହିଥିବା ଦେଖି ଲାଜରେ ତାର ମୁହଁ ରଙ୍ଗା ପଡ଼ିଗଲା ।

ମଣିଷ ପ୍ରତି ମଣିଷର ଅତ୍ୟାଚାର ସମସ୍ତେ ଆଖିପୁରାଇ ଦେଖନ୍ତି ।

ମଣିଷ ମାତାଳ ହେଲେ କିପରି ତାର ହିତାହିତ ଜ୍ଞାନ ହରାଇ ବସେ ନ ଦେଖିଲେ ମଣିଷ ବିଶ୍ୱାସ କରିପାରିବ ନାହିଁ ।

ଏଇ ନର୍କକୁଣ୍ଡରୁ ଏମାନଙ୍କୁ ଉଦ୍ଧାର କରିବାକୁ ପଡ଼ବ । ସେହି ପାପରୁ, ସେହି ମହାପାପରୁ ସେମାନଙ୍କୁ ମୁକ୍ତି କରି ନ ପାରିଲେ ମଣିଷ ପ୍ରତି ମଣିଷର କର୍ତ୍ତବ୍ୟ ସଂପନ୍ନ ହେଲାନାହିଁ । ବୋଲି ଭାବିବାକୁ ପଡ଼ବ ।

"ମଦ ପିଇବା ପାପ ନୁହେଁ, ମଦୁଆଙ୍କୁ କୁମାର୍ଗରୁ ନିବର୍ତ୍ତାଇବା ହିଁ ପାପ ।"

ଏହା ଯଦି ସତ୍ୟ, ତେବେ ମଦନର ଭୁଲ୍ ରହିଲା କେଉଁଠି ଯେ ମଦପିଏ ତାକୁ ଯେତେ ବୁଝାଇଲେ, ପ୍ରବର୍ତ୍ତାଇଲେ ସେ ମଦ ଛାଡ଼ ଦେଇପାରେ ନାହିଁ ।

ଯେତେଦିନ ପର୍ଯ୍ୟନ୍ତ ସେ ଆତ୍ମସଚେତନ ହୋଇ ନାହିଁ, ସେତେଦିନ ପର୍ଯ୍ୟନ୍ତ ତାକୁ ପ୍ରବର୍ତ୍ତାଇବା ନିରର୍ଥକ ।

ଯେଉଁଦିନ ଆତ୍ମସଚେତନ ହୋଇ, ମଦ ପିଇବା ଦ୍ୱାରା ତାର, ତାର ପରିବାରର ଧ୍ୱଂସସାଧନ କରୁଛି ସେତେବେଳେ ସେ ମଦ ରକ୍ଷାସଠୁ ବଂଚିବାକୁ ଉଦ୍ୟମ କରିବ । ସେହି ଉଦ୍ୟମହିଁ ତାକୁ କେବଳ ଶ୍ରୀ ମଣ୍ଡିତ କରିପାରିବ ।

ପ୍ରମାଦର ଏହି ନିବୀଡ଼ ବନ୍ଧନ ମଧ୍ୟରେ ମଣିଷ ବଂଞ୍ଚିଥିବା ପର୍ଯ୍ୟନ୍ତ ଏଥିରୁ ତାକୁ ମୁକ୍ତି ନାହିଁ, ନିସ୍ତାର ନାହିଁ । ପ୍ରତ୍ୟେକ ମଣିଷକୁ ଏହି ଦୁଃଖ ତିରୁ ମୁକ୍ତି କରିବାକୁ ପଡ଼ିବ ।।।

ମନୁଷ୍ୟ ପୁଣ୍ୟଅର୍ଜନ କରିବା ପାଇଁ କେତେ ଦାନ ଧର୍ମ କରେ । କେତେ ହୋମ ଯଜ୍ଞ କରେ । କେତେ ତୀର୍ଥାଟନ କରେ । ତାର ବିଶ୍ୱାସ ଏତକ କରିପାରିଲେ ପୁଣ୍ୟଅର୍ଜନ କରିପାରିବ । ସ୍ୱର୍ଗକୁ ସଶରୀରେ ଯାଇପାରିବ ।

ଏମିତି କେତେଯେ କାର୍ଯ୍ୟ କରିଚାଲିଥାଏ ତାରି ମନରେ ଶାନ୍ତି ଶାନ୍ତନା ଲଭପାଇଁ ।

ସତରେ କଣ ସେଥିରେ ପୁଣ୍ୟଅର୍ଜନ ହୋଇଥାଏ ? ସତରେ କଣ ଦାନ ଧର୍ମରେ ତାର ଶାନ୍ତି ଫେରିଆସିଥାଏ ?

ତେବେ ଏତେ ସତ୍ତ୍ୱେ ମଣିଷ ମଣିଷ ଭିତରେ ହିଂସା ଦ୍ୱେଷ ଦିନକୁ ଦିନ ବୃଦ୍ଧି ପାଉଛି କାହିଁକି ?

ଯେ ଦାନ ଧର୍ମ କରି ପୁଣ୍ୟଅର୍ଜନ କରିସାରେ, ତା ଆରଦିନ ପୁଣି ପାପମାୟାରେ ଘାଣ୍ଟି ହେଉଛି କାହିଁକି ?

ମଣିଷ ଯେତେଦିନ ବଂଞ୍ଚିଥିବ, ଲୋଭମୋହରୁ ତାର ନିଷ୍କୃତି ନାହିଁ ।

ପ୍ରକୃତ ଶାନ୍ତି ମିଳିପାରିବ, ମଣିଷକୁ ସେବାକଲେ, ସେଥିରେ ହିଁ ତାର ପୁଣ୍ୟ, ସେଥିରେ ହିଁ ତାର ଧର୍ମଅର୍ଜନ ହୋଇ ପାରିବ ।

କନକ ଆଜି ଏଭଳି କାର୍ଯ୍ୟରେ ରତ, ତାକୁ ଟିକିଏ ଫୁରସତ ମିଳି ପାରୁନାହିଁ ।

ସେ ଯେଉଁ ସେବାରେ ନିୟୋଜିତ ହୋଇଛି ସେଥିରେ ତାକୁ ଅପାର ତୃପ୍ତି ମିଳୁଛି । ଅପାର ଆନନ୍ଦ ଉପଲବ୍ଧି କରିପାରୁଛି । ଯେତେ ଯେତେ ସେ ମଣିଷର ସେବା କରିଚାଲିଛି ସେତେ ସେ ଅପାର ତୃପ୍ତି ଉପଲବ୍ଧି କରି ପାରୁଛି ।

ଅନ୍ୟ ପାଇଁ ନିଜର ସ୍ୱାର୍ଥକୁ ଜଳାଞ୍ଜଳିଦେବା ହେଉଛି ସେବା କରିବା । ସେଥିରେ ମନରେ ଅପାର ତୃପ୍ତି ମିଳିଥାଏ ।

କନକର ଦୁଇ ଆଖିରେ ଅଶ୍ରୁ ଜଳ ଜଳ ହେଲା । ତାର ସଜଳ ଚକ୍ଷୁରୁ ଅଶ୍ରୁ ପ୍ଲାବିତ ହୋଇ ଆସିଲା । ଅଲକ୍ଷ୍ୟରେ ତାର ପଣତକାନିରେ ତାକୁ ପୋଛିପକାଇଲା । ରେଖା, ଏଇ ଯୁବତୀ ଝିଅଟାକୁ ସେ ତା କୋଳକୁ ଆଉଜେଇ ଆଣିଲା ।

ମନରେ ଶାନ୍ତ୍ୱନା ଦେଇ କହିଲା । ତୁ କିଛି ଭୟକରନା, ତୋର ମା ଫେରିଆସିବ ।।

ରେଖା କେବଳ ବଲ୍ ବଲ୍ କରି ତା ମୁହଁକୁ ଅନାଇ ରହିଲା । ମନରେ କିନ୍ତୁ ତା କଥାରେ ଟିକିଏବି ବିଶ୍ୱାସ ହେଲନାହିଁ । ଛୋଟଟୁଆଙ୍କ ଭଳି ମୁହଁକୁ କନକ ଲୁଗାରେ ଘୋଡାଇ ଭେ ଭେ କାନ୍ଦଉଠିଲା ।

ନା,ନା, ମା ମୋର ଆଉ ଫେରିବ ନାହିଁ । ମୋତେ ଛାଡ଼ ଚାଲିଯାଇଛି । ସବୁଦିନ ପାଇଁ ଚାଲିଯାଇଛି ।

ମନର୍କ ନିଶା ଘୋରରେ ତଳେ କଚଡ଼ହୋଇ ପଡ଼ିରହି ଗର୍ ଗର୍ ହୋଇ ବାଉଳି ହେଉଥାଏ ।

ମନର ରାଗ ତାର୍ ସ୍ତ୍ରୀ ଉପରେ ଶୋଧି ଯାଉଥାଏ, ଅସ୍ପଷ୍ଟ ସ୍ୱରରେ, ଯାହାବୁଝି ହେଉନଥାଏ । ମାତ୍ର ଉପଲବ୍ଧି କରି ହୋଉଥାଏ । ତା ମନର ରାଗ. ଘୃଣାରେ ତାର ସର୍ବାଙ୍ଗ ଥରିଉଠୁଥାଏ । ଏହିଭଳି ବକି ବକି ସେ ଅଚେତ ହୋଇ ତଳେ ପଡ଼ି ରହିଥାଏ ।

ରେଖା, ତା ବାପର ଅଚେତ୍ ଶରୀର ତଳେ ପଡ଼ି ରହିଥିବା ଦେଖି ମୁହଁ ତାର କଳାକାଠ ହୋଇଗଲା । ତାର ସୁଦୀର୍ଘ ରକ୍ଷ କେଶରାଶି ବିପର୍ଯ୍ୟସ୍ତ ଭବରେ ପିଠିରେ ବିଛାହୋଇ ପଡ଼ିଥାଏ । ଚକ୍ଷୁଯୁଗଳ ଲୋତକରେ ଜଳ ଜଳ ହେଉଥାଏ । ଉଦାସ ଭୟାତୁର ଦୃଷ୍ଟିରେ ଛରିଆଡକୁ ମୁହଁବୁଲାଇ ଆଣୁଥାଏ ।

କନକ ତା ପିଠିକୁ ଆଉଁସି କହିଲା ।

ରେଖା, ତୁ ଏମିତି କାନ୍ଦଲେ କିପରି ହେବ ? ତୋତେ ତୋ ବାପର ସେବା କରି-ବାକୁ ପଡ଼ିବ । ତାକୁ ବାଟକୁ ଆଣିବାକୁ ପଡ଼ିବ । ତୋତେ ଦମ୍ଭ ଧରିବାକୁ ପଡ଼ିବ ।

ନା, ନାନୀ, ସେ ମୋ କଥା ଶୁଣିବ ନାହିଁ ?

ହୋସ୍‌ପାଇଲେ ମୋତେ ମ ଡ ଦେବ । ମୁଁ କେତେ ମନା କରୁଛି ମଦ ନ ପିଇବା ପାଇଁ । ଯେତେ ମନାକଲେ ମଧ୍ୟ ସେ ମୋ କଥା କେବେ ଶୁଣୁନାହିଁ । ମୋତେ ଭୟ ହେଉଛି, ତାର ହୋସ୍ ଆସିଲେ ମୋତେ ପିଟି ପିଟି ମାରିଦେବ ।

ଏତକ କହି ସେ ପୁଣି କାନ୍ଦିବାକୁ ଲଗିଲା ।

କନକ ତାକୁ ଛାତିକୁ ଆଉଜେଇ ଆଣି ସ୍ନିଗ୍ଧ ଉତ୍ସନା ସ୍ୱରରେ କହିଲା ।

ଛି, ଏ କି କଥା । ତୁ ଏମିତି ପାଗଳିଙ୍କ ଭଳି ହେଲେ କେମିତି ହେବ ? ତୋ ମା ନାହିଁ, ତୋ ବାପର ଆଉ କିଏ ସେବା କରିବ। ତୁ କିଛି ଭୟ କରନା । ମୁଁ ଆସି ତୋତେ ଦେଖିଯାଉଥିବି । କେମିତି ତୋତେ ତୋ ବାପ ବାଡେଇବ, ସେତେବେଳେ ମୋତେ କହିବୁ । ଏଥର ସେ ଠିକ୍ ହୋଇଯିବ । ତୋତେ ଆଉ ସେ ବାଡେଇବ ନାହିଁ ।

ଯତ୍ନରେ ପାଳିତ ଫୁଲକୁଣ୍ଡର ଗଛ ହଠାତ୍ ମାଟିରେ ପୁଷ୍ଟିକର ଖତସାର ଦେଇ ପୋତା ହୋଇଗଲେ ଯେପରି ଅପର୍ଯ୍ୟାପ୍ତ ରସ ଆସ୍ୱାଦନରେ ପରିତୃପ୍ତ ହୋଇ ବିକଶିତ ହୋଇଥାଏ, ଠିକ୍ ସେହିଭଳି ହଠାତ୍ ଏତେ ସ୍ନେହ, ଆଦର ତାର କନକନାନୀଠୁ ପାଇ ତାର ହୃଦୟ ଆନନ୍ଦରେ ବହ୍ଳ ହୋଇ ଉଠିଲା । ପାଟିର ଦୁଇଓଠ ଧାରେରେ ସ୍ମିତ ହାସ୍ୟରେଖା ଫଟିଉଠିଲା ।

କନକ ତା ମୁହଁରେ ହସ ଟିକିକ ଦେଖି, ତା ମନର ସମସ୍ତ ଗ୍ଲାନି, ବିଷାଦ ଦୂରହୋଇ ଆନନ୍ଦରେ ପୁଲକିତ ହୋଇ ଉଠିଲା । ତାକୁ ସନ୍ତୃଷ୍ଟ ନୟନରେ କିଛିକ୍ଷଣ ଅନାଇ ରହିଲା ।

କନକ କହିଲା, ମୋତେ ଆଉ କେତୋଟି ଜାଗାକୁ ଯିବାକୁ ଅଛି । ମୁଁ କାଲିଆସି ତୋତେ ଦେଖିଯିବି । ବାପାର ଡ୍ରୋସ୍ ଆସିଲା ପରେ ଖାଇବାକୁ ଦେବୁ । ଭୟ କରିବୁ ନାହିଁ । ଏତକ କହି ତାକୁ ଶାନ୍ତ୍ୱନା ଦେଇ ମନରେ ଦମ୍ଭଦେଇ ଚାଲିଗଲା ।

ତା ଯିବାବାଟକୁ ରେଖା ଅନାଇ ରହିଲା । ତା ନାନୀର ଚଲାପଥକୁ ଚାଦଧୂଳୀ ଆଣି ମୁଣ୍ଡରେ ବୋଳି ହେବାକୁ ମନ ତାର ବ୍ୟାକୁଳ ହେଲା ।

ସତେ ସେ ନଥିଲେ ଆଜି ତାର ଅବସ୍ଥା କ'ଣ ହୋଇଥାନ୍ତା ?

ସେଥିଲେ ବୋଲି, ବାପା ତାକୁ ମାଡମାରି ପାରିଲାନାହିଁ । କନକନାନୀକୁ ଦେଖିଲା ପରେ ତାର ସାହାସ ହେଲାନାହିଁ । ହାତ ଉଠାଇଥିଲା । ଧୀରେ ଧୀରେ ଖସି ଆସିଲା । ନାଗ ସାପ ଫଣା ଟେକିଥାଏ ଚୋଟ ମାରିବାକୁ । ମାତ୍ର ଗଦ ଦେଖିଲେ, ନାକରେ ବାସନା ବାଜିଲେ ସେ ଯେପରି ଫଣାକୁ ଧୀରେ ଧୀରେ ନଇଁଆଣେ, ଠିକ୍ ସେଭଳି ବାପାର ମଧ୍ୟ ରାଗ ଥମି ଆସିଲା ।

ସେହି କନକନାନୀ ଭରସା ଦେଇ ଚାଲିଗଲେ । ତାଙ୍କ କଥା ଗୁଡ଼କ କେଡେ ମଧୁର । ମୁହଁ ତାଙ୍କ କେଡେ ସୁନ୍ଦର । ଢଳ ଢଳ ଆଖି । ହସ ହସ ମୁହଁ ତାଙ୍କର, ତାର ଆଖି ଆଗରେ ଝଲସି ଉଠୁଛି ।

ଦାଣ୍ଡ ତାଟିକୁ ଧରି ଛିଡ଼ା ହୋଇ ଏମିତି କେତେବେଳ ଯାଏ ସେ ଅନାଇ ରହିଲା ।,

ଅନେକ ଦିନ ପରେ ବୈଠକ ବସିଛି ।

ବୈଠକ୍ ବେଳକୁ ବେଳ ବେଶ୍ ଜମିଉଠୁଥିଲା ।

ଆଜିର ବୈଠକରେ କନକ ମଧ୍ୟ ଭାଗ ନେଇଛି । ସେମାନଙ୍କ କଥା ଶୁଣି ତା ମନର ପ୍ରତିକ୍ରିୟା ମଧ୍ୟ ସମୟ ସମୟରେ ପ୍ରକାଶ କରୁଥାଏ । କନକର ସୁମଧୁର କଣ୍ଠସ୍ୱର, ତାର କହିବା ଭଙ୍ଗି, ତାର ଯୁକ୍ତି ସମସ୍ତଙ୍କ ମନକୁ ପାଉଥାଏ । ତପନ, କନକର କଥାକୁ ତନ୍ମୟ ହୋଇ ଶୁଣୁଥାଏ ।

କନକର ସେହି ପଦକ କଥା ବାରମ୍ବାର ତପନର ମନରେ ପ୍ରତିଧ୍ୱନିତ ହେଉଥାଏ ।

"ମଣିଷକୁ, ମଣିଷର ଦୁଃଖ ଦୁର୍ଦଶାକୁ ସଚେତନ କରାଇ ଦେଇ ପାରିଲେ, ମଣିଷ, ମଣିଷ ଭଳି ବଞ୍ଚିରହିବାର ଅଧିକାର ତାର ଫେରିପାଇବ । ପେଟଭରି ଖଣ୍ଡିଏ ଖାଇ ପାରିବ । ପ୍ରାଣଭରି ଆନନ୍ଦ ଟିକକ ତାର ମୁହଁରେ ଚହଟି ଉଠିବ ।

ସେତକ କେବଳ ଆଜି ତାର ଜନ୍ମଗତ ଅଧିକାର । ଏତକ ତାକୁ ବୁଝିବାକୁ ପଡ଼ିବ !!! ଏହି ଅଧିକାରରୁ ତାକୁ କେହି ବଞ୍ଚିତ କରିପାରେନା ?"

ସେ କହିଲା ବେଳକୁ ଆଖି ତାର ବିସ୍ତାରିତ ହୋଇଯାଉଥିଲା । ମୁହଁରେ ତୀବ୍ରଭାବ ସଂଚାରିତ ହେଉଥିଲା ।

ମଧୁ କନକ କଥାକୁ ଯୋଗଦେଇ କହିଲା, "ଆମର କାର୍ଯ୍ୟପଦ୍ଧତିକୁ ବ୍ୟାପକ କରିବାକୁ ପଡ଼ିବ । ଅସହାୟ ମଣିଷର ନିଦ୍ରାଭଙ୍ଗ କରି ତାକୁ ଜାଗ୍ରତ କରିବାକୁ ପଡ଼ିବ ।"

ତପନ, କନକ କଥାକୁ ଭାବବିହ୍ୱଳ ହୋଇ ଶୁଣୁଥିଲା । ତା ମନରେ ଅନେକ ଭାବନା ଖେଳିଯାଇଥିଲା ।

ଆଜି ମଣିଷ ନିଜକୁ ମଣିଷ ବୋଲି ବୁଝିପାରିନାହିଁ । ମଣିଷର ମଣିଷପଣ ଆଜି କେଉଁ ଅତଳ ଗହ୍ୱରରେ ଲୁପ୍ତ ହୋଇଯାଇଛି । ସେ ଆଜି ଅଶିକ୍ଷିତ, ସେ ଆଜି ଦରିଦ୍ର ହେଲେ ମଧ୍ୟ ମଣିଷ । ଏତକ ସେ ବୁଝିଗଲେ ତାର ପ୍ରତ୍ୟେକ ସମସ୍ୟା ସମାଧାନ ହୋଇ ଯାଇପାରିବ । ବଞ୍ଚିବା ଅଧିକାର ଟିକକ ସେ ହୃଦୟଙ୍ଗମ କରିପାରିବ ।

ମଣିଷ ଯେତେ ଅଶିକ୍ଷିତ ଯେତେ ଗରୀବ ହେଲେ ମୋହନବାବୁଙ୍କ ଭଳି ନରପିଶାଚ ଗୋଷ୍ଠୀ ସେତେ ଆନନ୍ଦ ଉପଭୋଗ କରିଥାନ୍ତି । ସେତକ ଦୂର ହୋଇଗଲେ ସେମାନଙ୍କ ସ୍ୱାର୍ଥରେ ଆଞ୍ଚ ଆସିବ । ସେମାନେ ତାର ପ୍ରତିକାର ପାଇଁ ଟିକିଏ ମଧ୍ୟ ଆଗ୍ରହ ପ୍ରକାଶ କରନ୍ତ ନାହିଁ ।

ତପନ ଟିକିଏ ଉତ୍ତେଜିତ ହୋଇପଡ଼ିଲା ।।

ସତେତ, କନକ କେତେ ସରଳଭାବରେ, କେତେ ସହଜ କଥାଟି ଆଜି ଖୋଲି ଦେଇଯାଇଛି । ଲୋକଙ୍କ ସହିତ ମିଶି, ଲୋକଙ୍କ ଭଲ ମନ୍ଦରେ ଅଂଶିଦାର ହୋଇ ସେ, ମଣିଷ ସମାଜର ମର୍ମକଥା ଟିକକ ଏତେ ସହଜରେ ପ୍ରକାସ କରିପାରିଛି ।

ମଧୁ ଟିକିଏ ଭାବପ୍ରବଣ ହୋଇ ତପନର ଗମ୍ଭୀର ମୁହଁକୁ ଅନାଇ କହିଲା ।

ଭାଇ, ଆମର କେଉଁଠି କିଛି ଭୁଲ୍ ରହିଯାଉଛି, ଯା ଫଳରେ ଆମର ଉଦ୍ୟମ ଯେତେ ଆଗେଇବା କଥା ସେତେ ଆଗେଇ ପାରୁନାହିଁ ।

ତପନ ତାର ବନ୍ଧୁର ଭାବବିହ୍ୱଳ ମୁହଁକୁ ଅନାଇ କହିଲା ଆମର କାର୍ଯ୍ୟପଦ୍ଧତିରେ ଭୁଲ୍ ରହିଯାଉଛି ବୋଲି ତୁ ଯାହା ଭାବୁଛୁ ତାହା ନୁହେଁ । ଏତେ ଦିନର ଜଡ଼ତା, ହଠାତ୍ ଘୁଞ୍ଚିଯିବ ବୋଲି ଭାବିବା ତାହା ମଧ୍ୟ ଠିକ୍ ନୁହେ । ମଣିଷ ଦେହରେ ଏତେ ଦୁର୍ଗୁଣ ଭରିରହିଛି, ଅଶିକ୍ଷା, କୁସଂସ୍କାର ତାର ମନକୁ ବାନ୍ଧରଖି ଆଗେଇବାକୁ ବାଟ ଛାଡୁନାହିଁ । ସେତେବେଳେ ଆମେ ଏତେ ସହଜରେ ସଫଳତାର ସୋପାନ ଆରୋହଣ କରିବୁ ବୋଲି ଭାବିବା ଭୁଲ୍ ନୁହେଁ କି ??

ପୁଣି ତପନ କହିଲା, ବିନା ପରିଶ୍ରମରେ ବିନା ଉଦ୍ୟମରେ କେବେ କୌଣସି ସଫଳତା ଅର୍ଜନ କରାଯାଇପାରେନା ।,

କନକ ତପନର ମୁହଁକୁ ଚାହିଁ କହିଲା ।

ବ୍ୟକ୍ତିସ୍ୱାର୍ଥ, ମଣିଷ ତାର ସ୍ୱାର୍ଥସାଧନ ପାଇଁ ମଣିଷକୁ ଅମଣିଷ କରିବାରେ ତିଳେମାତ୍ର କୁଣ୍ଠାବୋଧ କରେ ନାହିଁ । ଧନୀକ ଶ୍ରେଣୀ, ସାହୁକାର ଗୋଷ୍ଠୀ ମଣିଶକୁ ଶୋଷି ଶୋଷି ପଙ୍ଗୁ କରି ଦେଇଥାନ୍ତି । ତାହାହିଁ ସେମାନଙ୍କ ମୂଳଧନ । ତାରି ବଳରେ ସେମାନେ ସେମାନଙ୍କ ବ୍ୟବସାୟ ଚଲାଇ ରଖିଥାନ୍ତି । ମଣିଷର ଅସହାୟତାର ସୁଯୋଗରେ, ମଧୁର ପ୍ରଲୋଚନର ଆକର୍ଷଣରେ ମଣିଷ ତାର ମଣିଶପଣକୁ ତା ପାଖରେ ଅର୍ପଣ କରିଦେଇଥାଏ ।

ତା ମୁହଁ ଲାଲ ପଡ଼ଯାଇଥାଏ । ଚକ୍ଷୁରେ ଫୁଟିଉଠିଲା କ୍ରୋଧ । ସତେ ଯେପରି ତାର ଏହି ଉକ୍ତି ଟିକକ ଗୋଟିଏ ଗୋଷ୍ଠୀ, ଧନୀ ସାହୁକାର, ଅର୍ଥଲୋଭୀ ସ୍ୱାର୍ଥପର ମଣିଷ ସମାଜପ୍ରତି ପ୍ରଜୁଜ୍ୟ ।

କିଏ ସେ ?

ସେ ମୋହନବାବୁଙ୍କ ଭଳି ଲୋକ ଛଡା ଅନ୍ୟ କିଏ ନୁହେଁ ।।

କନକ, କିଛିକ୍ଷଣ ପରେ ନିଜକୁ ସମ୍ଭାଳିନେଇ କୋମଳ କଣ୍ଠରେ କହିଲା ।

ଦୁର୍ବଳ, କ୍ଷୁଧିତ, ପୀଡିତଙ୍କ ସେବା କରିବା ମୋର କର୍ତ୍ତବ୍ୟ ।

ଏଇ କେତେ ମାସ ଭିତରେ ମୁଁ ସ୍ପଷ୍ଟ ଉପଲବ୍ଧି କରିପାରିଛି, ଏମାନଙ୍କୁ ବାଟକୁ ଆଣିବାକୁ ହେଲେ କେତେ ପରିଶ୍ରମ କେତେ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ । ଅବାଟକୁ ବାଟକୁ ଆଣିବା ସହଜ ନହେଲେ ମଧ୍ୟ ଅସମ୍ଭବ ନୁହେଁ ।

କନକ ମନର ଦୃଢ଼ତା ତପନ ସ୍ପଷ୍ଟ ଉପଲବ୍ଧି କରିପାରିଲା । କନକ ମୁହଁରେ ଉଜ୍ଜ୍ୱଳ ଆଭ, ଫୁଟିଉଠିଲା ତାର କର୍ତ୍ତବ୍ୟରେ ସେ ଆଜି ଆତ୍ମତୃପ୍ତି ଲାଭ କରିଛି । ମନରେ ଖେଳାଇ ଦେଇଛି ପରିପୂର୍ଣ୍ଣତା ।

କନକ ତପନର ଭାବଗମ୍ଭୀର ମୁହଁକୁ ଅନାଇ ପ୍ରଶ୍ନ କଲା ।,

ଶୋଷିତ, ଶୋଷକର ଅତ୍ୟାଚାରରୁ ବର୍ତ୍ତିବାକୁ ଚେଷ୍ଟାକଲେ କଣ ବର୍ତ୍ତିପାରିବ ନାହିଁ ??

ତପନ କନକର ପ୍ରଶ୍ନରେ ଚମକିପଡ଼ିଲା । ତା ମନର ଗଭୀରତା ଭାବନାର ଚିନ୍ତାଧାରକୁ ବିସ୍ତାରିତ ନୟନରେ ଅନାଇ ରହିଲା ।

ତା'ଠୁ ହଠାତ୍ କୌଣସି ଉତ୍ତର ନପାଇ ପୁଣି ପ୍ରଶ୍ନ କଲା ।

ଭାଇ କୌଣସି ଉତ୍ତର ଦେଲ ନାହିଁ ଯେ ?

ତପନ ଭାବବିହ୍ୱଳ ହୋଇ କହିଲା ।

"ମେଣ୍ଢାର ଗୋଡ଼ ଥାଏ ମାତ୍ର ମେଣ୍ଟ ନଥାଏ । ବଳିଆ କୁକୁର ସେମାନଙ୍କୁ ଗୋଡ଼ାଇ ଗୋଡ଼ାଇ ଚୂନା ଚୂନା କରି ଖାଇଯାଏ ମାତ୍ର ତାଙ୍କରି ମେଣ୍ଟ ଅଛି ।

ମଇଁଷୀର ମେଣ୍ଟ ଥାଏ, ତେଣୁ ମହାବଳ ବାଘ ଆକ୍ରମଣ କରିବାର ସାହାସ କରି ପାରିନଥାଏ ।"

ଏଇ ପଦକ କଥା ଶୁଣି ମଧୁ, କନକ ତା ମୁହଁକୁ ଅନାଇ ରହିଲେ ।

ତପନ ମନର ଗଭୀର ପ୍ରଦେଶରେ କେତେ ଯେ ଦୁଃଖ ବେଦନା ଭରିରହିଛି ଏଥିରୁ ସ୍ପଷ୍ଟ ଅନୁମାନ କରିହେଉଥାଏ ।

ଦୁର୍ବଳ ଅସହାୟ ମଣିଷକୁ ଆଜି ସଂଘବଦ୍ଧ ହେବାପାଇଁ ତାର ଏ ଆହ୍ୱାନ । କନକ, ମଧୁ ସ୍ପଷ୍ଟ ଉପଲବ୍ଧି କରିପାରିଲେ ।

ମଧୁ ଟିକିଏ ଉତ୍ତେଜିତ ହୋଇ କହିଲା ।

ସମାଜରେ ଶୋଷଣ, ଅନ୍ୟାୟ, ଅନୀତି, ଜୁଲମ ଅତ୍ୟାଚାର ସବୁ ପୂରିରହିଛି । ମାତ୍ର ଆମେ ତାକୁ ପ୍ରତିକ୍ଷେତ୍ରରେ ମୁକାବିଲା କଲେଯାଇ ତାର ପ୍ରତିକାର କରିପାରିବା । ଆମେ ସଂଘବଦ୍ଧ ହୋଇ ନ ପାରିବା ଫଳରେ ଆମେ ଆମ ଅଧିକାର ସାବ୍ୟସ୍ତ କରି ପାରୁନାହୁଁ ।,

ତପନ ତା ମନର ଭାବନାକୁ ସ୍ପଷ୍ଟ ଉପଲବ୍‌ଧି କରିପାରି କହିଲା ।

ବ୍ୟଭିଚାର, ଦୁର୍ନୀତି, ବର୍ବରତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଦେଲେ ଆମେ ଆମର କର୍ତ୍ତବ୍ୟ ସମ୍ପନ୍ନ କରିଦେଲୁଁ ଭାବି ନୀରବ ରହିଯାଉଁ ।

ମାତ୍ର ତାର ମୂଳ ଯେ କେତେ ଗଭୀରକୁ ମାଡ଼ିଯାଇଛି, ତାକୁ ଉପାଡ଼ି ଫିଙ୍ଗି ନଦେବା ପର୍ଯ୍ୟନ୍ତ ଆମେ ଯଦି ଆମର ନିଶ୍ୱାସ ନମାରୁ ତେବେଯାଇ ଏହା ସମ୍ଭବପର ହେବ ।

ଚୁପ ନିଜେ ଶୁଣିଲୁ, କନକ ଏଇନେ କହୁଥିଲା । ମଣିଷକୁ ଅବାଟରୁ ବାଟକୁ ଆଣିବା କଷ୍ଟସାଧ୍ୟ ହେଲେ ମଧ୍ୟ ଅସମ୍ଭବ ନୁହେଁ !!!

ତାର ଉକ୍ତିକୁ ତପନଭାଇ ଦୋହରାଇଥିବା ଯୋଗୁଁ କନକ ମନରେ ପୁଲକ ସୃଷ୍ଟି କଲା । ସେ ତନ୍ମୟ ହୋଇ ତପନର ଶାନ୍ତ ସୌମ୍ୟ ମୁହଁକୁ ଅନାଇ ରହିଲା ।

ମଧୁ, ତା ତପନଭାଇର ଦୃଢ଼ତା କାର୍ଯ୍ୟରେ ସଂକଳ୍ପ କେତେ ଯେ ଦୃଢ଼ ତାକୁ ଉପଲବ୍‌ଧିକରି ଭକ୍ତିରେ ତା ମୁଣ୍ଡ ନଇଁଆସିଲା ।

ମଣିଷ ମନରେ ଯେତେବେଳେ ହାହୁତାଶର ବହ୍ନି ଶିଖା ପ୍ରଜ୍ୱଳିତ ହୋଇଉଠେ, ନୈରାଶ୍ୟର ନିର୍ଯ୍ୟାତନାରେ ତାର ମନ ପ୍ରାଣ ଜର୍ଜରିତ ହୋଇଉଠେ, ସେତେବେଳେ ତାର ଅସ୍ଥିର ମନ କଣ ନା କଣ କରିବାକୁ ବସେ ସେ ନିଜେ ମଧ୍ୟ ଉପଲବ୍‌ଧି କରିପାରେନା ।,

ଆଜି ସେହିଭଳି ପରିସ୍ଥିତି, ଏବଂ ଗଭୀର ଆଲୋଚନାରେ ରତରହି କନକ,ତପନ, ମଧୁ ମନରେ ସଂକଳ୍ପ ଗ୍ରହଣ କରି ଆଗେଇବା ପାଇଁ ବଦ୍ଧପରିକର ହୋଇ ଆତ୍ମସଂଯମତା ବଳରେ ସେମାନେ ତାଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିବେ ଏ ବିଶ୍ୱାସ ତାଙ୍କ ହୃଦୟର ନିଭୃତ କୋଣରେ ପରିସ୍ଫୁଟ ହୋଇଉଠିଲା ।

ଯେଉଁଠି ସେମାନେ ସଫଳତା ଅର୍ଜନ କରୁଛନ୍ତି, ଆନନ୍ଦରେ ଆତ୍ମହରା ହୋଇ ଉଠୁନାହାନ୍ତି, ଯେଉଁଠି ବିଫଳତା ଦେଖାଦେଇଛି, ସେଠି ସେମାନେ ହତାଶ ହୋଇ ପଡୁନାହାନ୍ତି ।

ବିଫଳତା ଭିତରେ ମଧ୍ୟ ଆଗକୁ ବଢ଼ିବାର ସଂକଳ୍ପ ନେଇ ଆଗେଇ ଚାଲିଛନ୍ତି ।

ଉଆଁସ ଅନ୍ଧାର ରାତି ।

ଆକାଶରେ ଅଗଣିତ ତାରା ମିଟିମିଟି ହୋଇ ପୃଥିବୀ ପୃଷ୍ଠକୁ ଅନାଇ ରହିଥାନ୍ତି ।

ସମସ୍ତେ ସୁପ୍ତ !!

ଜନମାନସର ଶୋର ଶବଦ ବି ନାହିଁ । ବୁଲା କୁକୁରମାନେ ମଧ୍ୟ ନିଘୋଡ ନିଦରେ ଶୋଇ ଯାଇଥାନ୍ତି । ନିଦ୍ରାଦେବୀଙ୍କ କୋଳରେ ଶାନ୍ତରେ ଆଶ୍ରୟ ନେଇଛନ୍ତି ।

ଦିନ ତମାମ ଖଟଣିପରେ ମଣିଷ ପାଇଁ, ଜୀବଜନ୍ତୁ ପାଇଁ, ବିଶ୍ରାମ ନିତାନ୍ତ ଦରକାର । ଆଗାମୀ ଦିନ ପାଇଁ ଶକ୍ତି ସଂଚୟ ତାର ଅପରିହାର୍ଯ୍ୟ । ସେଭଳି ପରିସ୍ଥିତିରେ ହଠାତ୍ ଘନଅଜାଙ୍କ ନିଦ ଭାଙ୍ଗିଗଲା । ବୟସର ଅଧିକା ଦୃଷ୍ଟିରୁ ଏମିତି ସମୟ ସମୟରେ ନିଦ ଆପଣାଛାଏଁ ଭାଙ୍ଗିଯାଏ । ବାରଣ୍ଡାର ଗୋଟିଏ ଖଟିଆରେ ଶୋଇଥିଲେ । ଆଜି ହଠାତ୍ କେଜାଣି କାହିଁକି ନିଦ ଭାଙ୍ଗିଗଲା । ବାରଣ୍ଡାରୁ ପଦାକୁ ଚାଲିଆସିଲେ ।

ଆକାଶର ଅଗଣିତ ତାରାକୁ ଥରେ ଅନାଇ ନେଲେ । ଉତ୍ତର ଦିଗକୁ ସପ୍ତର୍ଷିମଣ୍ଡଳ ନକ୍ଷେତ୍ରକୁ ଅନାଇ ଧ୍ରୁବତାରାକୁ ନିରୀକ୍ଷଣ କରି, ରାତ୍ର କେତେହେବ ଅନୁମାନ କରିନେଲେ ।

ନିଶା ଶାଏଁ ଶାଏଁ ଗର୍ଜୁଛି । ଚତୁର୍ଦ୍ଦିଗ ନିସ୍ତବ୍‌ଧ । ଦୂର ବୃକ୍ଷ ଅନ୍ତରାଳୁ କେଉଁ ଅଜଣା ପକ୍ଷୀର ବିକଳ ରାବ ଶୁଭୁଥାଏ । ସେହି ରାବ ଶୁଣି ଘନଅଜାଙ୍କ ପଥର ହୃଦୟରେ ମଧ୍ୟ କେଜାଣି କାହିଁକି ଭୟସଂଚାର ହେଲା ।

ଠିକ୍ ଏତିକି ବେଳକୁ ଦୂରରୁ ଅନ୍ଧାରରେ କିଏ ଜଣେ ଦ୍ରୁତପାଦରେ ଦୌଡ଼ି ପଳାଇଲାଭଳି ମନେହେଲା । ଏକଛାୟା । ମୂର୍ତ୍ତି ଧୀରେ ଧୀରେ ଗଛର ଅନ୍ଧକାର ମଧ୍ୟରେ ଲୁଚିଗଲାଭଳି ସେ ଅନୁମାନ କଲେ ।ଦୂରରେ କୁକୁରଟିଏ କେଉଁଠି ଶୋଇରହିଥିଲା ଭେ ଭେ କରି ରଡ଼ଛାଡ଼ିଲା ।

ଭୟରେ ତାଙ୍କ ଛାତି ଧପ୍ ଧପ୍ ହୋଇଉଠିଲା ।

ମୁହଁରେ ସାହାଯବାନ୍ଧ ହାତରେ ଠେଙ୍ଗାଟିଏ ଧରି ଆଗକୁ ବଢ଼ିବାକୁ ଲାଗିଲେ ।,

ତାଙ୍କ ନିଶ୍ୱାସରେ ଧୂଆଁର ଗନ୍ଧବାଜିଲା । ସେ କିଛି ଅନୁମାନ କରି ପାରୁନଥିଲେ ।

ମନରେ କିନ୍ତୁ କେଜାଣି କାହିଁକି ଭୟସଂଚର ହେଉଥାଏ । ତାଙ୍କର ଏ ବୁଢ଼ା ବୟସରେ କେବେ ନ ଦେଖିବା ଶୁଣିବା ଭଳି ଗଡ଼ରେ କିଏ ଦୌଡ଼ ପଳାଇବା ଶବ୍ଦ, ଦୂରରୁ କୁକୁରର ରଡ଼ ସବୁ ତାଙ୍କ ହୃଦୟକୁ ଦୁର୍ବଳ କରିଦେଉଥାଏ ।

ଧୀରେ ଧୀରେ ନାକର ଧୂଆଁ ଗନ୍ଧ ତୀବ୍ର ହେବାକୁ ଲାଗିଲା । ସେ ଚାରିଆଡକୁ ଅନାଇଲେ । କିଛିବାଟ ଆଗକୁ ଚାଲିଆସିଲେ । କ'ଣ କେଉଁଠି ଧୂଆଁ ବାହାରୁଛି ଜାଣିବା ପାଇଁ । ଧୀରେ ଧୀରେ ନାକରେ ପୋଡ଼ା ଗନ୍ଧ ସ୍ପଷ୍ଟ ଜଣାଗଲା । ହଠାତ୍ ଧୂଆଁ ଭିତରୁ ନିଆଁ ଜଳିବା ସ୍ପଷ୍ଟ ଜଣାପଡ଼ଲା । ଆଖି ଯେ ଡ଼କ ତାଙ୍କ ଭୟରେ ବିସ୍ଫାରିତ ହୋଇଗଲା । ବିକଳ ହୋଇ ସେ ରଡ଼ଛାଡ଼ିଲେ ।

"ଆରେ ନିଆଁ ଲାଗିଲା, ଉଠ, ଉଠ । କିଏ କେଉଁଠି ଅଛ ଦୌଡ଼ଆସ" ପାଖ କବାଟକୁ ଅଚଞ୍ଚିଆ ହୋଇ ଠେଙ୍ଗାଧରି ବାଡେଇ, କେଉଁଠି ତଳେପିଟି ରଡ଼ଛାଡ଼ିଲେ । ତାଙ୍କ ରଡ଼ଶୁଣି କିଏ ବିକଳରେ ଉଠିପଡ଼ ହଠାତ୍ ନିଆଁ ଦେଖି ବାଉଳେଇ ହୋଇ ରଡ଼ଛାଡ଼ିଲେ ।

ଏଭଳି ଡ଼ାକ ହାକରେ ଗାଁଟି ସାରା ରୁଣ୍ଡ ହୋଇଗଲେ । ପୁଅ, ଝିଅମାନେ ଆଖି ମଳିମଳି ଘରୁ ଖଟରୁ ଉଠିଆସୁ ଆସୁ ନିଆଁ ଦେଖି ଭୟରେ ସ୍ତମ୍ଭିଭୂତ ହୋଇଗଲେ ।

ଘନଅଜା ପାଟି କରୁଥାନ୍ତି ପାଣିଆଣ, ପାଣିଆଣ ନିଆ ଶିଘ୍ର ଲିଭାଅ ......

ଯୁବକଲ୍ୟାଣ ନୀଳୟ ପୋଡ଼ ପୋଡ଼ଗଲା, ରକ୍ଷାକର । ......ଆରେ ଅନାଇରହିଲ କ'ଣ ? ଦୌଡ଼ଆସ ପାଣିଆଣ ।,

ଗାଁ ଲୋକ ଧାଁ ଦୌଡ଼କରି ଘରୁ ମାଠିଆ ବାଲଟିପାଣି ଆଣି, ଯାହା ଘରେ ବର୍ଷିଥିଲା ତାକୁ ଅଜାଡ଼ିବାକୁ ଲାଗିଲେ । କେତେ ଜଣ ରାସ୍ତା ଧୂଳି, ମାଟି ଗୋଟାଇ ନିଆଁ ଉପରକୁ ଫୋପାଡ଼ିଲେ ।

ତପନ,ଅଜା ମଧୁ ବିଚଳିତ ହୋଇ ପାଣି ଅଜାଡ଼ିବାରେ ଲାଗିଥାନ୍ତି ।

ଘନଅଜା ଅତିନିକଟକୁ ଚାଲିଯାଇ ପାଣିଢାଳିବାରେ ଲୋକଙ୍କୁ ଉତ୍ସାହିତ କରୁଥାନ୍ତି । ସେ ବର୍ତ୍ତମାନ ସ୍ପଷ୍ଟ ବୁଝିପାରିଲେ କିଏ ଜଣେ ନିଆଁ ଲଗାଇ ଦେଇ, ସେ ଦୌଡ଼ ପଳାଇ-ଯାଇଛି । ଚୋରଟା ପଳାଇଗଲା ତାକୁ ଧରିପାରିଲି ନାହିଁ ? ସେ ପାଟି କରୁଥାନ୍ତି ଏଣେ ଲୋକଙ୍କୁ ପାଣି ଢାଳିବାରେ ଉତ୍ସାହିତ କରିଚାଲିଥାନ୍ତି ।

ଲୋକମାନେ ଯେ ଯେଉଁଠି ଥିଲେ ସମସ୍ତେ ରୁଣ୍ଡହୋଇ ଯାଇଥାନ୍ତି । ସ୍ତ୍ରୀଲୋକମାନେ ପାଖକୁ ଚାଲିଆସି ନିଆଁ ଧାସରୁ ଛୁଆମାନଙ୍କୁ ବଂଚାଇବା ପାଇଁ ପାଖରେ ଧରି ରଖିଥାନ୍ତି । କେତେ କୂଅଁରୁ ପାଣି କାଢ଼ିବାରେ, କେତେ ମାଠିଆ ବୋହିବାରେ ଲାଗିଯାଇଥାନ୍ତି ।

ତପନ ଦେଖିଲା ଶୃଙ୍ଖଳିତ ଭାବରେ ପାଣି ଆଣିବା ବ୍ୟବସ୍ଥା ନକଲେ ସବୁ ଅକାରଣ ହୋଇଯିବ ।

ଲେଲିହାନ ଅଗ୍ନିଶିଖାରେ ଚାରିଆଡେ ଆଲୋକିତ ହୋଇ ଯାଇଥାଏ ।

ଲୋକଙ୍କୁ ଦୁଇ ଧାଡ଼ରେ ଛିଡ଼ାକରାଇ, ଗୋଟିଏ ଧାଡିରେ ପାଣିମାଠିଆ ଜଣେ ଜଣକୁ ବଢ଼ାଇ ନିଆଁରେ ଢାଳି ଦିଆ ଯାଉଥାଏ । ଆଉ ଏକ ଧାଡ଼ରେ ଖାଲିମାଠିଆ ଜଣେ ଜଣକୁ ବଢାଇ ଦେଉଥାଏ କୁଅଁରେ ପାଣି ଭର୍ତ୍ତିକରିବା ପାଖକୁ । ଏଭଳି ପାଣି ଅନବରଣତ ଆସି ଢଳା ଚାଲିଥାଏ ।

ପବନର ଗତି ଧୀରେ ଧୀରେ ବଢ଼ିବାକୁ ଲାଗିଥାଏ । ଗୋଟିଏଘରୁ, ଆରଘରକୁ ନିଆଁ ଲାଗିଯିବାର ଭୟଥାଏ । ଧୀରେ ଧୀରେ ସ୍ତ୍ରୀଲୋକମାନେ ନିଜ ନିଜ ଘରକୁ ରକ୍ଷା-କରିବା ପାଇଁ ପାଣିରଖି ସତର୍କତା ସହ ଅନାଇ ରହିଥାନ୍ତି ।

ନିଆଁ ଧାସରେ ସମସ୍ତ ଶରୀର ପୋଡ଼ ଜଳିଗଲାଭଳି ଲାଗୁଥାଏ । ତଥାପି, ଘନ,ମଧୁ ତପନ ହାରିକା ପ୍ରାଣମୂର୍ଚ୍ଛା ଲଗିଥାନ୍ତି ପାଣି ଅଜାଡ଼ିବାରେ ।

ଠିକ୍ ଏତିକିବେଳେ ଗୋଟିଏ କାଠ ଛିଟିକିପଡ଼ି ଘନଅଜାଙ୍କ ଦେହରେ ପଡ଼ିଗଲା ।

ହାଁ,ହାଁ, ଘୁଞ୍ଚି ଯାଅ, ଘୁଞ୍ଚି ଯାଅ ରଡ଼ି କରୁ କରୁ ସମସ୍ତେ ଘୁଞ୍ଚିଗଲେ ମାତ୍ର ଘନ ଅଜା ଘୁଞ୍ଚି ଯାଇ ତଳେ ପଡ଼ିଗଲେ । ଜଳନ୍ତ କାଠ ତାଙ୍କ ମୁଣ୍ଡରେ ବାଜିଗଲା । ସେ ଭୀଷଣ ଚିତ୍କାର କରିଉଠିଲେ ।

ଲୋକେ ଘର ନିଆଁ ଲିଭାଇବା ଛାଡିଦେଇ ଦୌଡ଼ିଆସିଲେ ଘନଅଜାଙ୍କୁ ରକ୍ଷା-କରିବା ପାଇଁ ।

ପାଖରେ ତପନ ଥିଲା, ଚଟ୍‌କିନା ଜଳନ୍ତା କାଠକୁ ଫିଙ୍ଗିଦେଇ ଘନ ଅଜାଙ୍କୁ ଟେକି ନେଇଆସିଲା ।

ତପନର ହାତ ଜଳନ୍ତା ନିଆଁରେ ଫୋଟକା ହୋଇଗଲା । ସେତେବେଳେ ସେ ନିଜକଥା ବୁଝିବାକୁ ଚିନ୍ତାକରି ପାରିଲାନାହିଁ । ଘନଅଜାଙ୍କୁ ରକ୍ଷାକରିବା ପାଇଁ ନେଇଗଲେ ଏକ ନିରାପଦ ସ୍ଥାନକୁ ।

ଘନଅଜା ଅଚେତ ହୋଇଯାଇଥାନ୍ତି । ମୁଣ୍ଡଫାଟି ରକ୍ତାକ୍ତ ଦେହ ତମାମ୍ ରକ୍ତାକ୍ତ ଜୁଡ଼ୁବୁଡ଼ୁ ହୋଇ ଯାଇଥାଏ । ନିଆଁ ଧାସରେ ମୁଣ୍ଡ ପୋଡ଼ କଳା ପଡ଼ି ଯାଇଥାଏ । ମୁହଁ ବିବର୍ଣ୍ଣ ଦେଖା ଯାଉଥାଏ ।

ପ୍ରଳୟଙ୍କରି ଲେଲିହାନ ଅଗ୍ନି ଶିଖାରେ ଯୁବକଲ୍ୟାଣ ନୀଳୟ ପୋଡ଼ ଭସ୍ମିଭୂତ ହୋଇଗଲା ।

ତା ସାଙ୍ଗକୁ ଘନଅଜାଙ୍କ ଆଘାତ ସମସ୍ତଙ୍କ ମନରେ ହତାସଭାବ ଖେଳାଇ ଦେଲା ।

ଏ ଦୃଶ୍ୟ ଦେଖି କେତେ ଭେ ଭେ କରି କାନ୍ଦପକାଉଥାନ୍ତି ।

ପ୍ରଭାତୀ ରାତିଘଡ଼ାଏରୁ ଉଠି ଧାନକୁଟୁଥିଲା । ହଠାତ୍ ଚାଲିଆଡେ ନିଆଁ ଆଲୁଅ ଦେଖି, ଭୟରେ ଦୌଡ଼ିଆସି କନକକୁ ଉଠାଇଲା । କନକ ଉଠି କିଛି ଅନୁମାନ କରିପାରିଲା ନାହିଁ । ତୁହେଁ ସାଙ୍ଗହୋଇ, ଘରେ ମାଙ୍କୁ କହିଦେଇ ତର ତର ହୋଇ ଚାଲିଆସିଲେ ।

ସେ ଆସି ଯାହା ଦେଖିଲା ନିଜକୁ ବିଶ୍ୱାସ କରିପାରିଲା ନାହିଁ । ରାତକ ଭିତରେ ଏତେକଥା ଘଟିଗଲା । ଯୁବକଲ୍ୟାଣ ନୀଳୟ ପୋଡ଼ି ଭସ୍ମୀଭୂତ ହୋଇଯାଇଥାଏ । ଘନଅଜାଙ୍କ ମୁଣ୍ଡରେ ଆଘାତ, ସେ ଅଚେତ ହୋଇ ପଡ଼ିଥାନ୍ତି ।

ତପନଭାଇ କ୍ଷତ ବିକ୍ଷତ । ଏ ସମସ୍ତ ଦେଖି ତାର ମନର କୋହ ଅନ୍ତର୍ମୁଖୀ ହୋଇ-ଯାଇଥାଏ ଆଖିରୁ ତାର ଲୁହ ଶୁଖିଯାଇଥାଏ ।

କନକକୁ ଦେଖି ଗାଁଟିଯାକର ମାଇପେ ବିକଳ ହୋଇ କାନ୍ଦିବାକୁ ଲାଗିଲେ ।

ତପନ ମନରେ କନକକୁ ଦେଖି ଭରସା ଆସିଯାଇଥାଏ । କନକ, ଘନଅଜାଙ୍କ ପାଖକୁ ଚାଲିଆସି ଯାହା ଦେଖିଲା ଭୟରେ ମନଟାର ଥରିଉଠିଲା । ମୁଣ୍ଡଫାଟି ରକ୍ତାକ୍ତ, ମୁହଁପୋଡ଼ି କଳା ହୋଇଯାଇଥାଏ । ସହଜରେ ଚିହ୍ନିବା କଷ୍ଟକର ହେଉଥାଏ ।

ଏ ସମସ୍ତ ଦୃଶ୍ୟ ଦେଖି ତାର ଛାତିଭିତରଟା ଟିକି ଟିକି ଖଣ୍ଡ ବିଖଣ୍ଡିତ ହୋଇଗଲା-ଭଳି ମନେହେଲା । ସେ କିଛିକ୍ଷଣ ନିର୍ବାକ ହୋଇଯାଇଥାଏ । ଦୁଃଖ ଏବଂ ଦୁଃସହ ବେଦନାରେ ତାର ଛାତିଭିତରଟା ପୋଡ଼ି ମକଚି ହୋଇଗଲାଭଳି ଲାଗିଲା ମାତ୍ର କ୍ଷଣକପରେ ନିଜକୁ ସମ୍ଭାଳି ନେଇ ନୀରବରେ ସେ ତା କାମରେ ଲାଗିଗଲା ।

ଘନଅଜାଙ୍କ ଖଟପାଖରେ ବସି ବିଂଚଣା କରିବାକୁ ଲାଗିଲା । ଲୋକଙ୍କ ଭିଡ କମେଇବା ପାଇଁ ମଧ୍ୟ ସମସ୍ତଙ୍କୁ ଚାଲିଯିବା ପାଇଁ କହୁଥାଏ ।

ମାତ୍ର ସେତେବେଳେ କିଏ କାହା କଥାକୁ ଶୁଣିବାକୁ ପ୍ରସ୍ତୁତ ନଥିଲେ । ତାଙ୍କର ଆଦରର ଘନଅଜା ଅଚେତ୍ । ତାଙ୍କୁଛାଡ଼ି କିଏ ସତେଯାଇ ଘରେ ନିଶ୍ଚିନ୍ତ ରହିପାରିବ ?

ଏତେ ବଡ଼କାଣ୍ଡ ଘଟିଗଲା କ୍ଷଣକ ଭିତରେ ପ୍ରଳୟଙ୍କ ରିଷ ଅଗ୍ନିର ଲେଲିହାନ ଶିଖାରୁ ଯୁବକଲ୍ୟାଣ ନୀଳୟକୁ ବଞ୍ଚାଯାଇ ପାରିଲାନାହିଁ ।

ତପନ ମୁହଁରେ ବହୁ ଦୁଃଶ୍ଚିନ୍ତା ଖେଳିଯାଇଥାଏ ।

ତପନର ହାତ, ଗୋଡରେ ନିଆଁ ପଡ଼ି କ୍ଷତବିକ୍ଷତ ହୋଇଯାଇଥାଏ । ଏତେ କଷ୍ଟସତ୍ତ୍ୱେ ସେ ଘନଅଜାଙ୍କ ଚେତା ଫେରାଇ ଆଣିବା ପାଇଁ ଚେଷ୍ଟା ଚଳାଇଥାଏ । କ୍ଷଣେ କ୍ଷଣେ ଦୁଃଖ କଷ୍ଟରେ ତାର କପାଳ କୁଂଚିତ ହୋଇ ଉଠୁଥାଏ ।

ଧୀରେ ଧୀରେ ଘନଅଜାଙ୍କ ମୁହଁ ଖୋଲିବା ପାଇଁ ଚେଷ୍ଟକଲେ । ପାଟି ଶୁଖିଯାଇ ଅଠାଳିଆ ହୋଇଯାଇଥାଏ ।

ହାତଠାରି ପାଣିପିଇବା ପାଇଁ ଇସାରା କଲେ ।

ଧୀରେ ଧୀରେ ଆଖିପତା ଖୋଲିଲେ ।

ତାଙ୍କ ଚାରିପଟେ ଏତେ ଲୋକଙ୍କୁ ଦେଖି ସେ କିଛି ବୁଝିପାରିଲେ ନାହିଁ । ଚାରିଆଡ଼କୁ ଶୂନ୍ୟ ଦୃଷ୍ଟିରେ ଅନାଇନେଲେ । କ୍ଷଣକପରେ ଅସ୍ପଷ୍ଟ ସ୍ୱରରେ ପାଟିରୁ ବାହାରିପଡ଼ିଲା ।

ସବୁ ଯୋଉଡ଼ଗଲା .....

ତାଙ୍କ ମୁହଁରୁ ଏକ ଦୀର୍ଘଶ୍ୱାସ ବାହାରିପଡ଼ିଲା ।

କିଏ ଜଣେ ଦୌଡ଼ପଳାଇଲା .....ହାତ ଠାରିଲେ .....

ସେ କିଛି କରିପାରିଲେ ନାହିଁ ।, ଡବ୍‌ଡବ୍ ହୋଇ ଚାରିଆଡକୁ ଅନାଇଲେ । ମୁଣ୍ଡର ଆଘାତ ଏବଂ ପୋଡାଘା'ର ଜ୍ୱଳା ତାଙ୍କ ମୁହଁକୁ ବିବର୍ଣ୍ଣ କରିଦେଇଥାଏ । ସେ ଅସହ୍ୟ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ ।

କନକ ତାର ବସିବା ସ୍ଥାନରୁ ଉଠି, ଘନଅଜାଙ୍କ ଅତି ନିକଟକୁ ଚାଲିଆସିଲା । ତାକୁ ଦେଖି ଘନଅଜାଙ୍କ ମୁହଁରେ ସ୍ମିତ ହାସ୍ୟରେଖା ଫୁଟିଉଠିଲା । କିଏ ତାହା ଅନୁମାନ କରିପାରିଲେ ନାହିଁ ।

କନକ ମୁହଁପାଖକୁ ମୁହଁନେଇ କହିଲା, ଅଜା କଷ୍ଟ ହେଉଛି ? ଗ୍ଲାସ୍‌ରେ ପାଣିଢ଼ାଳି, ପାଣି ପିଇବାକୁ ଦେଲା । ସେ ତୃପ୍ତିରେ ପାଣି ପିଇଲେ ।

ଘନଅଜାଙ୍କ ଏଭଳି ଅବସ୍ଥାରେ କନକର ଆଖି ଛଳଛଳ ହୋଇଗଲା । ଆଜି ସେ ଏକ ମଉଳା ଫୁଲଭଳି ଦେଖାଯାଉଛି । ଏତେ ତାକୁ ମନେ ହେଲା ତାର ପାଦତଳ ମାଟି ପର୍ଯ୍ୟନ୍ତ ଥରିଉଠୁଛି । ମାତ୍ର ନିଜକୁ ସେ ଧୀରେ ଧୀରେ ସମ୍ଭାଳି କରିନେଲା ।,

ଘନଅଜା ବିକୃତ ମୁହଁରେ ଚାରିଆଡ଼କୁ ଆଖିବୁଲାଇ ନେଲେ । ଜଣକୁ ସେ ଖୋଜିବାରେ ଲାଗିଲେ ।

ତପନ ତାଙ୍କ ମନକଥା ବୁଝିପାରି ପାଖକୁ ଚାଲିଆସିଲା । ସେ ନିଜ ଯନ୍ତ୍ରଣାକୁ ପାଟୁ ପର୍ଯ୍ୟନ୍ତ ଦାବିଦେଇ ପଚାରିଲା ।

କେମିତି ଲାଗୁଛି ? କଷ୍ଟ ହେଉଛି ।।

ଘନଅଜା ତାକୁ ଦେଖି, ତାଙ୍କ ଆଖିରୁ ଅଶ୍ରୁ ଗଡ଼ିବାକୁ ଲାଗିଲା । ଏ ତାଙ୍କ ପୋଡ଼ା ଜ୍ୱଳାରକଷ୍ଟ ନା ଯୁବକଲ୍ୟାଣ ନୀଳୟର ଦଗ୍ଧିଭୂତ ଅବସ୍ଥା ଦେଖି ମର୍ମାହତର କଷ୍ଟ, ତାହା ତପନ ବୁଝିବାକୁ ବାକିରହିଲା ନାହିଁ ।

ତାଙ୍କ ମନରେ ଭରସା ଦେବାପାଇଁ ତପନ କହିଲା ।

ଅଜା, ତମେ ଭଲ ହୋଇଯାଅ, ସବୁଠିକ୍ ହୋଇଯିବ । ଘନଅଜାଙ୍କ ମୁହଁ ଧୀରେ ଧୀରେ ବିକୃତ ହୋଇ ଆସୁଥାଏ । ଧୀରେ ଧୀରେ ତାଙ୍କ ଚେତା ବୁଡ଼ିଆସିଲା । ସେ ପୁଣି ସଂଜ୍ଞାହୀନ ହୋଇଗଲେ । କନକ ଚଞ୍ଚଳ ହୋଇଉଠିଲା,ତପନ ମନରେ ଭୟ ଆସିଯାଇଥାଏ । କାଳେ ଘନଅଜାଙ୍କ କଣ ହୋଇଯିବକି ? କିଛି ଅଘଟଣ ଘଟି ନ ଯାଉ । କନକ ମନରେ ଆଶଙ୍କା ଦେଖାଦେଇଥାଏ । ସେ ଭଗବାନଙ୍କୁ ମନେ ମନେ ସ୍ମରଣ କରି ପ୍ରାର୍ଥନା କଲା । ହେ ପ୍ରଭୁ ଅଜାଙ୍କୁ ଏ ବିପଦରୁ ରକ୍ଷା କରନ୍ତୁ ।

ତପନ ଥରେ ଘନଅଜାଙ୍କ ଅଚେତ ଶରୀରକୁ ଅନାଇ ମଧୁକୁ ଡାକି କହିଲା, ନାଁରେ ବଡ ଡାକ୍ତରଙ୍କୁ ଆଣିବାକୁ ପଡ଼ିବ । ଏଇ ଅବସ୍ଥାରେ ତାଙ୍କୁ ଆଉ କେଉଁଠିକୁ ନେଇହେବ ନାହିଁ ।

ମଧୁ କହିଲା, ଲୋକ ଚାଲିଗଲେଣି ବଡ ଡାକ୍ତରଙ୍କୁ ଆଣିବାପାଇଁ, ଶିଘ୍ର ଚାଲିଆସିବେ । ବୋଧହୁଏ ଆସୁଥିବେ ।

ମଧୁଠୁ ଏତକ ଶୁଣି ତପନ ମୁହଁ ଉଜ୍ଜଳ ହୋଇଉଠିଲା ।

ଗାଁର ସ୍ତ୍ରୀ, ପିଲା ସମସ୍ତେ ନିର୍ନିମେଷ ନୟନରେ ଘନଅଜାଙ୍କ ଆଡକୁ ଅନାଇ ନୀରବରେ ବସି ରହିଥାନ୍ତି । ସମସ୍ତଙ୍କ ମୁହଁରେ ଉଦ୍‌ବେଗ, ଉତ୍‌କଣ୍ଠାର ଭାବ ଖେଳି-ଯାଇଥାଏ ।

କାଠ, ବାଉଁଶ ସବୁ ପୋଡ଼ କଡ୍ କଡ୍ ଶବ୍ଦ କରୁଥାଏ । ସେହି ଶବ୍ଦ ଶୁଣି ସମସ୍ତଙ୍କ ମନରେ ଏକ ଭୟ ସଂଚାର କରୁଥାଏ ।

ଯୁବକଲ୍ୟାଣ ନୀଳୟ ପୋଡ଼ ଭସ୍ମିଭୂତ ହୋଇଯାଇଥାଏ । ମନୁଷ୍ୟର ସମସ୍ତ ଚେଷ୍ଟା ଉଦ୍ୟମ ଏକାଥରକେ ବୃଥା ହୋଇଗଲା । କ୍ଷଣିକ ମଧ୍ୟରେ କେତେ ପରିବର୍ତ୍ତନ ହୋଇ-ଗଲା । ଯେଉଁଠି ସକାଳ, ସଂନ୍ଧ୍ୟା ଲୋକଙ୍କ କୋଳାହଳରେ ଉଛୁଳି ପଡୁଥିଲା ସେଠି ଆଜି ଶ୍ମଶାନରେ ପରିଣତ ହେଲାଭଳି ମନେ ହେଉଛି ।

ତପନ ଗାଁର ସମସ୍ତଙ୍କ ଆଡକୁ ଭଲକରି ଦେଖିନେଲା । ସେମାନଙ୍କ ମଧ୍ୟରେ ନବକୁ ଦେଖିନପାରି ବିସ୍ମିତ ହୋଇ ପ୍ରଶ୍ନକଲା ।

ମୁଁ କାହିଁ ନବକୁତ ଦେଖି ପାରୁନାହିଁ ? ସେ କଣ ଆଜି ଗାଁରେ ନାହିଁ କି ?

ମଧୁ ଆଶ୍ଚର୍ଯ୍ୟ ହୋଇ ରବିଆଡକୁ ଅନାଇ ରହିଲା ।

ହଁତ, ସେତ ନାହିଁ ।,

ଆଉ ଜଣେ ଯୁବକ କହିଲା, ସେତ ଘରୁ ଆସିଲା ମୁଁ ଦେଖିଛି । କାହିଁ ଏତେବେଳ ହେଲା ତାର ତ ଦେଖା ମିଳୁନାହିଁ ??

ଆଶ୍ଚର୍ଯ୍ୟ ହୋଇ ସମସ୍ତେ ସମସ୍ତ ମୁହଁକୁ ଅନାଇ ରହିଲେ ।

ଠିକ୍ ଏତିକି ବେଳେ ଦୂରରେ ପାଟି ଶୁଭିଲା । ସମସ୍ତଙ୍କ ଦୃଷ୍ଟି ସେହି ଆଡକୁ ଆକୃଷ୍ଟ ହେଲା ।

ଘର ପୋଡୁଥିବା ନିଆଁ ଆଲୁଅରେ ଦେଖିଲେ ନବ ଏବଂ ଆଉ ଜଣେ ଗାଁର ଯୁବକ ଜଣକୁ ଧକ୍କା ମାରି ମାରି ଆଣୁଥାନ୍ତି ।

ଗାଁରେ ଏକ ଚହଳ ଖେଳିଗଲା ।

କନକ, ତପନ ଆଶ୍ଚର୍ଯ୍ୟରେ ଅନାଇ ରହିଲେ ।

ନବ ପାଟି କରି କରି ଆସୁଥାଏ ।

ଶଳା, ଚୋର, ଆମର ଘର ପୋଡିଦେଇ ଖସି ପଳାଇଯିବୁ ବୋଲି ଭାବିଥିଲୁ । ମୋ ହାବୁଡରେ ପଡଗଲୁ ।

ଗାଁ ଲୋକଙ୍କୁ ଏକାଠିଥିବା ଦେଖି, ତାର ରାଗ ଆହୁରି ବଢ଼ିଗଲା । ଶଙ୍କରର ହାତଦୁଇଟି ପିଠିପଟରେ ତାର ମୁଣ୍ଡରେ ଭିଡ଼ିଥିବା ଗାମୁଛାରେ ବାନ୍ଧି ଲୋକଙ୍କ ସାମନାରେ ଛିଡାକରି ପାଟିକଲା ।

ଏଇ ସେଇଲୋକ. ଆମ ଯୁବକଲ୍ୟାଣ ନୀଳୟକୁ ପୋଡ଼ି ପଳାଉଥିଲା । ମୋ ହାବୁଡରେ ପଡ଼ିଗଲା । ରାଗରେ ତା ଗାଲରେ ଏକ ଚାପୁଡାଟିଏ ମାରିଦେଲା । ତା ମାଡ଼ ସମ୍ଭାଳି ନପାରି ଶଙ୍କର ତଳେ କରଡ଼ ହୋଇ ଭେ ଭେ ରଡ଼ିଛାଡ଼ିଲା ।

ମୋତେ ଆଉ ମାର ନା ମୁଁ ମରିଯିବି ।

ମୋତେ ରକ୍ଷାକର । ମୋତେ ରକ୍ଷାକର । ତଳେ ଲମ୍ବ ହୋଇ ପଡଗଲା ।

ଗାଁ ଲୋକ ତଟସ୍ଥ ହୋଇ ଏଭଳି ଏକ ଅମାନୁଷିକ କାଣ୍ଡ ଘଟାଇଥିବା ଧୂର୍ତ୍ତକୁ ନବ କିପରି ଧରିପାରି ହାତବାନ୍ଧ ସମସ୍ତଙ୍କ ଆଗରେ ଛିଡ଼ାକରାଇ ପାରିଲା ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଥାନ୍ତି । କନକ ଶଙ୍କରକୁ ଦେଖି ତାର ସନ୍ଦେହ ଆହୁରି ଘନିଭୂତ ହୋଇଗଲା । ସଠିକ୍ ଅନୁମାନ କରି ନେଇଛି, କେବଳ ଶଙ୍କର ନିଜ ବୁଦ୍ଧିରେ ଏ କାଣ୍ଡ ଘଟାଇ ନାହିଁ । ନିଶ୍ଚୟ ଆଉ ଜଣକ ମନ୍ତ୍ରଣାରେ ତପନ ଏବଂ ତା ଉପରେ ପ୍ରତିଶୋଧ ନେବାପାଇଁ ଏ କାଣ୍ଡ ସୃଷ୍ଟି କରାଯାଇଛି ।

ଏହାର ମୂଳ ନାୟକ ମୋହନବାବୁ ଛଡ଼ା ଅନ୍ୟ କେହି ହୋଇ ନପାରେ । ତା ମନର ସନ୍ଦେହ ଶଙ୍କରକୁ ଦେଖିଲା ପରେ ଦୃଢ଼ଭୂତ ହେବାକୁ ଲାଗିଲା ।

ନବ ସମସ୍ତ ଘଟଣା ଗୋଟି ଗୋଟି ସବୁ କହି ଯାଉଥାଏ । ଘରୁ ବାହାରିଲା ବେଳକୁ

ନିଆଁ ଆଲୁଅରେ ଦୂରରେ ଜଣେ ଲୋକ ଦୌଡ଼ି ପଳାଇ ଯାଉଥିବା ଏକ ଛାୟା ମୋତେ କେମିତି ଦିଶିଗଲା । ମୁଁ ଆଉ ଧର୍ଯ୍ୟ ଧରିପାରିଲି ନାହିଁ । ଛପିଛପି ତା ପିଛା କଲି । ଯେତିକି ଯେତିକି ପାଖକୁ ଯାଉଥାଏ । ସ୍ପଷ୍ଟ ଜଣକୁ ଦେଖିପାରିଲି । ମୋର ସନ୍ଦେହ ଘନିଭୂତ ହୋଇଗଲା । ଏ ନିଶ୍ଚୟ ଆମଘର ପୋଡ଼, ଲୁଚିପଳାଇ ଆସୁଛି ରାଗରେ ମୋର ଛାତି ଥରିଉଠିଲା । ଛପିଛପି ତାର ଅତିନିକଟକୁ ଚାଲିଯାଇ ଏକ ଝାମ୍ପଦେଇ ମାଡ଼ିବସିଲା । ମୋ ପଛେ ପଛେ କିଶନ ଆସୁଥିଲା ଦୁହେଁ ମିଶି ନିଷ୍ଠୁର ମାଡ ଦେଇ ହାତବାନ୍ଧି ଘେରକୁ ଆଣି ତୁମ ଆଗରେ ପହଞ୍ଚାଇ ଦେଇଛୁ । ଏଥର ତୁମେ ଯାହା ବିଚାରକର । ନବକଥା ପରି ରାଇଜର କଥାଗୁଡ଼ିକ ସମସ୍ତେ ତଟସ୍ଥ ହୋଇ ଶୁଣୁଥାନ୍ତି ।

ଜଣେ ବୃଦ୍ଧାରମଣୀ ହାତଯୋଡ଼ି କହିଲା ଧନ୍ୟ ପ୍ରଭୁ ତୁମର କରୁଣା ଅପାର । ପାପ କେବେ ଲୁଚି ରହେନାହିଁ । ତୁମର ଦୟା ଅପାର ।

ଆଉ ଜଣେ ପାଟିକରି କହିଲା ।

କେତେ କାଣ୍ଡ କଲୁରେ କୁଳାଙ୍ଗାର ! କ୍ଷଣକେ ସବୁ ଧ୍ୱଂସ କରିଦେଲୁ ।

କିଏ ଛେପ ପକାଉଥାଏ, କିଏ ରାଗରେ ଗରଗର ହେଉଥାଏ । କିଏ ତାକୁ ଦାନ୍ତରେ ଚିକିଚିକି ଛିଣ୍ଡାଇ ଦେବାପାଇଁ ଦାନ୍ତ କଡମଡ କରି କାମୁଡୁଥାଏ ।

ଏକ ଉତ୍ତେଜନାର ବାତାବରଣ ଖେଳି ଯାଇଥାଏ ।

ତପନ, ନବର ଆନୁପସ୍ଥିତି ଭିତରେ ଏତେ ବଡ଼ କାର୍ଯ୍ୟଟିଏ କରିପାରିବା ଯୋଗୁଁ ତାକୁ କୁଣ୍ଢାଇ ପକାଇଲେ ।

ବାସ୍ତବିକ ତୋର ସାହାସକୁ ଏବଂ ଯଥା ସମୟରେ ତୋର ଅନିସନ୍ଧିତ୍ସୁ ମନର ସନ୍ଦେହକୁ ସମାଧାନ କରିବାରେ ସଫଳତା ଅର୍ଜନ କରିଥିବା ଯୋଗୁଁ ତୁ ପ୍ରଶଂସାର ପାତ୍ର ।

ଏଇ ଏ କାଣ୍ଡର ଖଳନାୟକ ଆଉ ଜଣେ ।।

ନବ ଏତକ କହି ତପନ ମୁହଁକୁ ଅନାଇ କହିଲା ।

ମାଉକୁ ମହାଦେବଙ୍କ ଭକ୍ତ, ଏ ଶଙ୍କରଙ୍କ ଛାର । ଯେତେବେଳେ ମୋ ହାତରେ ଦୁଇତିନି ଚପୁଡା ଗାଲରେ ବାଜିଗଲା, ସବୁ ଗୋଟି ଗୋଟି ବକି ଦେଇଗଲା ।

ତପନ ଉଦ୍‌ବିଗ୍ନ ହୋଇ ତା କଥା ଶୁଣିଯାଉଥାଏ । ଗାଁରେ ଯେ ଭଲଲୋକ ଦେଖାଇ ହୁଏ, ମହାଜନ ବୋଲି ଜେଙ୍ଗୁର ପିତା ହେଉଥାଏ; ସେହି ମୋହନବାବୁଙ୍କ ପ୍ରରୋଚନାରେ ଏ କାଣ୍ଡ ସୃଷ୍ଟି ହୋଇଛି ।

ତପନ ଆଶ୍ଚର୍ଯ୍ୟରେ ନବର ମୁହଁକୁ ଅନାଇ ରହିଲା ।

କନକ, ମନରେ ଯାହା ସନ୍ଦେହ ସୃଷ୍ଟି ହୋଇଥିଲା ତାହା ସତ୍ୟରେ ପରିଣତ ହେଲା ।

ମଧୁ ମୁହଁ ରଗରେ ନାଲି ପଡ଼ଗଲା ।

ମଧୁ କହିଲା । ଭଇ ମୁଁ ତୁମକୁ କେତେ ଦିନରୁ କହିଛି, ସାପ ଛୋଟ ହେଉକି ବଡ ହେଉ ସେ ବିଷଧର । ଏଭଳି ମଣିଷକୁ ସହଜରେ ବିଶ୍ୱାସ କରଯାଇ ନପାରେ ।।

ଘୁଷୁରୀ ପ୍ରକୃତି ପଙ୍କେ ଲେଟେ
ମଣିଷ ପ୍ରକୃତି ମଲେ ତୁଟେ ।

ତାହାହିଁ ଆଜି ସତ୍ୟରେ ପରିଣତ ହୋଇଛି । ଏତିକି ବେଳେ ଡାକ୍ତରବାବୁ ଆସି ପହଞ୍ଚି ଯାଇଛନ୍ତି । ତପନ, କନକ ଡ଼ାକ୍ତରବାବୁଙ୍କ ଘନଅଜାଙ୍କ ପାଖକୁ ନେଇଯାଇଛନ୍ତି ।

ସେ ଘନଅଜାଙ୍କୁ ପରୀକ୍ଷା କରିଚାଲିଛନ୍ତି । ମୁଣ୍ଡର ଆଘାତ ଭୀଷଣ । ମୁହଁଟି ପୋଡ଼ ଜଳା ପଡ଼ଯାଇଛି । ମୁହଁ ବିବର୍ଣ୍ଣ ଦେଖାଯାଉଛି ।

ମୁଣ୍ଡରେ ଔଷଧ ଲଗାଇବାକୁ ଦେଲେ । କନକ ଯତ୍ନରସହ ଔଷଧ ଲଗାଇ ଦେଉଥାଏ । ଡାକ୍ତରବାବୁ ଇଞ୍ଜେକ୍‌ସନ ଦେଇ ଚାଲିଥାନ୍ତି । ଗୋଟିଏ ପରେ ଗୋଟିଏ ଏଭଳି ତିନୋଟି ଇଞ୍ଜେକ୍‌ସନ ଦେଲେ । କିଛିକ୍ଷଣ ନୀରବରେ ପ୍ରତିକ୍ରିୟା ଦେଖୁଥାନ୍ତି । ଘନଅଜାଙ୍କ ମୁହଁ, ପୋଡାଜ୍ୱଳାର ଯନ୍ତ୍ରଣାରେ ବିକୃତ ହୋଇଯାଉଥାଏ । ତାହା ସ୍ପଷ୍ଟ ଜଣାପଡ଼ ଯାଉଥାଏ ।

କିଛିକ୍ଷଣ ପରେ ଧୀରେ ଧୀରେ ଘନଅଜାଙ୍କ ଆଖି ଖୋଲିଲା ।

ସମସ୍ତଙ୍କ ମନରେ ଆନନ୍ଦ ଚହଟିଗଲା ।

କିଛିସମୟ ପର୍ଯ୍ୟନ୍ତ ପରିବେଶ ନିସ୍ତବ୍‌ଧ ହୋଇଗଲା । କେତେକଙ୍କ ଆଖିରୁ ଆନନ୍ଦ ଅଶ୍ରୁ ନିର୍ଗତ ହୋଇପଡ଼ିଲା ।

ଡାକ୍ତରବାବୁ ପଚାରିଲେ, କେମିତି ଲାଗୁଛି ।

ଘନଅଜା ଥରେ ଚାରିଆଡକୁ ଆଖିବୁଲାଇ ଆଣିଲେ । ସମସ୍ତଙ୍କୁ ଆଖିପୂରାଇ ଦେଖିନେଲେ ।

କନକ ମୁଣ୍ଡରେ ହାତ ମାରିବାକୁ ଚେଷ୍ଟାକଲେ, ମାତ୍ର ହାତ ଉପରକୁ ଉଠିପାରିଲା ନାହିଁ ।

କନକ ଥରିଲାକଣ୍ଠରେ କହିଲା, ପାଣିପିଇବ ।

ଡ଼ାକ୍ତରବାବୁ ଅଛନ୍ତି, ଇଞ୍ଜେକ୍‌ସନ ଦେଇଛନ୍ତି ।

ପାଟି ତାଙ୍କ ଶୁଖି ଶୁଖି ଆସୁଥାଏ ।

ତୁଳାରେ ପାଣିଆଣି ପାଟିର ଓଠରେ କନକ ବୁଲାଇ ଆଣିଲା । ନବ, ଘନଅଜାଙ୍କ ଏ ଅବସ୍ଥା ଦେଖି ପ୍ରଥମେ ବିସ୍ମିତ ହୋଇଯାଇଥିଲା । ଅଚେତ୍ ହୋଇ ପଡ଼ିରହିଥିବା ଦେଖି

ମନରେ ଭୟ ସଂଚାର ହୋଇଯାଇଥିଲା ।

ଘନଅଜାଙ୍କ ଅକ୍ଷି ଯେତେବେଳେ ଖୋଲିଗଲା, ତାର ଧୈର୍ଯ୍ୟଆଉ ରହିଲା ନାହିଁ, ତାଙ୍କ ଗୋଡ଼ତଳେ ବସିପଡ଼ ଭେ ଭେ କରି କାନ୍ଦଉଠିଲା ।

ଅଜା ତୁମେ ଏଥର ଉଠ, ଯେ ଘର ପୋଡ଼ଦେଇ ଆମକୁ ଏତେ ସରିକରିଛି ସେ ଧରାପଡ଼ିଛି ।—...ସେ ଆଉ କିଛି କହିପାରିଲା ନାହିଁ... ଛାତିରେ କୋହ ଉଠିଆସିଲା ।

ତପନ ପାଖରେ ବସି ମୁଣ୍ଡହଲାଇ ନବ କଥାରେ ସମ୍ମତି ଜଣାଇଲେ ।

ଅଜାଙ୍କ ମୁହଁରେ ଏକ ସ୍ମିତ ହାସ୍ୟରେଖା ଖେଳିଗଲା । ସେ ଯାହା ଦେଖିଥିଲେ, ଅନ୍ଧାରରେ କିଏ ଜଣେ ଦ୍ରୁତପଦରେ ଦୌଡ଼ପଳାଇଲା ବୋଲି, ତାହା ହେଲେ ସେହି ଘରପୋଡ଼ା କୁଳାଙ୍ଗାର ଧରା ପଡ଼ଯାଇଛି ।

ସେ ଧରାପଡ଼ଲେ କ'ଣ ହେବ, ଘର ତ ପୋଡ଼ଯାଇଛି ।ତାଙ୍କ ମୁଣ୍ଡର ଯୋଡ଼ା କଷ୍ଟଠୁ "ନୀଳୟ" ପୋଡ଼ଯିବା କଷ୍ଟ ତାଙ୍କ ମନରେ ଦାରୁଣ ଆଘାତ ଦେଇଛି । ବାହାର ଆଘାତଠୁ ମନଭିତର ଆଘାତ ତାଙ୍କୁ ଅଧିକ କଷ୍ଟ ଦେଉଛି । କିନ୍ତୁ ସେ କଥା କିଏ ସହଜରେ ବୁଝିପାରେ ? ଆଖି ତାଙ୍କ ଛଳଛଳ ହୋଇ ଉଠିଲା । ଘନଅଜାଙ୍କ ଆଖିର ଲୁହ କନକ ତାର ସରୁ ପତଳାକନାରେ ପୋଛି ରୁଦ୍ଧକଣ୍ଠରେ କହିଲା ।

ଅଜା ଡାକ୍ତରବାବୁ, ଔଷଧ, ଇଞ୍ଜେକ୍‌ସନ ଦେଇଛନ୍ତି ତୁମେ ଭଲ ହୋଇଯିବ ।,

ସେ ସବୁ ଶୁଣିଲେ, କିଛି ପ୍ରକାଶ କରିପାରିଲେ ନାହିଁ ।

ଗୋଡ଼, ହାତ ଥରିବାକୁ ଲାଗିଲା । ପାଟି ଧୀରେ ଧୀରେ ଥରି ଯାଉଥାଏ ।

ମଧୁ ପାଖରେଥାଇ କହିଲା, ଡ଼ାକ୍ତରବାବୁ ଦେଖିଲେ ଅଜାଙ୍କ ପାଟି କାହିଁକି ଥରୁଛି ?

ଡାକ୍ତରବାବୁ ନାଡ଼ ପରୀକ୍ଷା କରୁଥାନ୍ତି ।

ଘନଅଜା ହାତ ଉଠାଇ ତପନକୁ କ'ଣ ଇସାରା କରିବାକୁ ଚେଷ୍ଟାକଲେ ।

ଆଖିରୁ ଅନବରତ ଅଶ୍ରୁ ନିର୍ଗତ ହୋଇ ଚାଲିଥାଏ । ଧୀରେ ଧୀରେ ଘନଅଜାଙ୍କ ମୁହଁ ତଳକୁ ନଇଁ ଆସିଲା । ଡାକ୍ତରବାବୁଙ୍କ ସମସ୍ତ ଚେଷ୍ଟା ସତ୍ତ୍ୱେ ତାଙ୍କୁ ବଞ୍ଚାଯାଇ ପାରିଲା ନାହିଁ । ଡାକ୍ତରବାବୁ ବିଶର୍ଣ୍ଣ ବଦନରେ ବସିବା ସ୍ଥାନରୁ ଉଠିଆସିଲେ ।

ତପନ ବଲ ବଲ, କରି ଘନଅଜାଙ୍କ ଶୁଖିଲା ମୁହଁକୁ ଅନାଇ ରହିଥାଏ । ତାର ଆତ୍ମ-ସଂଯମର କଠିନ ବନ୍ଧ ଭାଙ୍ଗି ଗଲା । ପାଣ୍ଡୁରୁବିଷର୍ଣ୍ଣ ବଦନରେ ଥରେ ଡାକ୍ତରବାବୁଙ୍କ ମୁହଁକୁ ଦେଖିନେଲା, ନିରଶର ଭାବ ଖେଳିଗଲା । ସେ ନିଜକୁ ନିଜେ ବିଶ୍ୱାସ କରି ପାରୁନଥାଏ, ଘନଅଜା ସମସ୍ତଙ୍କୁ ଅନାଥ କରି ଏତେ ଶିଘ୍ର ଚାଲିଯିବେ ବୋଲି ?

କନକ ନିର୍ବାକ ନିଶ୍ଚଳ ହୋଇ ବସି ରହିଥାଏ ।

ମଧୁ ଏକ ଧଳାଲୁଗା ଆଣି ତାଙ୍କ ସର୍ବାଙ୍ଗ ଶରୀରରେ ଘୋଡ଼ାଇ ଦେଲା ।

ତପନ ହତ୍‌ଚକିତ ହୋଇଯାଇଥାଏ, ତାର ପାଟିରୁ ଗୋଟି ଏବି ଶବ୍ଦ ବାହାରୁନଥାଏ ।

ଗାଁଟି ସାରା ପିଲା ମାଇପେ. ଭେ ଭେ କରି ରଡ଼ ଛାଡ଼ଲେ । ସେମାନଙ୍କ କ୍ରନ୍ଦନ ଧ୍ୱନିରେ ସମଗ୍ର ଅଞ୍ଚଳଟି ଶୋକାକୂଳ ହୋଇଉଠିଲା ।

ତପନର ମା, ମାଳତୀ, ପ୍ରଭତୀ, ଦ୍ୱାରୀକା ଆସି, କନକକୁ ସେଠୁ ଉଠାଇ ନେଇଗଲେ ।

କନକ ଛୋଟଛୁଆଙ୍କ ଭଳି ତା ମାଉସୀ ଛାତିରେ ମୁହଁରଖି କାନ୍ଦଉଠିଲା ।

ହୃଦୟ ବିଦାରକ କ୍ରନ୍ଦନ ରୋଳରେ ଗାଁ ଟି ଥରିଉଠିଲା ।

ସମୟ କାହାକୁ ଅପେକ୍ଷା କରେନାହିଁ । ସେ ତାରି ବାଟରେ ଗଡ଼ିଚାଲିଥାଏ । ଏ ଭିତରେ ଅନେକ ଦିନ ବିତିଗଲାଣି ।

ଘନଅଜାଙ୍କ ଶୁଦ୍ଧିକ୍ରିୟା ଶେଷ ହୋଇଯାଇଛି । ନୂଆ ଉତ୍ସାହ ଉଦ୍ଦୀପନାରେ ଯୁବକଲ୍ୟାଣ ନୀଳୟର ପକ୍କାଘର ନିର୍ମାଣ ଚାଲିଛି । ଘନଅଜାଙ୍କ ସ୍ମୃତିକୁ ବଞ୍ଚାଇ ରଖିବା ପାଇଁ ସମଗ୍ର ଅଞ୍ଚଳଟି ମାତିଯାଇଛି । ତାଙ୍କ ପ୍ରତିମୂର୍ତ୍ତି ନିର୍ମାଣ ପାଇଁ ସମସ୍ତ ବ୍ୟବସ୍ଥା ହୋଇସାରିଛି । ଯେତେ ପ୍ରଗତିମୂଳକ କାର୍ଯ୍ୟ ଚାଲିଛି ତାର ପ୍ରେରଣାର ଉତ୍ସ ହେଉଛନ୍ତି ଘନଅଜା । ସେ ଯୁବକଲ୍ୟାଣ ନୀଳୟକୁ ଲେଲିହାନ ଅଗ୍ନିଶିଖାରୁ ବଞ୍ଚାଇବାକୁ ଚେଷ୍ଟାକରି ମଧ୍ୟ ଶେଷ ପର୍ଯ୍ୟନ୍ତ ବଞ୍ଚାଇ ପାରିନଥିଲେ ଶେଷରେ ସେହି ନିଆଁରେ ତାଙ୍କ ମୂଲ୍ୟବାନ ଜୀବନଟି ଅସମୟରେ ଚାଲିଗଲା

ଠିକ୍ ସମୟରେ ପୋଲିସ ଆସି, ଶଙ୍କରକୁ ହାତକଡ଼ି ଦେଇ ଗାଁ ଦାଣ୍ଡରେ ଚଲାଇ ଚଲାଇ ନେଲେ ଅନ୍ୟ ଆସାମୀ ନାଟକର ଖଳନାୟକଙ୍କୁ ଧରିବା ପାଇଁ ।

ଧୂର୍ତ୍ତ ମୋହନବାବୁ,ଯେତେବେଳେ ଜାଣିଲେ ଶଙ୍କର ଗାଁ ଲୋକଙ୍କଦ୍ୱାରା ଧରାପଡ଼ିଛି ! ସେତେବେଳେ ତାଙ୍କ ଛାତି ଭୟରେ ଥରିବାକୁ ଲାଗିଲା । ଶଙ୍କର ସବୁକଥା ପ୍ରଘଟନ କରିଦେବ । ତାଙ୍କ ସ୍ୱରୂପ ପଦାରେ ପଡ଼ିଯିବ । ଗାଁଲୋକଙ୍କ ମାଡ ଭୟରେ ସେ ଆଉ କେଉଁକଥା ଲୁଚାଇବ ନାହିଁ । ସେ କ'ଣ କରିବେ କିଛି ଭାବିପାରିଲେ ନାହିଁ । ଚାରିଆଡେ ତାଙ୍କୁ ଅନ୍ଧାର ଦିଶିଲା । ଭୟରେ ଛାତି ତାଙ୍କ ଧଡ୍ ଧଡ୍ ହେବାକୁ ଲାଗିଲା ।

ପୋଲିସ ଆସିଯିବ । ତାଙ୍କୁ ହାତକଡା ପକାଇବ, ଲାଜରେ ଗାଁ ଦାଣ୍ଡରେ ଚାଲିପାରିବେ ନାହିଁ । ଅନାନ୍ୟ ଉପାୟ ହୋଇ ବହୁଦିନରୁ ସଂଚିତ ରଖିଥିବା ବିଷ ପାଟିରେ ପୁରାଇ-ଦେଲେ । ପୋଲିସ ଆସି ଘରେ ପହଞ୍ଚିଲା ବେଳକୁ ସବୁଶେଷ ।

ଯେଉଁ ଚକ୍ରାନ୍ତ କରି ପ୍ରତିଶୋଧ ନେବେବୋଲି ଯେଉଁ ଜାଲ ବିଛାଇଥିଲେ, ସେହି ଜାଲରେ ଛନ୍ଦି ହୋଇ ଆତ୍ମହତ୍ୟା କଲେ ।

ଅତ୍ୟଧିକ ପାପର ପରଣତି ଶେଷକୁ ଏହାହିଁ ହୋଇଥାଏ । ପାପ କେବେ ଲୁଚି ରହେନାହିଁ । ଦିନେନା ଦିନେ ନିଶ୍ଚୟ ପ୍ରକାଶ ପାଇବ । ପାପର ପରଣତି ସଦାବେଳେ ଦୁଃଖଦାୟକ ।

ଆଜି ଘନଅଜାଙ୍କ ପ୍ରତିମୂର୍ତ୍ତି ଉନ୍ମୋଚିତ ହେବ । ଘନଅଜାଙ୍କ ବାଲ୍ୟବନ୍ଧୁ ସ୍ୱାଧୀନତା ସଂଗ୍ରାମୀ ଅମରେଷବାବୁ ଆସୁଛନ୍ତି ସମଗ୍ର ଅଞ୍ଚଳରେ ଚହଳ ପଡ଼ିଯାଇଛି । ଯୁବକଲ୍ୟାଣ ନୀଳୟର ଘର କାର୍ଯ୍ୟ ମଧ୍ୟ ଶେଷ ହୋଇଯାଇଛି ।

ବିରାଟ ହଲ୍‌ରେ ସମସ୍ତେ ଏକତ୍ରୀତ ହୋଇଛନ୍ତି ।

ସମସ୍ତଙ୍କ ମନରୁ ଦାରୁଣ ଆଘାତ ସାମାନ୍ୟ ଘୁଞ୍ଚିଯାଇଥାଏ । ଅଞ୍ଚଳର ପ୍ରଗତିର ପ୍ରତିରୋଧକ, ବିଷବୃକ୍ଷ ନିଜର କୁକର୍ମର ଫଳ ଭୋଗିଛି । ଜଣେ ଆତ୍ମହତ୍ୟା କରି ଆଉଜଣେ ଜେଲ ଭିତରେ ଶହ ଶହ ପଶ୍ଚାତ୍‌ତାପ କରୁଛି । କେତେକ କହୁଛନ୍ତି ଶଙ୍କର ପାଗଳ ହୋଇଯାଇଛି ।

ଯଥା ସମୟରେ ମୁଖ୍ୟଅତିଥି ଆସି ପହଞ୍ଚିଗଲେ । ତାଙ୍କ ଆଗମନରେ ସମସ୍ତଙ୍କ ମନରେ ଚହଳ ପଡ଼ିଗଲା ।

ସେ ଆସି ଘନଅଜାଙ୍କ ପ୍ରତିମୂର୍ତ୍ତିରୁ ପରଦା କାଢ଼ିଦେଲେ । ସତେ ମନେ ହେଲା ଘନଅଜାଙ୍କ ଜୀବନ୍ତ ପ୍ରତିମୂର୍ତ୍ତି ସମ୍ମୁଖରେ ଦେଖୁଛନ୍ତି । ତାଙ୍କରି ସେହି ହସ ହସ ମୁହଁରେ ସମସ୍ତଙ୍କୁ ଅନାଇ ରହିଛନ୍ତି । ଲୋକ ଭାବବିହ୍ୱଳ ହୋଇଉଠିଲେ । କେହି କେହି କାନ୍ଦପକାଇଲେ । ଅମରେଶବାବୁ, ସମସ୍ତଙ୍କୁ ଅମର ଆତ୍ମାର ସଦ୍‌ଗତି ପାଇଁ ନୀରବ ପ୍ରାର୍ଥନା କରିବାକୁ ଅନୁରୋଧ କଲେ ।

ସମସ୍ତେ ମୁଦ୍ରିତ ନୟନରେ ଭଗବାନଙ୍କୁ ସ୍ମରଣ କରି, ଘନଅଜାଙ୍କ କୀର୍ତ୍ତିକୁ ମନେ-ପକାଇଲେ ।

ବନ୍ଧୁଗଣ,

ସେହି ପରମେଶ୍ୱରଙ୍କ ଇଚ୍ଛାରେ ଏ ବିଶ୍ୱ ପରିଚାଳିତ । ସତ୍‌କର୍ମ, ସତ୍‌ଚିନ୍ତା ଆମକୁ ମଣିଷ ଭିତରେ ମଣିଷ ରୂପେ ଜୀଇଁବାକୁ ଦେଇଥାଏ । ମୋର ବାଲ୍ୟବନ୍ଧୁ ଘନର ଏହାହିଁ ଆଦର୍ଶ । ଆଜି ଆମକୁ ସେ ସେହି ପଥରେ ଚାଲିବା ପାଇଁ ସ୍ୱର୍ଗରୁ ଥାଇ ଇଙ୍ଗିତ କରୁଛନ୍ତି । ଆପଣମାନେ ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖି ନିଜ ନିଜ କର୍ତ୍ତବ୍ୟ କରିଯାଆନ୍ତୁ ।

କନକ ଯେତେ ଯେତେ ଘନଅପାଙ୍କ କଥା ଚିନ୍ତା କରୁଥାଏ, ସେତେ ସେତେ ତା' ମନରେ ଆଘାତ ବଢ଼ି ବଢ଼ି ଚାଲିଥାଏ । ଜୀବନରେ କେତେ ରୋଗୀଙ୍କ ସେବାକରି ବଞ୍ଚାଇପାରିଥିଲା । ମାତ୍ର ଶେଷ ମୁହୂର୍ତ୍ତରେ ଘନଅପାଙ୍କ ସେବାକରି ବଞ୍ଚାଇପାରିଲା ନାହିଁ । ସମୟ ସମୟରେ ସେ ଅଧୈର୍ଯ୍ୟ ହୋଇ ପଡୁଥାଏ । କୌଣସି ମତେ କୋହ ସମ୍ଭାଳି ଆଖିର ଅମାନିଆ ଲୁହ ପୋଛିନେଉଥାଏ । ତାଙ୍କୁ ଭୁଲିବାପାଇଁ ମନରେ ଅନ୍ୟଚିନ୍ତା ପୂରାଇବାକୁ ଚେଷ୍ଟା କରୁଥାଏ, ମାତ୍ର ତା'ମନରେ ଅନ୍ୟ କୌଣସି ଚିନ୍ତା ପ୍ରବେଶ କରିପାରୁ ନଥାଏ ।

ତପନ ଉଦ୍‌ବେଗ ଉତ୍‌କଣ୍ଠାର ସହ ପାଖରେ ଛିଡ଼ା ହୋଇଥାଏ । କନକ କନ୍‌କନ୍ ହୋଇ ଘରିଆଡ଼କୁ ଅନାଇ ନେଉଥାଏ । ସତେ କଣ ଘନଅପା ଆଜି ଚାଲିଆସିବେ ?

ଯେ ଯାଇଛି ସେ ଆଉ ଆସିପାରେ କି ? ଏ କେବଳ ମନର ଭ୍ରମ ତଥାପି ମନ କାହିଁକି ବୁଝେନା ? ଅବୁଝା ମନ ।

ତପନ ବାଷ୍ପ ଗଦ୍ ଗଦ୍ କଣ୍ଠରେ କହିଲା ।

ଘନଅପାଙ୍କୁ ବାପଠୁ ଭଳି ଭକ୍ତି, ଶ୍ରଦ୍ଧା ସମ୍ମାନ କରୁଥିଲୁ, ତାଙ୍କର ପ୍ରେରଣା ଆମର ଉତ୍ସ ହୋଇ ଚିରଦିନ ରହିଥାଉ ।

ଏହି ସାନ୍ତ୍ୱନା ଟିକକ ସମସ୍ତଙ୍କ ମନର କୋହକୁ ଦ୍ୱିଗୁଣିତ କରିଦେଲା । ଜମାଟ୍- ବାନ୍ଧିଥିବା ଲୁହ ତରଳିଯାଇ ଝରଝର ହୋଇ ବୋହିଚାଲିଲା । କୋହ ଉପରେ କୋହ ଉଠିଲା ।

ସମସ୍ତଙ୍କ ଆଖିରୁ ଅମାନିଆ ଲୁହଧାର ବୋହି ଚାଲିଥାଏ । ଏମିତି ନୀରବରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲା ।

ସାନ୍ତ୍ୱନା ଦେବାକୁ କାହାର ସାଧ୍ୟ ନାହିଁ । କେବଳ ସେହି ସର୍ବଶକ୍ତିମାନ ଭଗବାନହିଁ ସାନ୍ତ୍ୱନା ଦେଇପାରିବେ ।

କନକ, ତପନର ମୁହଁକୁ ଭବବିହ୍ୱଳ ହୋଇ ଅନାଇ ରହିଲା ।



## ଲେଖକଙ୍କ ଅନ୍ୟ ପୁସ୍ତକ

- ବିଜୟୀ ( ଉପନ୍ୟାସ )
- Bijayee ( Hindi )
- ପ୍ରବନ୍ଧ ମଞ୍ଜରୀ
- ପ୍ରବନ୍ଧ ମଞ୍ଜୁଷା



**ରାସବିହାରୀ ବେହେରା**
**ଜନ୍ମ ୧୯୩୮**

ମହିଚଲା, ଜୁନାଗଡ଼ ବ୍ଲକ୍, କଳାହାଣ୍ଡି, ଓଡ଼ିଶା, ଖଲିକୋଟ କଲେଜ୍‌ରୁ B.A. ପାସ୍ କଲା ପରେ ମଧୁସୂଦନ ଆଇନ କଲେଜ୍ କଟକରେ, ଲ ପଢ଼ିବା ପରେ ସାଧାରଣ ଜୀବନରେ ଅଂଶ ଗ୍ରହଣ । ପ୍ରବନ୍ଧ ମଞ୍ଜରୀ, ବିଜୟୀ ଉପନ୍ୟାସ ପ୍ରକାଶ ପାଇଛି, ଦିଲ୍ଲିରେ ବିଜୟୀ ଉପନ୍ୟାସ ହିନ୍ଦି ଅନୁବାଦ ପ୍ରକାଶ ପାଇଛି । ବହୁ ଉପନ୍ୟାସ ଏବଂ ପ୍ରବନ୍ଧର ଲେଖକ ।